# ହିନ୍ଦୁ ଆଚାରର ବିଚାର



୰ପଦ୍ମଚରଣ ପଟ୍ଟନାୟକ

# ହିନ୍ଦୁ ଆଚାରର ବିଚାର

(Scientific Exposition of Hindu Manners and Custom)

।। ନୂତନ ସଂସ୍କରଣ

৺ ପଦ୍ମଚରଣ ପଟ୍ଟନାୟକ, ଏମ୍.ଏ., ବି.ଇଡ଼ି.

ପ୍ରକାଶକ :

ଗୋପବନ୍ଧୁ ସାହିତ୍ୟ ମନ୍ଦିର
ଗୋପବନ୍ଧୁ ଭବନ, କଟକ-୧

# ହିନ୍ଦୁ ଆଚାରର ବିଚାର
(୧ମ ଓ ୨ୟ ଭଗ ଏକତ୍ର)

ଲେଖକ :

**୰ ପଦ୍ମଚରଣ ପଟ୍ଟନାୟକ**

ନୂତନ ସଂସ୍କରଣ–୧୯୮୮

ମୁଦ୍ରଣ :

**କଳିଙ୍ଗ ପ୍ରିଣ୍ଟର୍ସ,**

ଚଉଳିଆଗଞ୍ଜ, କଟକ–୪

ପ୍ରକାଶକ :

**ଗୋପବନ୍ଧୁ ସାହିତ୍ୟ ମନ୍ଦିର**

ଗୋପବନ୍ଧୁ ଭବନ, କଟକ–୧

**ମୂଲ୍ୟ–ଟ ୨୫.୦୦**

# HINDU ACHARARA BICHARA
(Ist & IInd. Part Combined)

*Written by :*

**Late Padmacharan Pattanaik**

New Edition—1988

*Printed at :*

**M/s. Kalinga Printers**

Chauliaganj

Cuttack-4

*Published by :*

**Gopabandhu Sahitya Mandira**

Gopabandhu Bhawan,

Cuttack-753001

**Price-Rs. 25/-**

# ଉତ୍ସର୍ଗପତ୍ର

ମୋର ପିତୃଦେବ ସ୍ୱର୍ଗତ ଗୋଲୋକକୃଷ୍ଣ ପଟ୍ଟନାୟକ
ଦିବ୍ୟସାନ୍ନିଧ୍ୟେଷୁ ।

ସୁକଠୋର ନିଷ୍ଠା ତବ ଦେବୀ ଆରାଧନେ
ତୀବ୍ର ସମାଲୋଚନାର ଭ୍ରୂକୁଟି ନୟନେ
ଆଣୁଥିଲ ମମ ଦିନେ, ମାତ୍ର ତାହା ଆଜି
ସ୍ୱଧର୍ମ-ବିଶ୍ୱାସେ ମୋର ଜ୍ଞାନ ଦେଲ ମାଜି ।
ପରିବର୍ତ୍ତିତ ଏ ଚିତ୍ତ ଦେଖିଥିଲେ ମୋର
ଲଭିଥାନ୍ତ ଅନ୍ତରରେ ଆନନ୍ଦ ଅପାର ।
ହେ ପିତା ! ଦେବତା ! ହାୟ ! ନାହଁ ତ ଧରାରେ;
ମାତ୍ର ତବ ଶୁଦ୍ଧପୂତ ସ୍ମୃତି ଉଦ୍ଦେଶ୍ୟରେ ।
ଅରପେ ଏ କ୍ଷୁଦ୍ର ସାଧନାର ଶ୍ରଦ୍ଧାଞ୍ଜଳି,
ସାର୍ଥକ ମଣିବି ଶ୍ରମ ନେଲେ କରେ ତୋଳି ।

'ଚରଣ'

# ଏ ବହି କାହିଁକି ଲେଖିଲି ?

ମୁଁ ଯେତେବେଳେ ସ୍କୁଲରେ ପଢୁଥିଲି, ମୋର ଅହିନ୍ଦୁ ସହପାଠୀମାନେ ହିନ୍ଦୁର ଅଧିକାଂଶ ଆଚାର ସମ୍ବନ୍ଧରେ ଥଟ୍ଟାରେ ଥଟ୍ଟାରେ ଏପରି କଟୁ ମନ୍ତବ୍ୟ ଦେଉଥିଲେ ଯେ ମୁଁ ସେତେବେଳେ ଥଟ୍ଟାରେ ମଧ୍ୟ ତାହାର ଉତ୍ତର ଦେଇପାରୁ ନ ଥିଲି । ବାହାରେ କିଛି ନ କହିଲେ ମଧ୍ୟ, ହିନ୍ଦୁର କେତେକ ଆଚାର ସମ୍ବନ୍ଧରେ ମୋ ମନରେ ବରାବର ଗୋଟିଏ ତୀବ୍ର ଅନାସ୍ଥା ରହି ଆସିଥିଲା । ବୟସ ବୃଦ୍ଧି ସହିତ ତାହା ଛାଏଁ ଛାଏଁ କିପରି ଅପସରିଗଲା; ଅନାସ୍ଥା, ଏପରି କି ଘୃଣାର ସ୍ଥାନ କିପରି ଅଟଳ ବିଶ୍ୱାସ ଅଧିକାର କଲା, ତାହାର ଆଭାସମାତ୍ର ଏହି ପୁସ୍ତିକାରେ ଦିଆଯାଇଅଛି । ହିନ୍ଦୁ ବୋଲି ଦିନେ ନିଜକୁ ନିଜେ ଘୃଣା କରୁଥିଲି । ବର୍ତ୍ତମାନ ମୁଁ ଗର୍ବ ଓ ଆନନ୍ଦ ଅନୁଭବ କରୁଅଛି ଯେ ମୁଁ ହିନ୍ଦୁ ଘରେ ଜନ୍ମ ହୋଇଛି । ଯେଉଁ କଞ୍ଚା ବୟସରେ ମୁଁ ମୋର ଧର୍ମକୁ ବାହାରର ସମାଲୋଚନା ଶୁଣି ଘୃଣା କରୁଥିଲି, ସେହି ବୟସର ପିଲାମାନଙ୍କ ନିମନ୍ତେ ଏ ବହି ଲେଖା ହୋଇଅଛି ।

ଯଦି ଏହାଦ୍ୱାରା ସେମାନେ କିଛି ଉପକାର ପାଇପାରନ୍ତେ ଏବଂ ଏହା ପଢ଼ି ହିନ୍ଦୁ କାହିଁକି ଅନ୍ୟ ଧର୍ମର ଲୋକଙ୍କୁ ଥଟ୍ଟା ଟାହୁଲି ନ କରି ପ୍ରତ୍ୟେକ ସ୍ଥାନରେ ସତ୍ୟ ଉପଲବ୍ଧି କରିପାରେ, ବୁଝିପାରନ୍ତେ, ତେବେ ମୁଁ ମୋର ଶ୍ରମ ସାର୍ଥକ ଜ୍ଞାନ କରିବି ।

ବାର୍ମି ସାହି, କଟକ-୧ ଶ୍ରୀ ପଦ୍ମଚରଣ ପଟ୍ଟନାୟକ

# ସୂଚୀପତ୍ର

ବିଷୟ | ପୃଷ୍ଠା

(ପ୍ରଥମ ଭାଗ)

# ( ୨ୟ ଭାଗ )

ବିଷୟ | ପୃଷ୍ଠା

# ଗଙ୍ଗା-ମା

ହିନ୍ଦୁ ଗୋରୁଟାକୁ କହେ ମା, ଗଙ୍ଗା ବୋଲି ଗୋଟାଏ ନଈ; ସେହି ନଈକୂଳରେ ଲକ୍ଷ ଲକ୍ଷ; କୋଟି କୋଟି ଲୋକ ଘର କରିଅଛନ୍ତି । ଲକ୍ଷ ଲକ୍ଷ କୋଟି କୋଟି ଲୋକଙ୍କର ଗୁହମୂତ, ମଲା ଜୀବଜନ୍ତୁ ଆଉ କେଜାଣି କେତେ ଅଳଆ; ସବୁ ସଡ଼ି ଭାସି ଆସୁଛି ଏହି ନଈରେ । ଏଇଟାକୁ ନଈ ନ କହି ଉତ୍ତରଭାରତର ଗୋଟାଏ ବଡ଼ ମଇଳା ନାଳ କହିଲେ କଥାଟା କେବେହେଁ ଭୁଲ ହେବନାହିଁ । କିନ୍ତୁ; ଦେଖ, ହିନ୍ଦୁ ଏଡ଼େ ମୂର୍ଖ, ତାହାର ଆଖି ଥାଇ ସେ ଅନ୍ଧ, ମନୁଷ୍ୟ ଜନ୍ମ ପାଇ ସେ ଗୋଟାଏ ପଶୁ । ପଶୁ ତ ମୂର୍ଦ୍ଧାର ଭାସୁଥିଲେ ସେଠାରୁ ପାଣି ଛୁଇଁବ ନାହିଁ; କିନ୍ତୁ ଏପରି ମଇଳା ନାଳରୁ ପାଣି ମଢ଼ଏ ନ ପିଇଲେ ହିନ୍ଦୁ ତାହାର ଦେହକୁ ପବିତ୍ର ମନେ କରିବନାହିଁ । ଧନ୍ୟ ରେ ହିନ୍ଦୁ ! ଧନ୍ୟ ତୋର ଧର୍ମ ! ନଈଟା, ପଶୁଟା ତୋର ମା, ତୁ ପଶୁ ନ ହୋଇ ଆଉ କଅଣ ?" ।

ଅନ୍ୟ ଧର୍ମର ଲୋକେ ମାସେ ଦୁମାସ ଭାରତବର୍ଷକୁ ଆସି ଭାରତରେ ଲୋକଙ୍କ ଆଚାର ଦେଖି ଏପରି ହିନ୍ଦୁମାନଙ୍କୁ କହିଥାନ୍ତି । ହିନ୍ଦୁ ପିଲାଏ ଏପରି କଥା ଶୁଣି ଓ ପଢ଼ି ଲାଜରେ ମୁହଁକୁ ତଳକୁ ପୋତିଦିଅନ୍ତି । କିଛି ଉତ୍ତର ଦେଇ ପାରନ୍ତିନାହିଁ । ଦିନେ ଲେଖକଙ୍କର ଏହି ଦଶା ମଧ୍ୟ ଥିଲା ।

ଗଙ୍ଗାନଦୀ ବିଷୟରେ ଉପରେ ଯାହା ଲେଖାଗଲା ତାହା ଅକ୍ଷରେ ଅକ୍ଷରେ ଠିକ୍, କିନ୍ତୁ ଏଇଟା ହେଲା ଉପର କଥା । ଥରେ ଜଣେ ଇଉରୋପୀୟ ବୈଜ୍ଞାନିକ, କଲେରା, କୁଷ୍ଠ, ଆମାଶୟ, ଟାଇଫଏଡ଼ ଜର, ଯକ୍ଷ୍ମା ପ୍ରଭୃତିର ଜର୍ମ ବା ଜୀବାଣୁ ନେଇ ବିଭିନ୍ନ ପରୀକ୍ଷା ନଳୀରେ ରଖି ସେଥିରେ ଗଙ୍ଗାପାଣି ଅଜାଡ଼ି ଦେଖିଲେ ବିଭିନ୍ନ ରୋଗର ଜର୍ମ ବିଭିନ୍ନ ସମୟରେ, କିଏ ଦୁଇଘଣ୍ଟାରେ କିଏ ପାଞ୍ଚଘଣ୍ଟାରେ କିଏ ସାତଘଣ୍ଟାରେ ମରିଗଲେ, କେହି ବଞ୍ଚିଲେ ନାହିଁ, ସମସ୍ତେ ମଲେ । ଗଙ୍ଗାପାଣିକୁ ଅଣୁବୀକ୍ଷଣ

ଯନ୍ତ୍ରରେ ଦେଖିଲେ କୌଣସି ଜର୍ମ ବା ଜୀବାଣୁ ପାଇଲେ ନାହିଁ । ଏହା କପର ହେଲ ବୁଝି ପାରଲେ ନାହିଁ । ୧୯୧୭ ଖ୍ରୀଷ୍ଟାବ୍ଦରେ ଫରାସି ଡ଼ାକ୍ତର ଡ଼. ଦେରେଲ (Dr D. Herelle, French Physician) ବାହାର କଲେ ଗଙ୍ଗାପାଣିରେ "ବାକ୍ଟିଓଫାଜ" (bactriophages) ରହିଅଛି । ଏହା ରୋଗ ଜୀବାଣୁ ଗୁଡ଼ାକୁ ମାର ପକାଉ ଅଛି । ଏହା ତେବେ କଅଣ ? ଆମକୁ ଯେପର ଜର୍ମ ମାରପକାନ୍ତି, ଜର୍ମକୁ ସେପର ମାରନ୍ତି ଏହି ବାକ୍ଟିଓଫାଜ । ଜର୍ମ ଖାଲି ଆଖିରେ ଦେଖାଯାନ୍ତି ନାହିଁ, ମାଇକ୍ରୋସ୍କୋପ ବା ଅଣୁବୀକ୍ଷଣ ଯନ୍ତ୍ରରେ ଏମାନେ ଧରାପଡ଼ନ୍ତି । ଅଣୁବୀକ୍ଷଣ ଯନ୍ତ୍ର ଯେତେ ବଡ଼ ହେଉ ପଛକେ ବାକ୍ଟିଓଫାଜକୁ ଏପର୍ଯ୍ୟନ୍ତ ଦେଖି ପାରେ ନାହିଁ । ଜର୍ମ ଯେପର ଆମର ଶତ୍ରୁ, ବାକ୍ଟିଓଫାଜ ସେପର ଜର୍ମର ଶତ୍ରୁ । ଏମାନେ ଜର୍ମଠାରୁ ଆହୁର ଶ୍ରେଷ୍ଠ ।

ଡାକ୍ତର ଡ. ଦେରେଲ ଏକଥା ବାହାର କଲ ଦିନୁଁ କଲେରା ନିମିତ୍ତ ଏହି ବାକ୍ଟିଓଫାଜ ଟିକାଦ୍ୱାରା ବାହାର ଲକ୍ଷ ଲକ୍ଷ ଲୋକଙ୍କୁ ମୃତ୍ୟୁ ମୁହଁରୁ ଫେରାଇ ଆଣୁଛି । ଗଙ୍ଗାକୂଳରେ ଯେତେ ସହର, ଯେତେ ଲୋକ ଅଛନ୍ତି, ଆମ ଦେଶର ଅନ୍ୟ କୌଣସି ନଦୀକୂଳରେ ଏତେ ଲୋକ ନାହାନ୍ତି । ଏ ନଦୀ ଯେତେ ମଇଳା ସଫା କରେ, ଭାରତରେ ଅନ୍ୟ କୌଣସି ନଦୀ ତାହା କରେ ନାହିଁ । ଏ ନଦୀ ପାଣିରେ ଯଦି ମନୁଷ୍ୟ ଜୀବନର ରକ୍ଷାକାରଣୀ ଏହି ଶକ୍ତି ନଥାନ୍ତା, ଆମ ଦେଶର କୋଟି କୋଟି ଲୋକ ସାଂଘାତିକ ରୋଗରେ ପଡ଼ି କେଉଁ କାଳୁ ଯମାଳୟକୁ ଯାଆନ୍ତେଣି ।

ପାଠକ ପାଠିକା ଗଙ୍ଗାଜଳକୁ ଗୋଟିଏ ବୋତଲରେ ଓ ଧରଣ୍ଟାର ହୋଇ ଦିଆହେଉଥିବା ସହରର ପାଣିକଳରୁ ପାଣି ଆଣି ଅନ୍ୟ ଗୋଟିଏ ବୋତଲରେ ଘରେ ରଖିଦିଅନ୍ତୁ । କଳପାଣିରେ ୭।୮ ଦିନ ପରେ ଏକ ପ୍ରକାର ଜନିଷ ଭାସିବାର ଦେଖାଯିବ, ପାଣି ଗନ୍ଧିଆ ହୋଇଯିବ; ମାତ୍ର ଗଙ୍ଗାପାଣି ୭।୮ ଦିନ ଛାଡ଼ୁ, ୭।୮ ମାସ ଛାଡ଼ୁ, ୭।୮ ବର୍ଷ ୨୦ ବର୍ଷ ରହିଲେ ଖରାପ ହେବ ନାହିଁ । ସେଥିନିମିତ୍ତ ଗଙ୍ଗାକୂଳରେ ନ ଥିବା ହିନ୍ଦୁ ଗଙ୍ଗାପାଣି ସଂଗ୍ରହକରି ସେଥିରୁ ବିନ୍ଦୁଏ ବିନ୍ଦୁଏ ପ୍ରତିଦିନ ପାଏ । ଏହା ଦ୍ୱାରା ତାହାର ଅନ୍ତଃ ଶୁଦ୍ଧି ହୁଏ; ଅର୍ଥାତ୍ ବାକ୍ଟିଓଫାଜ ଅନ୍ତଃ ମଧ୍ୟକୁ ଯାଇ ରୋଗୋତ୍ପାଦନକାରୀ ଜର୍ମକୁ ମାରିଦିଅନ୍ତି ।

ଶରୀରେ ଜର୍ଜରୀଭୂତେ ବ୍ୟାଧିଗ୍ରସ୍ତେ କଳେବରେ
ଔଷଧଂ ଜାହ୍ନବୀତୋୟଂ ବୈଦ୍ୟୋନାରାୟଣୋ ହରିଃ ।

ଅର୍ଥାତ୍ ଦେହ ଯେତେବେଳେ ରୋଗରେ ଏକ ନଷ୍ଟ ହେବାକୁ ବସେ, ସେତେବେଳେ ଗଙ୍ଗାପାଣି ଔଷଧ ଓ ଭଗବାନ ଏକା ବୈଦ୍ୟ ଅଟନ୍ତି । ଏ କଥା ଅତିରଞ୍ଜିତ ନୁହେଁ ।

ଗଙ୍ଗାଜଳର ଏହି ଅମୃତ ଭଳିଆ ଗୁଣ ହସ୍କର କରି ଜଣେ ଇଉରୋପୀୟ ପଣ୍ଡିତ କହିଅଛନ୍ତି "ଆମେ ସବୁ ଯେତେବେଳେ ଅସଭ୍ୟ ବଣୁଆ ଅବସ୍ଥାରେ ଥିଲୁଁ, ହିନ୍ଦୁମାନେ ସେତେବେଳେ ବର୍ତ୍ତମାନ ଆମେ ଯେପରି ସଭ୍ୟ ହୋଇ ଅଛୁଁ, ତାହାଠାରୁ ଆହୁରି ବେଶି ସଭ୍ୟ ହୋଇ ଯାଇଥିଲେ ।' ("We know they had a higher civilisation long before we emerged from savagery. ।")



# ଗୋ-ମାତା

ଗୋରୁ ଗୋଟାଏ ପଶୁ, ହିନ୍ଦୁ ତାକୁ କହେ ମା ଓ ଦେବତା ଭଳିଆ ପୂଜା କରେ । ପୂଜା ନ କଲେ ସେପରି ସମ୍ମାନ ଦିଏ । ହିନ୍ଦୁ ମୁସଲମାନ କଳିର ଅଧିକାଂଶ ଏହି ପଶୁ ନିମିତ୍ତ । ମୁସଲମାନ ପଶୁଟାଏ ମାରିଲା ଖାଇବା ନିମିତ୍ତ, ହିନ୍ଦୁର ସେଥିରେ ଆପତ୍ତି କରିବା ଅନ୍ୟାୟ ।

ହିନ୍ଦୁ ଖାଲି ଗୋରୁକୁ ପୂଜା କରେନାହିଁ । ଗୋରୁର ତ ହେଲେ ଜୀବ ଅଛି । ଯାହାର ଜୀବ ନାହିଁ ତାକୁ ମଧ୍ୟ ପୂଜା କରେ—ଯଥା ତୁଳସୀ-ଗଛ । ହିନ୍ଦୁର ସବୁ କଥା ବିଚିତ୍ର । ସେ ସବୁଥିରେ ଗୋଠକଣ୍ଡିଆ ! ! ! ଧନ୍ୟରେ ହିନ୍ଦୁ ! ତୁ ଯାହାକୁ ଦିଅଁ ବୋଲି ପୂଜାକରୁ, ସେ ଯେବେ ଗୋରୁଙ୍କୁ ନ ଦେଖିଲେ ଅନ୍ନ ଜଳ ଛୁଇଁ ନ ଥିଲେ । ସେ ଯେମିତି (ଶ୍ରୀକୃଷ୍ଣ), ତୁ ବି ସେମିତି । ଗୋରୁର ଯେମିତି ବୁଦ୍ଧି, ତୋର ଦିଅଁର ମଧ୍ୟ ସେମିତି, ତୁ ସେମିତି ନ ହୋଇ କୁଆଡେ଼ ଯିବୁ । ତା' ନ ହୋଇଥିଲେ ମୁସଲମାନ ଯୁଦ୍ଧବ୍ୟୂହ ଆଗରେ ଗୋରୁ ରଖିଦେଇ ଝଟେ ପରାସ୍ତ କରି ତୋ ଉପରେ ଘୋଡ଼ା ଚଢ଼ି ନଥାନ୍ତା । ପଶୁଟାକୁ ମାରିବାକୁ ଭୟକଲୁ, ଅଥଚ ମୁସଲମାନ ଝଜେତାର ଗୋଡ଼ ଧରିଲୁ ! ଠିକ୍ ଏପରି କଥା ଲେଖକ ତାହାର ସହପାଠୀ ଅହିନ୍ଦୁମାନଙ୍କଠାରୁ ଶୁଣି କୌଣସି ଯୁକ୍ତିଯୁକ୍ତ ଉତ୍ତର ହଠେ ଦେଇ ପାରି ନ ଥିଲା ।

ହିନ୍ଦୁ ଗୋରୁକୁ ବର୍ତ୍ତମାନ ଯେଉଁ ଚକ୍ଷୁରେ ଦେଖୁଛି ସମ୍ଭବତଃ ହିନ ଥିଲା, ସେ ସେତେବେଳେ ଏପରି କରୁ ନ ଥିଲା । ଭାରତୀୟ ଆର୍ଯ୍ୟ ଗୋ-ମାଂସ ଖାଉଥିବାର ଉଲ୍ଲେଖ ହିନ୍ଦୁର ପୂର୍ବକାଳର ସାହିତ୍ୟରେ ଦେଖା-ଯାଏ । ପରେ ଜ୍ଞାନର ପ୍ରସାର ସହିତ ସେ ଗୋରୁର ମାହାତ୍ମ୍ୟ ବୁଝିଲା । ତା'ପରେ ତାକୁ ପୂଜା ଚକ୍ଷୁରେ ଦେଖିବାକୁ ଆରମ୍ଭ କଲା । ଶ୍ରୀକୃଷ୍ଣଙ୍କୁ କହନ୍ତି ଗୋବିନ୍ଦ ଏବଂ ଗୋପାଳ । ଗୋବିନ୍ଦର ଅର୍ଥ ହେଉଅଛି ଯେ ଗୋରୁମାନଙ୍କ ବିଷୟରେ ବିଶେଷଜ୍ଞ । ସମ୍ଭବତଃ ସେ ମନୁଷ୍ୟ ସମାଜକୁ

ଗୋରୁର ଉପକାରିତା ପ୍ରଥମେ ବୁଝାଇଥିଲେ ଓ ଆଦର୍ଶ ଦେଖାଇବା ନିମିତ୍ତ ନିଜେ ଗଉଡ଼ ହୋଇ ଗୋରୁ ଚରାଉଥିଲେ, ଗୁହାଳ ପୋଛୁଥିଲେ ଓ ଗୋରୁ ଗୋଠରେ ନିଜର ଅଧିକାଂଶ ସମୟ କଟାଉଥିଲେ । ଗାଈ ଥିଲେ ତାଙ୍କର ଜୀବନ । "ଗାବୋ ମେ ଅଗ୍ରତଃ ସନ୍ତୁ, ଗାବୋ ମେ ସନ୍ତୁ ପୃଷ୍ଠତଃ; ଗାବୋ ମେ ହୃଦୟେ ସନ୍ତୁ, ଗବାଂ ମଧ୍ୟେ ବସାମ୍ୟହଂ" ଶ୍ରୀକୃଷ୍ଣ । ଅର୍ଥାତ୍ ଶ୍ରୀକୃଷ୍ଣ କହୁଥିଲେ, ଗାଈମାନେ ମୋ ଆଗରେ ରହନ୍ତୁ, ଗାଈମାନେ ମୋ ପଛରେ ରହନ୍ତୁ; ଗାଈମାନେ ମୋ ହୃଦୟ ଅଧିକାର କରନ୍ତୁ, ମୁଁ ଗାଈ-ମାନଙ୍କ ମଧ୍ୟରେ ବାସକରେ । ଶ୍ରୀକୃଷ୍ଣ କ୍ଷତ୍ରିୟ ରଜାଘରେ ଜନ୍ମ ହୋଇ-ଥିଲେ (ଦେବକୀ, ବସୁଦେବ), ଛାଡ଼ିଦେଲେ ତାଙ୍କୁ, ଆସିଲେ ଗଉଡ଼ ଘରକୁ, ଗୋରୁ ଜଗିଲେ, ଗୁହାଳ ପୋଛିଲେ । ଦହି ହେଲା ତାଙ୍କର ପ୍ରିୟତମ ଖାଦ୍ୟ, ପିଲାଦିନେ ଲହୁଣୀ ନ ମିଳିଲେ ତାହା ଜବରଦସ୍ତି ଆଣି ଖାଉଥିଲେ । ଲହୁଣୀ ତାଙ୍କର ଏପରି ପ୍ରିୟ ଖାଦ୍ୟ ଥିଲା ଯେ, ଭକ୍ତମାନେ ତାଙ୍କୁ ଏବେ ଲହୁଣିଆ ଗୋପାଳ ସ୍ୱରୂପ ପୂଜୁ ଅଛନ୍ତି । ଗୁରୁଣ୍ଡୁଥିବା ଅବସ୍ଥାରେ ସେ ଏକହାତରେ ଲହୁଣୀ ଧରିଛନ୍ତି । ଯଶୋଦା ମା ତାଙ୍କୁ ଝୁରିହୋଇ କହୁଛନ୍ତି "ଗୋଟିକା ଅଧାମ ସର ନ ରୁଚଇ ତୋତେ, ମିଛେ ଲଞ୍ଚ ମାଗୁଥାଉ ଲବଣୀ କେମନ୍ତେ" ।

ଗୋରୁର ମାହାତ୍ମ୍ୟ କଅଣ ବର୍ତ୍ତମାନ ବରୁର କରାଯାଉ—

ମନୁଷ୍ୟର ନାନାପ୍ରକାର ଖାଦ୍ୟ ଅଛି । ସେଥିମଧ୍ୟରୁ କେହି ଏକାକୀ —ଚାଉଳ, ଡାଲି, ପନିପରିବା, ମାଛ, ମାଂସ ଅଣ୍ଡା ଆଦି—ମନୁଷ୍ୟକୁ ପୋଷି ପାରିବନାହିଁ । ଏକାକୀ କେବଳ ପୋଷିପାରିବ ଦୁଧ; ଗାଈଦୁଧ । ଦେହ ଖରାପ ହୋଇ ଦୁର୍ବଳ ହୋଇଥିଲେ ଏକା ଏହି ଦୁଧ ଖାଇ ଆମେ ଆମର ବଳ ଓ ସ୍ୱାସ୍ଥ୍ୟ ଫେରି ପାଇଥାଉଁ । ଗାଈଦୁଧ ପରି ଗୋଟିଏ ତଉକସିଆ ଖାଦ୍ୟ ନାହିଁ । ଏହାହିଁ ହେଲା ସମ୍ପୂର୍ଣ୍ଣ ଖାଦ୍ୟ । ପୁଣି ସବୁଠାରୁ ବଡ଼ କଥା ହେଉଅଛି ଗାଈଦୁଧ ପରି ମସ୍ତିଷ୍କ ଖାଦ୍ୟ ଆଉ ନାହିଁ । ମନୁଷ୍ୟ ତାହାର ବୁଦ୍ଧି ବା ମସ୍ତିଷ୍କ ନିମିତ୍ତ ଜୀବଜଗତର ରାଜା ହୋଇ ପାରିଛି । ଯାହାଦ୍ୱାରା ସେହି ବୁଦ୍ଧି ବଢ଼ିପାରିବ, ମନୁଷ୍ୟ ମନୁଷ୍ୟପରି ଚଳିପାରିବ ସେହି ପଦାର୍ଥ ସବୁପ୍ରକାର ଯତ୍ନ କରି ସାଇତିବା ଉଚିତ ନୁହେଁ କି ? ଜଣେ ବଡ଼ ଖାଦ୍ୟତତ୍ତ୍ୱବିତ୍ ପଣ୍ଡିତ କହିଅଛନ୍ତି —

"Yet no one can name any other food that is so nearly perfect even for grown-up human beings as cow's milk. × × × The health of the whole body depends upon the brain which always developes in front of the body and then helps the body to follow after it. Then we should expect milk to be specially designed for the benefit of the brain tissue. × × × For brain workers and fo nervous persons who suffer from sleeplessness and brain fog and so on, there is no food like milk and cream and it may almost be said that milk is the only medicine worth anything in such cases."

ଅର୍ଥାତ୍ କେହି ଏପରି ଗୋଟିଏ ଖାଦ୍ୟର ନାମ କହି ପାରିବେ ନାହିଁ ଯାହା ଗାଈଦୁଧ ପରି ଗୋଟିଏ ସମ୍ପୂର୍ଣ୍ଣ ଆଦର୍ଶ ଖାଦ୍ୟ ଅଟେ । ବଡ଼ ମନୁଷ୍ୟ ନିମିତ୍ତ ମଧ୍ୟ ଏହା ଆଦର୍ଶ ଖାଦ୍ୟ । × × × ଦେହର ଶୀର୍ଷସ୍ଥାନରେ ମସ୍ତିଷ୍କ ବଢ଼େ । ନିଜେ ବଢ଼ି ଦେହକୁ ବଢ଼ିବାରେ ସାହାଯ୍ୟ-କରେ । ମସ୍ତିଷ୍କ 'ଟିସୁ'ର ଉପକାର ନିମିତ୍ତ ଦୁଧ ବିଶେଷ ଭାବରେ ତିଆରି ହୋଇଅଛି । ଯେଉଁମାନେ ମସ୍ତିଷ୍କ ଚାଳନା କରନ୍ତି, ଯେଉଁମାନଙ୍କର ମସ୍ତିଷ୍କ କୌଣସି କାରଣରୁ ଦୁର୍ବଳ ହୋଇଗଲାଣି ଓ ଯେଉଁମାନେ ସ୍ନାୟୁବିକ ଦୌର୍ବଲ୍ୟ ନିମିତ୍ତ ଅନିଦ୍ରା ଭୋଗୁଛନ୍ତି, ସେମାନେ ଓ ସେମାନଙ୍କ ଭଳିଆ ରୋଗୀମାନଙ୍କ ନିମିତ୍ତ ଗାଈଦୁଧ ଓ ସର ଭଳିଆ ଖାଦ୍ୟ ଆଉ ନାହିଁ; ବରଂ ଏପରି ଅବସ୍ଥାରେ ଦୁଧ ଏକମାତ୍ର ଔଷଧ ଅଟେ ।

ବିଜ୍ଞାନ ଏବେ ବାହାର କରୁଛି ଆମର ମସ୍ତିଷ୍କ କୋଷ (Brain) cells ଗୁଡିକ ମନୁଷ୍ୟ ପିଲା ତିନିବର୍ଷ ହେବା ପର୍ଯ୍ୟନ୍ତ ବଢ଼େ । ତାହାପରେ, ଏହାର ବୃଦ୍ଧି ନଥାଏ; ଯଦି କୌଣସି କାରଣରୁ ଏଥିରୁ ଗୋଟିଏ ଖରାପ ହୋଇଯାଏ, ତେବେ ତାହା କୌଣସି ପ୍ରକାରେ ଫେରିଆସି ପାରେ ନାହିଁ । ମନୁଷ୍ୟପିଲା ମାଠାରୁ ବର୍ଷେପର୍ଯ୍ୟନ୍ତ ଦୁଧ ଖାଏ । ଆଉ ଦୁଇବର୍ଷ ସେ ଯଦି ଗାଈଦୁଧ ଖାଇପାରନ୍ତା ତେବେ ତାହାର ବଡ଼ଶକ୍ତି ମୂଳଦୁଆ ପଡ଼ନ୍ତା । କାରଣ ଗାଈଦୁଧ ହେଉଛି ମସ୍ତିଷ୍କ ନିମିତ୍ତ ପୃଥିବୀରେ

ସର୍ବଶ୍ରେଷ୍ଠ ଖାଦ୍ୟ ଓ ମସ୍ତିଷ୍କର ସ୍ୱାସ୍ଥ୍ୟ ଉପରେ ସମସ୍ତ ଦେହର ସ୍ୱାସ୍ଥ୍ୟ ନିର୍ଭର କରେ। ପୁଣି ଯାହାର ମସ୍ତିଷ୍କ ଯେତେ ସୁସ୍ଥ, ସେ ସେତିକି ବୁଦ୍ଧିମାନ।

ଇଂରେଜ ଅମଳର ବଡ଼ଲାଟ ଲର୍ଡ଼ଲିନ୍‌ଲିଥଗୋ କୃଷି ଓ ଗୋପାଳନ ସମ୍ବନ୍ଧରେ ଜଣେ ବିଶେଷଜ୍ଞ ଥିଲେ। ୧-୯-୧୯୪୩ ତାରିଖରେ ସେ ଏକ ଗୋଶାଳାଠାରେ କହିଥିଲେ "ପିଲାମାନେ ଭଲ ଦୁଧ ଉପଯୁକ୍ତ ପରିମାଣରେ ନ ପାଇଲେ ଭାରତର କୋଟି କୋଟି ଲୋକଙ୍କର ସ୍ୱାସ୍ଥ୍ୟ ଭଲ ରହିବ ନାହିଁ, ଖାଲି ସ୍ୱାସ୍ଥ୍ୟ ନୁହେଁ; ପିଲାଙ୍କ ବୁଦ୍ଧି ମଧ୍ୟ ବହୁପରିମାଣରେ ଏହି ଦୁଧ ପିଇବା ଉପରେ ନିର୍ଭର କରେ।" ସେ ଆଉଥରେ କହିଥିଲେ . "ଯେଉଁ ଜାତିର ପିଲାମାନେ ଯେତେ କମ୍ ଦୁଧ ପିଇବାକୁ ପାଆନ୍ତି, ସେ ଜାତିର ବୁଦ୍ଧି ଓ ସ୍ୱାସ୍ଥ୍ୟ ଦୁଧ ପିଇପାରୁଥିବା ଜାତିଠାରୁ ସେତିକି କମ୍ ହେବ।" ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ଚର୍ଚ୍ଚିଲ ଗତ ୨ୟ ମହାଯୁଦ୍ଧ ସମୟରେ ତାଙ୍କ ଦେଶବାସୀଙ୍କୁ କହିଥିଲେ "ପିଲାଙ୍କୁ ଦୁଧ ପିଇବାକୁ ଦେବାରେ ଯାହା ଖର୍ଚ୍ଚ ହୁଏ ତାହାଠାରୁ ଅଧିକ ସୁନ୍ଦର ଖର୍ଚ୍ଚ କୌଣସି ସମାଜ କରିପାରିବ ନାହିଁ।"

ଦୁଧ ଯଦି ମନୁଷ୍ୟ ନିମିତ୍ତ ସର୍ବଶ୍ରେଷ୍ଠ ଖାଦ୍ୟ, ଦହି ହେଉଛି ମନୁଷ୍ୟର ସର୍ବଶ୍ରେଷ୍ଠ ଔଷଧଗୁଣଯୁକ୍ତ ଖାଦ୍ୟ। ଆୟୁର୍ବେଦରେ ଅଛି ଦେବତାମାନଙ୍କର ଅମୃତ ଯାହା ତକ୍ର [ଲହୁଣୀ କଢ଼ା ଦହିରେ ଏକ ଚତୁର୍ଥାଂଶ ଜଳ ଦେଇ ମନ୍ଥନ କଲେ ତକ୍ର ହୁଏ] ମନୁଷ୍ୟମାନଙ୍କର ତାହା; ଯେ ତକ୍ର ଖାଏ ତାହାର କୌଣସି କ୍ଲେଶ ହୁଏ ନାହିଁ। କୌଣସି ରୋଗ ହୁଏ ନାହିଁ। ଆୟୁର୍ବେଦ ପୁଣି କହୁଛନ୍ତି; "ସର୍ବ ରୋଗ ହରଂ ତକ୍ରଂ କେବଳଂ କଫ ବର୍ଦ୍ଧକଂ" ଅର୍ଥାତ୍ ତକ୍ର ସମସ୍ତ ରୋଗ ହରଣ କରେ, କେବଳ କଫ ବଢ଼ାଏ। ଇଉରୋପର ବୁଲଗେରିଆ ଦେଶର ଲୋକେ ବଡ଼ ଦୀର୍ଘଜୀବୀ, ତାହାର କାରଣ ଅନୁସନ୍ଧାନ କରିବା ନିମିତ୍ତ ଇଉରୋପ ମହାଦେଶର ସବୁ ଦେଶରୁ ବିଶେଷଜ୍ଞମାନେ ଯାଇ କାରଣ ଅନୁସନ୍ଧାନ କରିଥିଲେ। ସେ ଦେଶର ଜଳବାୟୁର ସେମାନେ ଏପରି କିଛି ବିଶେଷତ୍ୱ ଦେଖିଲେ ନାହିଁ ଯାହାଦ୍ୱାରା ସେମାନେ ଏପରି ଦୀର୍ଘଜୀବୀ ହୋଇ ପାରୁଛନ୍ତି; ଦେଖିଲେ କେବଳ ଏତିକି ଯେ ଦେଶର ଲୋକ ବଲଗାରମାନେ

ପ୍ରତି ଦିନ ସକାଳେ ଆଉ କିଛି ନ ଖାଇ ଖାଆନ୍ତି ଦହି । ଏହି ଦହିଖିଆ ଅଭ୍ୟାସ ସେମାନଙ୍କୁ ଏପରି ଧାଡ଼ିଲିଆ କରିଅଛି ବୋଲି ସେମାନେ ସ୍ଥିର କଲେ । ଇଂରେଜ ଜାତି ପୃଥିବୀର ଚାରିଆଡ଼େ ବୁଲିଛନ୍ତି । ତୁଳନା କରିବା ନିମିତ୍ତ ସେମାନଙ୍କର ବିଶେଷ ସୁବିଧା ଅଛି । ଶିଖ ସୈନ୍ୟ ସାରା ପୃଥିବୀରେ ସର୍ବୋତ୍କୃଷ୍ଟ ବୋଲି ସେହି ଇଂରେଜମାନେ କହନ୍ତିଃ। ସକାଳୁ ଉଠି ପ୍ରଥମେ ଦହି ପିଇବା ହେଉଅଛି ଶିଖ ଜାତିର କୌଳିକ ପ୍ରଥା ।

ଲହୁଣୀ—ସମ୍ବନ୍ଧରେ ଆୟୁର୍ବେଦରେ ଅଛି—ଗୁଆ ଲହୁଣୀ ପୁଷ୍ଟି କାରକ, ବଳ, ବର୍ଣ୍ଣ, ଅଗ୍ନି ବୃଦ୍ଧି କାରକ । ବୃଦ୍ଧ ଓ ବାଳକମାନଙ୍କ ନିମିତ୍ତ ଏକ ହିତକର ଖାଦ୍ୟ; ବିଶେଷତଃ, ଶିଶୁମାନଙ୍କ ନିମିତ୍ତ ଅମୃତ ସ୍ୱରୂପ । * ଗୁଆ ଲହୁଣୀରେ 'କ' ଜୀବନୀକା ଥାଏ, ଏହା ଦେହ ବଢ଼ାଏ ଓ ରୋଗ ସହିତ ଲଢ଼ିବା ଶକ୍ତିକୁ ତେଜ କରେ । ମଇଁଷି ଲହୁଣୀ ଓ ଘିଅରେ ଏହି ଜୀବନୀକା ପ୍ରାପ୍ତ ନ ଥାଏ । ଗୁଆଘିଅର ଗୁଣ ଅନୁପମ । ବିସ୍ତୃତ ବର୍ଣ୍ଣନା ନିମିତ୍ତ ଏଠାରେ ସ୍ଥାନ ନାହିଁ । ଏହା ଚକ୍ଷୁର ଅତ୍ୟନ୍ତ ହିତକର, ଶୁକ୍ର-ଜନକ, ଅଗ୍ନିବର୍ଦ୍ଧକ, କଫ ପିତ୍ତ ନାଶକ, ମେଧାଜନକ, ଲାବଣ୍ୟ ବର୍ଦ୍ଧକ, ଓଜଧାତୁ ବର୍ଦ୍ଧକ ବୋଲି ଆୟୁର୍ବେଦରେ ଲେଖାଅଛି । ଗୁଆଘିଅର ଆହୁତିରେ ଯଜ୍ଞ ହୁଏ । ଦେବତାମାନଙ୍କର ଏହି ଆହୁତି ଅତିବ ପ୍ରିୟ ବୋଲି ହିନ୍ଦୁ ବିଶ୍ୱାସ କରେ । ସେଥିନିମିତ୍ତ ପ୍ରତିଦିନ ଯଜ୍ଞ କରିବା ହିନ୍ଦୁର କର୍ତ୍ତବ୍ୟ । ଗୁଆଘିଅ ପରି ବାୟୁ ବିଶୋଧକ ପଦାର୍ଥ ଖୁବ୍ କମ୍ ଅଛି । ସାଂଘାତିକ ପ୍ଲେଗ ରୋଗ ଅନ୍ୟ କୌଣସି ପ୍ରକାରେ ଅପସାରିତ ନ ହେବାରୁ ଜଣେ ସନ୍ନ୍ୟାସୀ ଏକ ଯଜ୍ଞ କଲେ ଅର୍ଥାତ୍ ବହୁତ ଗୁଆଘିଅ ଉକ୍ତ ସହରରେ ପୋଡ଼ିବାରୁ ପ୍ଲେଗ ଧୂଏଁ ଧୂଏଁ କମି ଯିବାର ଦେଖାଗଲା । ପ୍ରତ୍ୟେକ ହିନ୍ଦୁ ଯେପରି ପ୍ରତିଦିନ କିଛି ଗୁଆଘିଅ ପୋଡ଼ି ସମାଜର ହିତ ସାଧନ କରି ପାରିବ ସେଥିନିମିତ୍ତ ପ୍ରତିଘରେ ସଞ୍ଜବେଳେ ଗୁଆଘିଅର ସଞ୍ଜବତୀ ଦିଆଯାଏ ମନ୍ଦିରରେ ଆରତି ସମୟରେ ଗୁଆଘିଅର ଆରତି କାଠି ପୋଡ଼ାଯାଏ ଓ

---

* "ନବନୀତଂ ହିତଂ ଗବ୍ୟଂ ବୃଷ୍ୟଂ ବର୍ଣ୍ଣବଲାଗ୍ନି କୃତ୍"
ଚକ୍ଷୁଷ୍ୟଂ ବାଲକେ ବୃଦ୍ଧେ ବିଶୋଷଦମୃତଃ ଶିଶୋଃ । ଆୟୁର୍ବେଦ

ଲୋକେ ଏହାର ଆଘ୍ରାଣ ନିଅନ୍ତି । ମନୁ ଲେଖିଛନ୍ତି । ଗୁଆଘିଅର ଅାହୂତି ବାୟୁମଣ୍ଡଳ * ଶୁଦ୍ଧ କରେ । ସେଥିରୁ ବୃଷ୍ଟି ହୁଏ । ବୃଷ୍ଟି ହେଲେ ଶସ୍ୟ ବଢ଼େ, ତେଣୁ ପ୍ରଜାମାନେ ସୁଖରେ ରହନ୍ତି । ୩।୭୬ ଗୋମୂତ୍ରର ନାନାବିଧ ଗୁଣ ମଧ୍ୟ ଏଠାରେ କେତୋଟି ମାତ୍ର ଲେଖାଗଲା । ଏହା ଅଗ୍ନି ଦୀପ୍ତିକାରକ, ମେଧାଜନକ, କୁଷ୍ଠ, କାମଳ ପ୍ଲୀହାନାଶକ । ଫସଲରେ ସାର ସ୍ୱରୂପ ବ୍ୟବହାର କରିବା ନିମିତ୍ତ ଏହା ଉପାଦେୟ । ଗୋଟେ ମୂତ୍ରରେ ଉଣେଇଶ ଗୁଣ ପାଣି ମିଶାଇ ଏହା ଫସଲରେ ଦିଆଯାଏ ।

ଗୋବର—ସଜ ଗୋବର ଜୀବାଣୁ ନାଶକ ବୋଲି ହିନ୍ଦୁଘରେ ସକାଳୁ ଘରଆଗେ ଗୋବର ପାଣି ଛିଞ୍ଚାଯାଏ । ଏପରିକି କଟା ଘାରେ ମଧ୍ୟ ଆୟୋଡ଼ିନ ( Iodin ) ନ ମିଳିଲେ ସଜ ଗୋବର ଦିଆଯାଇପାରେ । ସାର ସ୍ୱରୂପ ଏହା ଅତୁଳନୀୟ । ରାସାୟନିକ ସାର ଦେଲେ ଉତ୍ପାଦିକା ଶକ୍ତି ଅଧିକତର ହୁଏ ସତ; କିନ୍ତୁ ଗୋବର ସାର ଉତ୍ପନ୍ନ ଗହମ ରାସାୟନିକ ସାର ଉତ୍ପନ୍ନ ଗହମଠାରୁ ଶତକଡ଼ା ପନ୍ଦର ଗୁଣ ଅଧିକ ପୁଷ୍ଟିକର ବୋଲି ଏବେ ପ୍ରମାଣିତ ହୋଇଅଛି । ରାସାୟନିକ ସାର ବ୍ୟବହାର କଲେ ଜମିରେ ସମୟ ସମୟରେ ରୋଗ ପଡ଼େ, ଗୋବର କ୍ଷେତ୍ରରେ ଏପରି ହୁଏ ନାହିଁ ।

ଯେଉଁ ଜୀବ ଘାସକୁ ପାଣିପଟେଇ ଆମକୁ ଏପରି ଏକ ଖାଦ୍ୟ ଦେଉଅଛି ଯେ ଏହା ମନୁଷ୍ୟ ନିମିତ୍ତ ସର୍ବୋତ୍କୃଷ୍ଟ ବୋଲି ବିବେଚିତ ହୋଇଛି— ମନେରଖ ୪୦୦ (ଚାରିଶତ) ପାଉଣ୍ଡ ରକ୍ତ ସଂଚାଳିତ (circulation) ହେଲେ ସେଥିରୁ ଏକ ପାଉଣ୍ଡ ଦୁଧ ବାହାରେ ; ଯାହାଦ୍ୱାରା କେବଳ ସ୍ୱାସ୍ଥ୍ୟ ଓ ବଳ ବଢ଼ୁନାହିଁ ବୁଦ୍ଧି ମଧ୍ୟ । ତେଣୁ ଯାହା ମନୁଷ୍ୟକୁ ମନୁଷ୍ୟପରି ଚଳିବାରେ ସାହାଯ୍ୟ କରୁଛି, ଯାହାର ଦହି ଦେହର ସମସ୍ତ ରୋଗ ନାଶ କରିପାରେ ଓ ମନୁଷ୍ୟକୁ ଦୀର୍ଘଜୀବନ ଦେଇପାରେ, ଯାହାର ଲହୁଣୀ ଦୁର୍ବଳ ଶିଶୁ ଓ ବୃଦ୍ଧର ଶକ୍ତି ବଢ଼ାଏ, ଯାହାର ଘିଅ ବାୟୁ ବିଶୋଧନ କରି ବୃଷ୍ଟି ସହାୟକ ହୁଏ ଏବଂ ଯାହାଦ୍ୱାରା ସମାଜର ଖାଦ୍ୟ ସଂସ୍ଥାନ କରାଯାଏ, ଯାହା ଦେହର ରୋଗ ପ୍ରତିଷେଧକ

---

* ଅଗ୍ନୌ ପ୍ରାସ୍ତାହୁତିଃ ସମ୍ୟଗାଦିତ୍ୟମୁପତିଷ୍ଠତେ, ଆଦିତ୍ୟାଜ୍ଜାୟତେ ବୃଷ୍ଟି ବୃଷ୍ଟେରନ୍ନଂ ତତଃ ପ୍ରଜା । ମନୁସଂହିତା, ୩ । ୭୬

ଶକ୍ତି ବଢ଼ାଏ ଏବଂ ଯେଉଁ ଜୀବର ଗୁହ ମୂତ୍ର ସୁଦ୍ଧା ମନୁଷ୍ୟ ସମାଜର ଲକ୍ଷ୍ମୀ ବୃଦ୍ଧି କରିଥାଏ— ସେ ଜୀବ କଅଣ ପ୍ରକୃତ ମା ନୁହେଁ ? ହିନ୍ଦୁ ତେଣୁ ନୂଆ ଘରଟିଏ ତୋଳି ଗାଈଟିଏ ଘରେ ନ ବାନ୍ଧିଲେ ତାକୁ ପ୍ରତିଷ୍ଠା କରି ପାରେ ନାହିଁ । ଗାଈ ହେଉଅଛି ହିନ୍ଦୁର ଅବିଚ୍ଛେଦ୍ୟ ଅଙ୍ଗ ।

ପୃଥିବୀର ସର୍ବଶ୍ରେଷ୍ଠ ଦର୍ଶନ ଗ୍ରନ୍ଥ "ଗୀତା" ଶ୍ରୀକୃଷ୍ଣଙ୍କ ମୁହଁରୁ ବାହାରିଛି । ସେ ଗୋପାଳ । ସେ 'ଗୀତା' ଦେଇ ଯାଇନାହାନ୍ତି । ଆମକୁ ଗୋବର୍ଦ୍ଧନ ସ୍ୱରୂପ କେବଳ ଗୋ ମାହାତ୍ମ୍ୟ ବୁଝାଇ ଦେଇଛନ୍ତି । ଏହାହିଁ ଏକ ଅବତାର ନିମିତ୍ତ ମଧ୍ୟ ଅଛି । କଳିଯୁଗର ସ୍ୱଳ୍ପାୟୁ ମନୁଷ୍ୟ ନିମିତ୍ତ ଗୋପାଳନ ହେଉଛି ନିର୍ଦ୍ଦୋଷ ଧନ, ଜନ, ଲକ୍ଷ୍ମୀ ଓ ସ୍ୱାସ୍ଥ୍ୟ ବର୍ଦ୍ଧନ ଉପାୟ ।

ଗୋରୁକୁ ମା କହି ପୂଜା କରିବା କୁସଂସ୍କାର ନୁହେଁ; ବରଂ ବିଚକ୍ଷଣ ବୈଜ୍ଞାନିକ ଅନ୍ତର୍ଦୃଷ୍ଟି ସମ୍ଭୂତ କୃତଜ୍ଞତାର ମନୋହର ଅଭିବ୍ୟକ୍ତି । ହିନ୍ଦୁ ତେଣୁ ଗୋବଧ ଦେଖି ପାରେନାହିଁ କି ସହି ପାରେନାହିଁ ।

ଗୋରୁ ଏକା ହିନ୍ଦୁର ପୂଜ୍ୟ ନୁହେଁ ଜାତିଧର୍ମ ନିର୍ବିଶେଷରେ ସମସ୍ତ ମାନବ ଜାତିର ପୂଜ୍ୟ ।

---

# ବିବାହ

ହିନ୍ଦୁ ବିବାହର ବିଶେଷତ୍ୱ ଏହି ଯେ (୧) ଅନ୍ୟ ଧର୍ମର ଲୋକମାନଙ୍କ ବିବାହ ପରି ଏହା ଚୁକ୍ତି ନୁହେଁ, ବରଂ ଏକ ଧର୍ମ ବନ୍ଧନ (not a contract but a sacrament), (୨) ତେଣୁ ଏ ବିବାହରେ ବିଧବା ବିବାହ ନାହିଁ । (୩) ବିବାହ ସପିଣ୍ଡ ସଗୋତ୍ର ଲୋକ ମଧ୍ୟରେ ନିଷିଦ୍ଧ, (୪) ବିଭିନ୍ନ ଜାତି ମଧ୍ୟରେ ମଧ୍ୟ ନିଷିଦ୍ଧ । (୫) ଗାନ୍ଧର୍ବ ବିବାହ ବା ବର କନ୍ୟା ନିଜ ପସନ୍ଦରେ ବାହାହେବା ହିନ୍ଦୁମାନଙ୍କର ପ୍ରଥା ନାହିଁ, ମା, ବାପା କିମ୍ବା ମୁରବିମାନେ ବିବାହ ଠିକ୍ କରିଥାନ୍ତି । (୬) କେତେକ ଜାତି ମଧ୍ୟରେ ବାଲ୍ୟ ବିବାହ ଅଛି । ସାରଦା ଆଇନ ପାସ ହେବାପରେ ଆଜି ପ୍ରାୟ ନାହିଁ ।

ହିନ୍ଦୁର ଉପରୋକ୍ତ ଆଚାର ଗୁଡ଼ିକ ଏ ଯୁଗରେ ହାସ୍ୟାସ୍ପଦ ହୋଇଅଛି, ପୃଥିବୀର ଅନ୍ୟ ଜାତିମାନେ ବିବାହ ସମ୍ବନ୍ଧରେ ସ୍ୱାଧୀନ । ମା, ବାପ, ମୁରବି କ୍ୱଚିତ୍ ବର କନ୍ୟାଙ୍କ ବିବାହରେ ହସ୍ତକ୍ଷେପ କରିଥାନ୍ତି । ହିନ୍ଦୁ ତେବେ ଏମିତି ଗୋଠ ଖଣ୍ଡିଆ କାହିଁକି ?

(୧) ହିନ୍ଦୁର ବିବାହ ଏକ ଧର୍ମ ବନ୍ଧନ, ମୁସଲମାନ ଖ୍ରୀଷ୍ଟିୟାନଙ୍କର ବିବାହ ଯେପରି ରେଜିଷ୍ଟ୍ରି ହୁଏ, ଲୋକମାନେ ସାକ୍ଷୀ ପଡ଼ନ୍ତି ହିନ୍ଦୁର ତାହା ନାହିଁ । କିନ୍ତୁ କେହି କେବେ କେଉଁଠାରେ ଶୁଣିଅଛି ହିନ୍ଦୁ ବିବାହ କରି ପରେ ତାହାକୁ ଅସ୍ୱୀକାର କରିଅଛି ? ଲକ୍ଷ ଲକ୍ଷ ତ ନୁହେଁ, କୋଟି କୋଟି ହିନ୍ଦୁ ବାହା ହେଉଛନ୍ତି, କେହି କେବେ ତାହାର ବିବାହକୁ ଅସ୍ୱୀକାର କରିନାହିଁ । ଯେଉଁଠାରେ ବିନା ସାକ୍ଷୀରେ ଗାନ୍ଧର୍ବ ବିବାହ (ନିଜ ପସନ୍ଦ) ହୋଇଅଛି ବରଂ ସେଠାରେ ଏପରି ଅସ୍ୱୀକାର କରିବାର ବହୁତ ଦୃଷ୍ଟାନ୍ତ ପରେ ଦେଖା ଯାଇଅଛି ।

ବିବାହ -ସମୟରେ ବେଦ ଉପରେ ଯେଉଁ ମନ୍ତ୍ର ବା ଶ୍ଳୋକ ବୋଲାଯାଏ ତାହାର ଅର୍ଥ କ୍ୱଚିତ୍ କେହି ବୁଝିଥାନ୍ତି । ସ୍ନାନ, ଉପବାସ, ପ୍ରାର୍ଥନା ପରେ, ଦେବ, ଅଗ୍ନି, ଦ୍ୱିଜ ସମକ୍ଷରେ ଏକ ଅପରକୁ ଚିରଦିନ ନିମିତ୍ତ ଗ୍ରହଣ କରିବା, ମୃତ୍ୟୁ ପର୍ଯ୍ୟନ୍ତ ବିଚ୍ଛେଦ ନାହିଁ । ବିବାହ ପରେ ବର କନ୍ୟା ଏକାଠି ଧ୍ରୁବତାରା ଦର୍ଶନ କରନ୍ତି । ଅର୍ଥାତ୍ ଧ୍ରୁବତାରା ଯେପରି ଅଟଳ ସେପରି ସେମାନଙ୍କର ପ୍ରେମ ଅଟଳ ରହିବ ବୋଲି ସେମାନେ ଏକତ୍ର ପ୍ରାର୍ଥନା କରନ୍ତି । ସ୍ତ୍ରୀ ହେଉଛି ହିନ୍ଦୁର ଅର୍ଦ୍ଧାଙ୍ଗିନୀ, ସ୍ତ୍ରୀ ବିନା ସେ ସମ୍ପୂର୍ଣ୍ଣ ନୁହେ ସ୍ତ୍ରୀ ନଥିଲେ ସେ କୌଣସି ଧର୍ମକାର୍ଯ୍ୟ କରିପାରେ ନାହିଁ । ଧର୍ମତଃ ଯେ ନିଜର ଅଧା, ତାକୁ ସେ ଛାଡ଼ିବ କିପରି ? ହିନ୍ଦୁଘରେ ତେଣୁ ଛାଡ଼ପତ୍ର ନାହିଁ । ହିନ୍ଦୁ ସ୍ତ୍ରୀ ଘରର ରାଣୀ, ଘରର ମାଲିକ । ସ୍ୱାମୀ ସ୍ତ୍ରୀ ମଧ୍ୟରେ ଯେପରି ପରସ୍ପର ବିଶ୍ୱାସ ଦେଖାଯାଏ, ସେପରି ପୃଥିବୀର ଅନ୍ୟତ୍ର [illegible] ନାହିଁ । ଠାଏ ଠାଏ ଅବଶ୍ୟ ବ୍ୟତିକ୍ରମ ଘଟେ, କିନ୍ତୁ ଏହା ଏତେ [illegible] ଯେ ତାହା ବିଚାରକୁ ଆସି ପାରେ ନାହିଁ । ହିନ୍ଦୁ ସ୍ତ୍ରୀ ଯେ 'ସତୀ, ଯାଉଥିଲି, ତାହା ସେ ବାଧ୍ୟ ହୋଇ କରୁନଥିଲି । ଏବେ ମଧ୍ୟ ହିନ୍ଦୁ ସ୍ତ୍ରୀ ସତୀ ହୋଇ ଚିତାକୁ ଡେଇଁ ପଡୁଛି । ନିଜ ପସନ୍ଦ ଅନୁସାରେ ବିବାହ ନାହିଁ, ଛାଡ଼ପତ୍ର ନାହିଁ, ତେବେ ସୁଦ୍ଧା ହିନ୍ଦୁଘରେ ଯେଉଁ ଦାମ୍ପତ୍ୟ ସୁଖ ଶାନ୍ତି ଅଛି ତାହା ପୃଥିବୀରେ ବିରଳ ।

(୨) ବିଧବା ବିବାହ ହିନ୍ଦୁଙ୍କର ନାହିଁ । ଧର୍ମକୁ ସାକ୍ଷୀ କରି ଯେଉଁ ବିବାହ କରାଯାଏ, ଯେଉଁ ଧର୍ମରେ ବାଳିକାମାନେ ନାନାପ୍ରକାର ବ୍ରତ ପାଳନ କରି ଧର୍ମ ସମ୍ବନ୍ଧରେ ବିସ୍ତୃତ ଜ୍ଞାନ ପାଇଥାନ୍ତି; ରାମାୟଣ ପଢ଼ି ପିଲାଦିନୁ ସୀତାଙ୍କୁ ଆଦର୍ଶ ସ୍ୱରୂପ ନିଜ ଜୀବନରେ ପାଳିବାକୁ ମନସ୍ଥ କରିଥାନ୍ତି, ସେ ଧର୍ମରେ ସ୍ତ୍ରୀ ଯେ 'ସତୀ'ହେବେ ଏଥିରେ ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ । ବିଧବା ବିବାହ କଥା ଏ ସ୍ଥଳରେ ଉଠିପାରେ ନାହିଁ । ଧର୍ମପ୍ରାଣ ଉଚ୍ଚ ଶ୍ରେଣୀର ବ୍ରାହ୍ମଣାଦି ଜାତିଙ୍କ ମଧ୍ୟରେ ଆବଦ୍ଧ ହୋଇ ରହି ନଥିଲି । ଭାରତବର୍ଷ ଗୋଟିଏ ଛୋଟିଆ ମହାଦେଶ, ନାନା ରକମର ନାନା ବର୍ଣ୍ଣ, ଭାଷାର ଲୋକେ ଏଠାରେ ବାସ କରନ୍ତି । ଦେଶକାଳପାତ୍ର ଅନୁସାରେ ଏହାକୁ ଅବସ୍ଥାନୁବର୍ତ୍ତୀ କରାଯାଇଛି । ହିନ୍ଦୁ ଧର୍ମରେ ସ୍ଥାନେ ସ୍ଥାନେ ବିଧବା ବିବାହ ଅଛି । ଏ ସମ୍ବନ୍ଧରେ ତ୍ରିକାଳଜ୍ଞ ମହାପୁରୁଷ ସ୍ୱାମୀ ବିବେକାନନ୍ଦଙ୍କର [illegible] ରେ ଉଦ୍ଧାର କରାଗଲା ।

"ଏକ ଦିଗରେ ନବ୍ୟ ଭାରତ କହୁଛି "ସ୍ୱାମୀ ଓ ସ୍ତ୍ରୀ ବାଛିବାରେ ପ୍ରତ୍ୟେକର ସ୍ୱାଧୀନତା ରହିବା ଉଚିତ। ଆମ ଭବିଷ୍ୟତ ଜୀବନର ସୁଖ ଦୁଃଖ ଆମ ବିବାହ ଉପରେ ବହୁତ ନିର୍ଭର କରେ। ତେଣୁ ଆମକଥା ଆମେ ବାଛିନେବୁ। ସମାଜ କିମ୍ବା ବାପ ମା ସେଥିରେ ହସ୍ତକ୍ଷେପ କରିବା ଠିକ୍ ନୁହେଁ।" ଅନ୍ୟ ଦିଗରେ ପୁରୁଣା ରକ୍ଷଣଶୀଳ ଭାରତ ଦାବି କରି ବସିଛି "ବିବାହର ଲକ୍ଷ୍ୟ କନ୍ଦର୍ପ ଲାଳସା ତୃପ୍ତି ନୁହେଁ। ସମାଜକୁ ଠିକ୍ ରଖିବା ଏହାର ଉଦ୍ଦେଶ୍ୟ।" ଆମ ଭାରତ ଲୋକେ ବିବାହ କହିଲେ ଏହା ବୁଝନ୍ତି, ବାହାହୋଇ ପିଲା ଜନ୍ମ କରିଦେଲେ କଥାଟା ଏଠାରେ ସରିଲା ନାହିଁ। ଭବିଷ୍ୟତ ସମାଜର ଭଲ ମନ୍ଦ ଏହି ପିଲାମାନଙ୍କ ଆଚରଣ ଉପରେ ନିର୍ଭର କରୁଥିବାରୁ ସମାଜର ବିବାହକୁ ନିୟନ୍ତ୍ରଣ କରିବାର ଅଧିକାର ଅଛି। ସେହି ପ୍ରକାର ବିବାହ ସେହି ସମାଜରେ ଚଳେ ଯାହାଦ୍ୱାରା ଉକ୍ତ ସମାଜର ସ୍ଥିତି ଅକ୍ଷୁଣ୍ଣ ରହିପାରେ। ସମଷ୍ଟି ବା ସମୂହର ହିତ ନିମିତ୍ତ ଜଣଙ୍କର ଇଚ୍ଛା ବା ତୃପ୍ତିରେ ବାଧା ପଡ଼ିଲେ ତାହା ଧରିବାର ନୁହେଁ। ଉଦାହରଣ ସ୍ୱରୂପ ଆମ ସମାଜ ପ୍ରଚଳିତ ବିଧବା ବିବାହ କଥା ବିଚାର କରିପାରୁ। ମନେ କରନ୍ତୁ ଋଷି ବା ଧର୍ମଗୁରୁ ଲୋକେ ଏହାକୁ ସମାଜରେ ବର୍ଜ୍ଜି କରିଅଛନ୍ତି। ପୁରୁଷ ସ୍ତ୍ରୀକୁ ନିଜ ଅଧୀନରେ ସମ୍ପୂର୍ଣ୍ଣ ଭାବରେ ରଖିବାକୁ ଯେତେ ଯତ୍ନ କରୁ ପଛକେ, ସମାଜର କୌଣସି ଅଭାବକୁ ପୂରଣ କରିନଥିଲେ, ସେମାନେ ଏ ପ୍ରଥା ଚଳାଇ ପାରିନଥାନ୍ତେ। ଏ ପ୍ରଥା ସମ୍ବନ୍ଧରେ ଦୁଇଟି କଥା ଭାବିବାକୁ ହେବ।

(୧) ହିନ୍ଦୁ ସମାଜର ତଳ ଶ୍ରେଣୀ ଲୋକଙ୍କ ମଧ୍ୟରେ ବିଧବା ବିବାହ ଚଳୁଅଛି।

(୨) ଉଚ୍ଚ ଶ୍ରେଣୀ ଲୋକଙ୍କ ମଧ୍ୟରେ ଏହା ଚଳେ ନାହିଁ। ଉଚ୍ଚ ଶ୍ରେଣୀରେ ପୁରୁଷ ଅପେକ୍ଷା ସ୍ତ୍ରୀ ସଂଖ୍ୟା ଅଧିକ।

ବର୍ତ୍ତମାନ ଦେଖ, ପ୍ରତ୍ୟେକ ବାଳିକା ଯଦି ବାହା ହୁଅନ୍ତେ, ପ୍ରତ୍ୟେକଙ୍କ ସକାଶେ ଜଣେ ଲେଖାଏଁ ସ୍ୱାମୀ ମିଳିବା କଷ୍ଟକର ହୁଅନ୍ତା। ୨।୩ ଜଣ ମିଳିବେ ବା କୁଆଡ଼ୁ? ତେଣୁ ସମାଜ ନିୟମ ବାନ୍ଧିଛି, ଜଣେ ଯେତେବେଳେ ଜଣକୁ ପାଇଗଲା, ସେ ଜଣକ ମରିଗଲେ ସେ ଆଉ ଜଣକୁ ନେଇ ପାରିବ ନାହିଁ। ଏପରି କରି ନ ଥିଲେ, କେତେ ବାଳିକାଙ୍କ ଆବଦୀ

ବର ମିଳୁ ନଥାନ୍ତା । ହିନ୍ଦୁ ସମାଜର ଯେଉଁ ସ୍ତରରେ ବାଳକା ଅପେକ୍ଷା ବାଳକ ସଂଖ୍ୟା ଅଧିକ, ସେଠାରେ ବିଧବା ବିବାହ ଚାଲୁଅଛି । ଇଉ-ରୋପରେ ସାହେବ ମାନଙ୍କ ମଧ୍ୟରେ ବିଧବା ବିବାହ ଅଛି । ସେଠାରେ ଅନେକ ବାଳିକା ବାହା ହୋଇ ପାରନ୍ତି ନାହିଁ ।”

“ଆମ ସମାଜ ପ୍ରଚଳିତ ବିବାହ ନୀତି ଏପରି ଗଠିତ ହୋଇଅଛି ଯେ ଏହାଦ୍ୱାରା କେବଳ ପ୍ରକୃତ ସନ୍ଧ୍ୟତା ଗଠିତ ହୋଇ ପାରିବ । ଏହା ଛଡ଼ା ଆଉ କାହାଦ୍ୱାରା ଏହା ହୋଇପାରେ ନାହିଁ । ଇଛା ଅନୁସାରେ ସ୍ତ୍ରୀ ପୁରୁଷ କେବଳ ସେମାନଙ୍କର ଦୈହିକ ଲାଳସା ପୂରଣ ନିମିତ୍ତ ବାହାହେଲେ ସେଥିରୁ ଯେଉଁ ପିଲା ଜନ୍ମ ହେବେ ସେମାନେ କେବେହେଲେ ଭଲ ମନୁଷ୍ୟ ହେବେ ନାହିଁ । ପ୍ରାୟ ସବୁଠାରେ ଏପରି ବାହାଘର ହେଉଛି । ପିଲା ଜନ୍ମୁଛନ୍ତି । ଏମାନଙ୍କୁ ଦୂରେଇ କରି ରଖିବାକୁ ସରକାର ପୋଲିସ ଓ ସୈନ୍ୟ ବଢ଼ାଇବାରେ ଲାଗିଛନ୍ତି । ଏହା ଏପରି ନ କରି ଏହାକୁ ମୂଳରୁ ମାରିବା ଆବଶ୍ୟକ । ତମେ ସମାଜରେ ଅଛ, ସମାଜର ହିତ ନିମିତ୍ତ ତମର ବିବାହକୁ ନିୟନ୍ତ୍ରଣ କରିବାର କ୍ଷମତା ସମାଜର ଅଛି । ଆମ ସମାଜ ପ୍ରଚଳିତ ବିବାହ ବିଧିରେ ଏହି ନୀତି ପ୍ରଚ୍ଛନ୍ନ ଭାବରେ ରହିଅଛି । ବର କନ୍ୟାଙ୍କ ଜାତକ ମିଳାଇ ଯେଉଁ ବାହାଘର ଠିକ୍ ହୁଏ ସେଥିରେ କପରି ମଞ୍ଜାସର ବର କପରି ମିଞ୍ଜାସର କନ୍ୟା ସହିତ ମିଳିତ ହେବ ଠିକ୍ କରାଯାଏ । ମନୁ କହିଛନ୍ତି, ଯେଉଁ ପିଲା କେବଳ ଦୈହିକ ଲାଳସାରୁ ଜନ୍ମ ହୁଏ ସେ ଆର୍ଯ୍ୟ ନୁହେଁ । ସେ କେବଳ ଆର୍ଯ୍ୟ ବୋଲି କୁହାଯାଇ ପାରିବ ଯାହାର ଗର୍ଭାଧାନ ମୁହୂର୍ତ୍ତ ଏପରିକି ମୃତ୍ୟୁ ମୁହୂର୍ତ୍ତ ମଧ୍ୟ ବୈଦିକ ନିୟମାନୁ ସାରୀ ହୋଇ ପାରିଛି ।’ ସେପରି ପିଲାଙ୍କ ସଂଖ୍ୟା ପ୍ରତ୍ୟେକ ଦେଶରେ ଦିନକୁ ଦିନ କମି ଯାଉଛି । ଫଳ ହେଉଛି କୃଷ୍ଣତର ପ୍ରସାର । କଳିଯୁଗ ଏହାଛଡ଼ା ଆଉ କିଛି ନୁହେଁ । ଆମେ ସେ ଉନ୍ନତ ଆଦର୍ଶ ହରାଇ ସାରିଲୁଣି, ଏହାକୁ ସମ୍ପୂର୍ଣ୍ଣ ଭାବରେ ଚଳାଇ ପାରିବାର ଆଶା ମଧ୍ୟ ଦେଖୁ ନାହୁଁ । ବରଂ ଏହି ଉନ୍ନତ ମହାନ୍ ଆଦର୍ଶକୁ ଆମେ କମ୍ବୁତକମାକାର ଭାବରେ ବିକୃତ କରି ସାରିଲୁଣି । ଏହା ବଡ଼ ଅନୁଶୋଚନାର କଥା ଯେ ମା ବାପା ମାନେ ପୂର୍ବେ ଯେପରି ଥିଲେ ଏବେ ଆଉ ସେପରି ନାହାନ୍ତି । ସମାଜର ମଧ୍ୟ ପୂର୍ବ ଶିକ୍ଷା ଆଉ ନାହିଁ । ସମାଜ ପୂର୍ବେ ଲୋକମାନଙ୍କ ନିମିତ୍ତ ଯାହା

କରୁଥିଲ, ଏବେ ତାହା କରୁନାହିଁ । ମାତକୁ କାର୍ଯ୍ୟରେ ପରିଣତ କରିବାରେ ଯେତେ ଗଲତ ଥାଇ ପଛକେ, ମାତଟି ହେଉଛି ବଡ଼ ସୁଚିନ୍ତିତ, ବଡ଼ ଭଲ । ଏହାକୁ ଖଟେଇବାରେ ଯେଉଁ ଗାତ ଗୃହଣ କରିଛୁ, ସେଥିରେ ଦୋଷ ଅଛି । ସେ ବାଟ ଛାଡ଼, ଅନ୍ୟ ବାଟ ଧର । କିନ୍ତୁ ମାତକୁ ବଦଳାଅ ନାହିଁ । ଏ ମାତ ସତ୍ୟ ଉପରେ ପ୍ରତିଷ୍ଠିତ । ତେଣୁ ସର୍ବଦା ଅବିନାଶୀ । ଏହାକୁ ଚଳାଇବା ନିମିତ୍ତ ଅନ୍ୟ ସୁଷ୍ଠୁ ପନ୍ଥା ଧରି ସମାଜ ସଂସ୍କାର କର ।”

ସ୍ୱାମୀଜୀ ଏହା ପ୍ରାୟ ୫୦ ବର୍ଷ ତଳେ କହିଥିଲେ । ଏବେ ବଳିତର ପୃଥିବୀପ୍ରସିଦ୍ଧ ଯୌନତତ୍ତ୍ୱଜ୍ଞ ହାଭଲକ ଏଲିସ୍ (Havelock Ellis) ତାଙ୍କର Studies in the Phychology of Sex ବହିର Sexual morality ଅଧ୍ୟାୟରେ ଲେଖି ଅଛନ୍ତି "The Sexual act is of no more concern to the community than any other private physiological act. It is an impertinence, if not an outage to seek to enquire into it . But the birth of a child is a social act. Not what goes into the womb, but what comes out of it concerns society. The community is invited to rcceive new citizen· It is entitled to demand that the citizen should be worthy of a place in its midst, and that he shall be properly introduced by a responsible father and responsible mother. The whole of Sexual morality, as Ellen Key has said, resolves round the child."

ଅର୍ଥାତ୍ ଦେହର ଅନ୍ୟ କୌଣସି କାମ ଯେପରି, ଯୌନ ମିଳନ ସହବାସ ସେହିପରି ଗୋଟିଏ ଅଟେ । ସେଥିରେ ସମାଜର ପାଟି ଫିଟେଇବାର କୌଣସି ଅଧିକାର ନାହିଁ । ସମାଜ ଯଦି ଏ ବିଷୟରେ ଖୋଜ ଖବର ରଖେ ତାହା ଅନଧିକାର ଚର୍ଚ୍ଚା । ନ ହେଲେ ସୁଦ୍ଧା ନିତାନ୍ତ ଧୃଷ୍ଟତା । କିନ୍ତୁ ପିଲଟିଏ ଜନ୍ମହେବା ଏକ ସାମାଜିକ କଥା । ଗର୍ଭାଶୟ ଭିତରକୁ କଅଣ ଗଲା ସେଥିରେ ସମାଜର କିଛି ଯାଏ ଆସେ ନାହିଁ; କିନ୍ତୁ ତା ଭିତରୁ କଣ ଆସିଲା ସେଥିରେ ସମାଜର ସମ୍ପର୍କ ଅଛି । ନୂଆ ପିଲଟିଏ ଜନ୍ମହେଲା; ସେ ସମାଜରେ ରହିବ ଓ ସମାଜ ତାକୁ ତାହାର ଏକ ଅଂଶ ସ୍ୱରୂପ ଗ୍ରହଣ

କରିବ । ସେ ସମାଜ ନିମିତ୍ତ ଉପଯୁକ୍ତ ହେବ କି ନାହିଁ ଏହା ଦେଖିବାର ଅଧିକାର ସମାଜର ରହିଅଛି । ସମାଜ ତେଣୁ ଦାବି କରୁଅଛି ଯେ ଯେଉଁ ପିଲାଟି ସମାଜରେ ଆସି ଭର୍ତ୍ତି ହେବ ସେ ଦାୟିତ୍ୱଜ୍ଞାନସମ୍ପନ୍ନ ବାପମାଙ୍କ ଦ୍ୱାରା ସମାଜରେ ସ୍ଥାନ ପାଇବ । ଏଲେନ୍ କି ଯଥାର୍ଥ କହିଅଛନ୍ତି—ଯୌନ ବା ସହବାସ ସମ୍ବନ୍ଧୀୟ ନୈତିକତା ପିଲାକୁ ବେଷ୍ଟନ କରିରହିଥାଏ ଅର୍ଥାତ୍ ସ୍ତ୍ରୀ ସହବାସର ନୈତିକତା ଧରାଯାଏ କେବଳ ଚରିତ୍ରବାନ୍ ପିଲା ପାଇବା ନିମିତ୍ତ ।

ହିନ୍ଦୁର ଗାନ୍ଧର୍ବ ବା ସ୍ୱେଚ୍ଛା ବିବାହ ନାହିଁ, ଏହା ଦେଖି ଇଉରୋପ ଆମେରିକାର ଲୋକେ ହିନ୍ଦୁମାନଙ୍କୁ ଥଟ୍ଟା ଟାହୁଲି କରନ୍ତି । ତାଙ୍କର ସ୍ୱେଚ୍ଛା ବିବାହ ପ୍ରଚଳିତ ଅଛି । ତାହାର ଫଳ କଣ ହେଉଛି ଫଳ ଦେଖି କାର୍ଯ୍ୟର ଭଲ ମନ୍ଦ ବିଚାର କରାଯାଏ । ଦିନ ଥିଲା ଆମଦେଶରେ ଏପରି ଏବଂ ଅନ୍ୟ ପ୍ରକାର ଖରାପ ଧରଣର ବିବାହ ଚଳୁଥିଲା । ଆସୁର ପୈଶାଚ ପ୍ରଭୃତି ଆଠପ୍ରକାର ବିବାହର ଉଲ୍ଲେଖ ଆମ ଶାସ୍ତ୍ରରେ ଦେଖା-ଯାଏ । ଏ ସମସ୍ତ ବିବାହର ଫଳ ଦେଖି ତାହାର କୁଫଳ ଅଙ୍ଗରେ ନିଭେଇ ଆମେ ଆମର ବର୍ତ୍ତମାନ ପ୍ରଚଳିତ ପ୍ରଥା ଗ୍ରହଣ କରିଅଛୁଁ ।

ଆମେରିକାରେ ଏବେ ଏତେ ଛାଡ଼ପତ୍ର ଅଧିକ ହେଲାଣି ଯେ ଏହାର ଆଧିକ୍ୟ ଦେଖି ଜଣେ ଆମେରିକା ଲୋକ ସେ ଦିନ କହିଲେ— ଏଣିକି ଆମେ ବାଟରେ ଦେଖାଦେଖି ହେଲାବେଳେ ଭଲ ଅଛ କି ନାହିଁ ବୋଲି ପଚାରି-ପାରୁ ନାହୁଁ । ଏଣିକି ପଚାରୁ— ଏ ବର୍ଷ ଆପଣଙ୍କର ସ୍ତ୍ରୀ ବା ସ୍ୱାମୀ କିଏ ? ଏ ସ୍ତ୍ରୀ ବା ସ୍ୱାମୀକୁ ଆଉ କେତେ ଦିନ ରଖିବେ ? ଇଂଲଣ୍ଡ ବା ବିଲାତର କଥା ଏତେ ଦୂରକୁ ନ ହେଲେ ମଧ୍ୟ ତାହାର ପାଖାପାଖି ।

ହିନ୍ଦୁର ସ୍ୱେଚ୍ଛା ବିବାହର ସୁଖ ବା ଉନ୍ମାଦନା ନାହିଁ, ସତ, କିନ୍ତୁ ସ୍ୱେଚ୍ଛା ବିବାହର ଯନ୍ତ୍ରଣା ସେ ଜାଣିନାହିଁ । ବାହାଘର ବାସି ସେ ଛାଡ଼ପତ୍ର ହୁଏ ନାହିଁ ।

ଛାଡ଼ପତ୍ର ସଂଖ୍ୟା ଭୀଷଣଭାବରେ ବଢ଼ିବାରୁ ବିଲାତ ସରକାର ଏବେ ଗୋଟିଏ କମିଟି ଉପାୟ ସ୍ଥିର କରିବାକୁ ବସାଇଥିଲେ । ଶତ ଶତ ଘର ଭାଙ୍ଗିଲା । ପିଲାଏ ଅନାଥ ହେଲେ । ବାପ ମା କିଏ କୁଆଡ଼େ ଚାଲି-ଯାଇ ଅନ୍ୟକୁ ଆଦରି ରହିଲେ । କ୍ଷତି ହେଲା ପିଲାଙ୍କର, ଭବିଷ୍ୟତ

ସମାଜର ଓ ଦେଶର । କମିଟିରେ ବିଲାତର ଖୁବ୍ ବଡ ବଡ ପଣ୍ଡିତ ଲୋକ ଥିଲେ । ସେମାନେ ବହୁତ ଭାବିଚିନ୍ତି କେତେଗୁଡ଼ିଏ ସୁପାରିଶମୂଳକ ପ୍ରସ୍ତାବ ଦେଇଅଛନ୍ତି । ଆସୋସିଏଟେଡ୍ ପ୍ରେସ-ଆମେରିକା ମାର୍ଚ୍ଚ ୭ତାରିଖ ୧୯୪୭ ମସିହାରେ ଯେଉଁ ତାର ସମ୍ବାଦ ଲଣ୍ଡନଠାରୁ ଆମ ଦେଶକୁ ପଠାଇଥିଲେ ତାହାର କିୟଦଂଶ ଆମ୍ଭେମାନେ ତଳେ ଉଦ୍ଧାର କଲୁଁ :—

Another recommendation was that the civil marriage ceremony often assailed as drab and casual be revised so as to emphasize the solemnity of the occasion and clearly to express the fundamental principle that marriage is the personal union, for better for worse, of one man with one woman, so long as both shall live. "

ଅର୍ଥାତ୍ "ଆଉ ଗୋଟିଏ ସୁପାରିଶ ହେଉଅଛି ସିଭିଲ ମାରେଜ ବା ବରକନ୍ୟାଙ୍କର ଅଫିସକୁ ଯାଇ ରେଜେଷ୍ଟ୍ରି କରି ବାହାହେବା କଥାଟା ବଡ ଶୁଖିଲା ନୀରସ ବୋଲି ଜୀବନ ଓ ମନରେ ଏହା ଏପରି କିଛି ଗୋଟାଏ ଛାପ ପକାଇ ପାରୁ ନାହିଁ । ଏହାକୁ ସଂଶୋଧନ କରିବା ଦରକାର । ବାହାଘରର ଅସଲ ମୂଳ ନୀତି ହେଉଅଛି ଜଣେ ପୁରୁଷକୁ ଜଣେ ସ୍ତ୍ରୀ; ଭଲ ହେଉ ବା ମନ୍ଦ ହେଉ, ଜୀଇଁଥିବା ପର୍ଯ୍ୟନ୍ତ ଏହା ବଦଳିବ ନାହିଁ । ଏହି ନୀତିକୁ ଆଗରେ ରଖି ବାହାଘରକୁ ଏପରି କରିବାକୁ ହେବ ଯେ ତାହା ଜୀବନରେ ଏକ ଅବିସ୍ମରଣୀୟ ଛାପ ପକାଇ ପାରିବ ।

ସେମାନେ ଯାହାକୁ ଚାଖି ଚାଖି ସୁଆଦ ପାଇ ଏବେ ଗୋଇଠା ମାରି ଫୋପାଡିବାକୁ ବସିଲେଣି ଓ ଆମରି କଥା ନେବାକୁ ହାତ ବଢ଼ାଇଲେଣି, ଆମେ ଠିକ୍ ସେତିକବେଳେ ଆମର ହଜାର ହଜାର ବର୍ଷର ଅଭିଜ୍ଞତା ଉପରେ ପ୍ରତିଷ୍ଠିତ ଆଶ୍ରମକୁ କୁସଂସ୍କାର ବୋଲି ଦଳିଦେବାକୁ ବସିଲୁଣି । ଗୁଣ୍ଡପଣ ହିନ୍ଦୁ ସମାଜରେ ପଶୁ ବୋଲି ଆମେ ଚିତ୍କାର କଲୁଣି ! ! !

ହିନ୍ଦୁର ବାହାଘର ଏପରି ସୁଚିନ୍ତିତ ଯେ ସେ ସମ୍ବନ୍ଧରେ ଅଲଗା ଖଣ୍ଡେ ବହି ଲେଖାଯାଇ ପାରେ, ପାଠକ ପାଠିକାମାନଙ୍କୁ ଅନୁରୋଧ ସେମାନେ ବାହାଘର ସମୟରେ ପୁରୋହିତମାନେ ଯେଉଁ ସଂସ୍କୃତ ଶ୍ଳୋକ

ବୋଲନ୍ତି ତାହାର ଅର୍ଥ ବୁଝିବା ନିମିତ୍ତ ଟିକିଏ ଯତ୍ନ କରିବାକୁହେବ । ଏଠାରେ ବିବାହର ବିସ୍ତୃତ ଆଲୋଚନା କଲେ—ଏ ବହି ବହୁତ ବଡ଼ ହୋଇଯିବ ।

(୩) ହିନ୍ଦୁ ସଗୋଧ, ସପିଣ୍ଡ ଓ ନିକଟ ସମ୍ପର୍କରେ ବାହାହୁଏ ନାହିଁ । ଏପରି କଲେ ଭଲ ପିଲା ଜନ୍ମ ହୁଅନ୍ତି ନାହିଁ । ଯଦି ଏକ ବଂଶରେ କିଛି ଦୋଷ ଥାଏ ତାହା ଦ୍ୱିଗୁଣିତ ଭାବରେ ପିଲାମାନଙ୍କଠାରେ ବାହାରେ । ଲଣ୍ଡନ ସହରର ଇଷ୍ଟ ଏଣ୍ଡରେ (East-End, London) ବାସ କରୁଥିବା ଗରିବ ଲୋକମାନେ ଆପଣା ଆପଣା ଭିତରେ ବାହା ହୁଅନ୍ତି । ସେମାନଙ୍କ ମଧ୍ୟରୁ ଅନେକେ ନିଜର ୪ର୍ଥ ପୁରୁଷ ପର୍ଯ୍ୟନ୍ତ ଯାଇ ପାରନ୍ତି ନାହିଁ, ଦୂରକୁ ଯାଇ ବାହା ନହେଲେ ବଂଶ ଲୋପ ହୋଇଯାଏ । ଇଉରୋପ ମହାଦେଶର ରାଜବଂଶମାନଙ୍କରେ ମଧ୍ୟ ଏହି ଅବସ୍ଥା ଅଳ୍ପ ବହୁତ ପୂର୍ବେ ଦେଖା ଯାଇ-ଥିଲା । ଏବେ ବିଜ୍ଞାନର ବିକାଶ ସହିତ ସେମାନେ ନିଜର ଭୁଲ ବୁଝି ସାବଧାନ ହୋଇଗଲେଣି ।

ପାଶ୍ଚାତ୍ୟ ଦେଶମାନଙ୍କରେ ବ୍ୟଭିଗ୍ୱର ବଢିବାରୁ ଛାଡ଼ପତ୍ର ବଢ଼ୁଛି । ଏହାର କାରଣ ବିଗ୍ୱର କରି ସେମାନେ ଏବେ କହିଲେଣି ଅଳ୍ପ ବୟସରେ ବିବାହ ହେଲେ ଏହା କମି ଯାନ୍ତା । ବେଶି ବୟସରେ ବାହାହେଲା ବେଳକୁ ଯୁବକ ଯୁବତୀ ଅନ୍ୟ ବହୁ ଯୁବକ ଯୁବତୀଙ୍କ ସଂସର୍ଗରେ ଆସିଥାନ୍ତି । ପିଲାଦିନେ ବା ପ୍ରଥମ ଅବସ୍ଥାରେ ଯେ ଯାହାକୁ ଭଲ ପାଏ; ସେ ତାକୁ ସହଜରେ ଭୁଲିପାରେନାହିଁ । ବହୁ ସଂସର୍ଗରେ ବହୁରୂପ ମନରେ ପଡ଼ିଲେ ମନ ବିଚଳିତ ହୁଏ ।

## ବିବାହରେ ରାଶି ନକ୍ଷତ୍ର ବା ମେଳାପକ ବିଗ୍ୱର:—

ହିନ୍ଦୁମାନେ ଜ୍ୟୋତିଷ ଓ ସାମୁଦ୍ରିକ (ହାତରେଖା) (astrology and Palmistry) ବିଦ୍ୟା ପ୍ରଥମେ ଉଦ୍ଭାବନ କରି ଏଥିରେ ଅଭାବନୀୟ ଉନ୍ନତି କରିଥିଲେ । ସାରା ଜଗତ ଏହି ବିଦ୍ୟା ଭାରତଠାରୁ ଶିଖିଅଛି । ଏହି ବିଦ୍ୟା ବଳରେ ସେମାନେ ଜାଣିଥିଲେ ଜନ୍ମ ସମୟର ଗ୍ରହ ନକ୍ଷତ୍ରମାନଙ୍କର ଅବସ୍ଥିତି ଅନୁସାରେ ଲୋକମାନଙ୍କର ଦେହ, ମନ, ସ୍ୱଭାବ, ଚରିତ୍ର ଓ ଭାଗ୍ୟ ମଧ୍ୟ ନିୟନ୍ତ୍ରିତ ହୁଏ । କେଉଁ ବରକୁ କେଉଁ କନ୍ୟା, କେଉଁ କନ୍ୟାକୁ

କେଉଁ ବର ଉପଯୁକ୍ତ ହେବ ଏପରି ବାଛି ବିବାହ କଲେ ଜୀବନ ସୁଖ-ମୟ ହେବ ସେମାନେ ଏହି ବିଦ୍ୟା ବଳରେ ଠିକ କରୁଥିଲେ । ମେଳକ ବଗ୍ରହ ମାନଙ୍କରେ "ନାଗନାଡ଼ୀ" ଅନ୍ୟତମ ।ଏଥିରେ ଅଛି । X X :-

ବର କନ୍ୟାଙ୍କର ରାଶି ଏକଇ ଧାଡ଼ିରେ;
ପଡ଼ିଲେ ଯେ ନାଗନାଡ଼ୀ ହୁଅଇ ବଗ୍ରହେ ।
ହୋଇଡେ ମୃତହତ ପୁତ୍ରେ ଜନମାଏ ରୋଗ,
ମଧ୍ୟରେ କରଇ ନାରୀ ପୁରୁଷ ବିଯୋଗ ।"

ବର କନ୍ୟାଙ୍କର ରକ୍ତ ବିଭିନ୍ନ ଧରଣର ହେଲେ 'ମୃତହତ' ଅର୍ଥାତ୍ ପିଲାମାନେ ଜନ୍ମ ହେଉ ହେଉ ମରଯାନ୍ତି ବୋଲି ଏବେ ଡ଼ାକ୍ତରମାନେ ଠିକ୍ କରିଅଛନ୍ତି । ଏପରି ମୃତ୍ୟୁ ଯେଉଁ ଦୋଷରୁ ହୁଏ ତାହାକୁ "Erythro-plastosis Foetalis" ନାମ ଦିଆଯାଇଅଛି । ୧୪।୩।୫୦ ତାରିଖର ଅମୃତ ବଜାର ପତ୍ରିକାରେ (ଡ଼ାକ ସଂସ୍କରଣ) ନିମ୍ନ ଲିଖିତ ସମ୍ବାଦ ପ୍ରଚାରିତ ହୋଇଥିଲା ।

Patna Doctor's Brilliant Perfomance.

Patna March 11./50.

Doctor Chintaharan Prasad has succeeded in dramatically saving the life of a newly born child in tne Patna General Hospital by draining out and then replacing ninety percent of it blood, thus over coming a fatal condition known as Erythroplastosis Foetalis" which is a mysterious disease discovered only recently.

The disease arises due to some discrepancies between the blood of the father and the mother and leads to the death of the child within a few hours of its birth.

Four previous babies born to one Mrs. Mishra had all died within a few hours after birth and Dr. Chintaharan Prasad established the presence of this

disease several days before the birth of her chiid and made necessary arrangements to completely change the blood of the baby as soon as it was born. Within a few hours after it was born, the baby was rushed to the hospital and ninety Percent of its blood was drained out and a suitable type of blood was transfused + + + specialists are of the opinion that the baby will survive + + +

(U. P.)

ଅର୍ଥାତ୍ ଡାକ୍ତର ଚନ୍ଦ୍ରାହରଣ ପ୍ରସାଦ ପାଟନାଠାରେ ବଡ଼ ଆଶ୍ଚର୍ଯ୍ୟ ଭାବରେ ଏକ ସଦ୍ୟଃ ପ୍ରସୂତ ପିଲାର ଜୀବନ ରଖିଦେଇ ଅଛନ୍ତି । ପାଟନା ବଡ଼ ଡାକ୍ତରଖାନାରେ ସେ ଉକ୍ତ ପିଲା ଦେହର ଶତକଡ଼ା ନବେ ଅଂଶ ରକ୍ତ ବାହାର କରି ନେଲେ ଏବଂ ଏବେ ଯେଉଁ "ଏରିଥ୍ରୋ-ଫିଟାଲିସ" ନାମକ ଅଦ୍ଭୁତ ମାରାତ୍ମକ ରୋଗ ଧରା ପଡ଼ୁଛି ତାହା ଉଣା କରିଦେଲେ ।

ବାପ ମାଙ୍କ ରକ୍ତରେ ଅସାମଞ୍ଜସ୍ୟ ଘଟିଲେ ଏ ରୋଗ ବାହାରେ ଓ ପିଲା ଜନ୍ମ ହେବାର କେତେ ଘଣ୍ଟା ମଧ୍ୟରେ ତାକୁ ମାରି ଦିଏ ।

ଶ୍ରୀମତୀ **ମିଶ୍ରଙ୍କର** ଆଗରୁ ଗୋଟିଏ ପିଲା ଜନ୍ମ ହୋଇ ଏପରି ମରି ଯାଇଥିଲେ । ଡାକ୍ତର ଚନ୍ଦ୍ରାହରଣ ପ୍ରସାଦ ପିଲା ଜନ୍ମ ହେବାର କେତେଦିନ ଆଗରୁ ମୃତ୍ୟୁର କାରଣ ଠିକ୍ କରି ପିଲା ଜନ୍ମ ହେବା ମାତ୍ରକେ ତାକୁ ପାଟନାର ବଡ଼ ଡାକ୍ତରଖାନାକୁ ନେଇଯାଇ ତାହା ଦେହରୁ ଶତକଡ଼ା ନବେ ଅଂଶ ରକ୍ତ ବାହାର କରି ନେଲେ ଓ ତାହା ବଦଳରେ ଉପଯୁକ୍ତ ରକ୍ତ ପିଲା ଦେହରେ ଭର୍ତ୍ତି କରିଦେଲେ । ବିଶେଷଜ୍ଞମାନେ କହନ୍ତି "ପିଲାଟି ଏଥରକ ବଞ୍ଚିବ ।"

ବିଜ୍ଞାନ ଏବେମାତ୍ର ଏହା ବାହାର କଲା । ସମୟ ଆସୁଛି ବିଜ୍ଞାନର ପ୍ରଗତି ନାଗନାଡ଼ୀ ପରି ଅନ୍ୟାନ୍ୟ ମେଳକର ସତ୍ୟ ଆସ୍ତେ ଆସ୍ତେ ବାହାର କରିବ ।

———

# ଋତୁମତୀ ନାରୀ

ହିନ୍ଦୁ ଋତୁମତୀ ନାରୀକୁ ସ୍ପର୍ଶ କରେ ନାହିଁ । ସ୍ଥାନେ ସ୍ଥାନେ ଏହା ଏପରି ପାଳିତ ହୁଏ ଯେ ନାରୀ ଋତୁମତୀ ହେବା ମାତ୍ରକେ ସେ ଏକ ଗୃହ କୋଣରେ ଅଲଗା ହୋଇ ରହେ ଯେପରି ତାହାର ଛାଇ ସୁଦ୍ଧା ପୁରୁଷ ଉପରେ ପଡ଼ି ପାରିବ ନାହିଁ । ଅହିନ୍ଦୁ ଏଥିନିମିତ୍ତ ହିନ୍ଦୁଙ୍କୁ ଥଟ୍ଟା ଟାହିଲି କରନ୍ତି, କହନ୍ତି—ଏହା ନାରୀ ନିର୍ଯାତନା ଛଡ଼ା ଆଉ କିଛି ନୁହେଁ । ପରାଶର ସ୍ମୃତିରେ ଅଛି "ପ୍ରଥମ ଦିନ ଋତୁମତୀ ନାରୀ ହେଉଅଛି ଚଣ୍ଡାଳୀ, ଦ୍ୱିତୀୟ ଦିନ ବ୍ରହ୍ମଘାତିନୀ, ତୃତୀୟ ଦିନ ଧୋବଣୀ, ଚତୁର୍ଥ ଦିନ ସେ ଶୁଦ୍ଧି ଲାଭ କରେ । ତିନି ଭିନ୍ନ ଦିନ ନିମିତ୍ତ ତିନି ପ୍ରକାର ନାମ କାହିଁକି ଦିଆ-ଯାଇଅଛି ଦେଖାଯାଉ ।

ଆମେରିକାର ଜଣେ ବୈଜ୍ଞାନିକ ତାଙ୍କର ଋତୁମତୀ ଦାସୀ ହାତରେ ବଗିଚାରୁ ଗୋଲାପ ଫୁଲ ଛିଣ୍ଡାଇ ଆଣି ଦେଖିଲେ ଯେ ଫୁଲର ପାଖୁଡ଼ା ଗୁଡ଼ିକ ସାଧାରଣ ସମୟ ଅପେକ୍ଷା ଶୀଘ୍ର ଶୀଘ୍ର ମଉଳି ଗଲା । ତେଣୁ ସେ ଏ ବିଷୟରେ ଗବେଷଣା କରିବା ନିମିତ୍ତ ତାଙ୍କ ଦେଶର ନାନା ସ୍ଥାନରେ ବୁଲିଲେ । କେତେକ ସ୍ଥାନରେ ଦେଖିଲେ ଯେ ସେଠାରେ ଋତୁମତୀ ନାରୀ-ମାନେ ବଗିଚାକୁ ଯାଆନ୍ତି ନାହିଁ କିମ୍ବା ନୂଆ ଗଛ ଲଗାନ୍ତି ନାହିଁ । ଋତୁସ୍ରାବ ରକ୍ତ ପରୀକ୍ଷା କରି ଦେଖିଲେ ଯେ ଋତୁମତୀ ନାରୀର ଦେହରେ ପ୍ରଥମ ଦିନ ଏକ ବିଷାକ୍ତ ପଦାର୍ଥ ଜାତ ହୁଏ । ଏହାର ନାମ ସେ ଦେଲେ Monoton । ଏହି ବିଷର ଉଗ୍ରତା ପ୍ରଥମ ଦିନ ଦଶପଣ, ଦ୍ୱିତୀୟ ଦିନ ଷୋଳପଣ, ତୃତୀୟ ଦିନ ଚୃଚପଣ ରହେ । ଋତୁ ବନ୍ଦ ହେଲେ ଦେହ ଶୁଦ୍ଧ ହୁଏ, ଅର୍ଥାତ୍ ବିଷ ଆଉ ନଥାଏ । ୧୯୨୧ ମସିହାର American Journal of Chemical Medicineରେ ଏହାର ବିସ୍ତୃତ ବିବରଣୀ ଦିଆ ଯାଇଅଛି । ବିଷର ଉଗ୍ରତା ଅନୁସାରେ କବି ଭାଷାରେ ଋତୁମତୀ ନାରୀକୁ ଯଥାକ୍ରମେ ଚଣ୍ଡାଳୀ, ବ୍ରହ୍ମଘାତିନୀ ଓ ଧୋବଣୀ ବୋଲି କୁହା ଯାଇଛି । ଏହା କଅଣ

ନାରୀ ନର୍ଯ୍ୟାତନା ? ହିନ୍ଦୁର ବଜ୍ଞାନ ଜ୍ଞାନ ତାଙ୍କୁ ମୂର୍ଖଠାରୁ ବହୁତ ଟାହୁଲ ଟାପର ଶୁଣାଇଛି । ଇଂଲଣ୍ଡର ଯୌନତତ୍ତ୍ୱଜ୍ଞ ପଣ୍ଡିତ ହାଭ୍‌ଲକ ଏଲିସ ଏ ସମ୍ବନ୍ଧରେ ତାଙ୍କର ବଖ୍ୟାତ Studies in the Psychology of sex ବହିରେ ଗୋଟିଏ କମ୍ବଦନ୍ତୀ ଉଦ୍ଧାର କରିଛନ୍ତି, Oh ! Menstruating woman, thou art a fiend, From whom all nature should be closely screened. ଅର୍ଥାତ୍ ଋତୁ ସମୟରେ, ନାରି, ତୁ ରାକ୍ଷସୀ ପାଲଟି ଯାଉ, ସାରା ଦୁନଆଟାକୁ ସେତେବେଳେ ତୋଠାରୁ ଯତ୍ନ ସହକାରେ ଅଲଗା ରଖିବା ଦରକାର । ଏଥିରୁ ଜଣା ପଡୁଛି ଆମେରିକା, ଇଉରୋପ ଏବେ ଯାହା ଜାଣିଲେ ହିନ୍ଦୁ ତାହା କେଉଁକାଳୁ, କେଉଁ ସ୍ମରଣାତୀତକାଳୁ ଜାଣି ତାହାର ସାମାଜକ ବଧି ସୁନ୍ଦର ଭାବରେ ଗଢ଼ିଦେଇ ଯାଇଥିଲ । ଏମାନେ ଏହା ଜାଣି ସୁଦ୍ଧା ତାଙ୍କର ସାମାଜକ ବଧି ହିନ୍ଦୁ ଭଳିଆ ଏପର୍ଯ୍ୟନ୍ତ ଗଢ଼ି ନାହାନ୍ତି ।

———

# ହିନ୍ଦୁ କଥା କହେ ନାହିଁ

(୧) ଖାଇବା (୨ ଝାଡ଼ାଫେରିବା ଓ (୩) ପସା କରିବା ସମୟରେ ।

ପାଶ୍ଚାତ୍ୟ ଭାବାପନ୍ନ ହିନ୍ଦୁ ଓ ଅହିନ୍ଦୁ ନୈଷ୍ଠିକ ହିନ୍ଦୁଙ୍କୁ ଏଥି ନିମିତ୍ତ ବହୁତ ଥଟ୍ଟା ଟାହିଲି କରନ୍ତି । ଇଉରୋପୀୟମାନେ ଖାଇବା ସମୟରେ ଖୁସିଗପ କରି ଖାଆନ୍ତି, ଏପରି କି ତାଙ୍କ ଡିନର (Dinner) ସମୟରେ ବକ୍ତୃତା ମଧ୍ୟ ଦିଆଯାଏ; ହିନ୍ଦୁ ଖାଇବା ସମୟରେ ତୁନି ହୋଇ ଖାଏ, ଏହା ତାହାର ଶାସ୍ତ୍ରବିଧାନ । ନୈଷ୍ଠିକ ହିନ୍ଦୁ ଯାହା ଖାଏ ତାହା ଭଗବାନଙ୍କୁ ପ୍ରଥମେ ଅର୍ପଣ କରେ, ତାହାପରେ ନିବିଷ୍ଟଚିତ୍ତରେ ଖାଇବା ସମୟରେ ଭାବେ ଯେ ସେ ଯାହା ଖାଉଅଛି ତାହା ଭଗବାନଙ୍କର ପ୍ରସାଦ ସ୍ୱରୂପ ଦେହ ମଧ୍ୟରେ ପ୍ରବେଶ କରି ତାହାର ସ୍ୱାସ୍ଥ୍ୟ, ବଳ, ବୃଦ୍ଧି କରୁଅଛି । ଏଥିନିମିତ୍ତ ତୁନି ହୋଇ ଖାଇବା ନିତାନ୍ତ ଆବଶ୍ୟକ, ପୁଣି ଖାଇବା ସମୟରେ କଥାବାର୍ତ୍ତା କଲେ ଖାଦ୍ୟ ଭଲ ଚୋବାଇ ହୁଏ ନାହିଁ ଓ ଖାଦ୍ୟର ସ୍ୱାଦ ମଧ୍ୟ ଭଲ ଜାଣି ହୁଏ ନାହିଁ । ହିନ୍ଦୁ ମାଛ ମାଂସ ଖାଏ, ସେ ଏକାବେଳକେ ନିରାମିଷାଶୀ ନୁହେଁ, କିନ୍ତୁ ତାହାର ଖାଦ୍ୟରେ ଆମିଷର ପରିମାଣ କମ । ଇଉରୋପୀୟମାନଙ୍କ ଖାଦ୍ୟରେ ଆମିଷ, ବିଶେଷତଃ ମାଂସ ବହୁତ ଓ ବେଶୀ ଥାଏ । ପ୍ରକୃତିରେ ଆମେ କଣ ଦେଖୁ ? ତୃଣଭୋଜୀ ଗୋରୁ, ଘୋଡ଼ା, ଛେଳି, ମେଣ୍ଢା ଆଦି ଜୀବମାନେ ଖାଇବା ସମୟରେ ତୁନି ହୋଇ ଖାଆନ୍ତି । ମାଂସାଶୀ ଜନ୍ତୁ ଖାଇବା ସମୟରେ ଗାଉଁ ଗାଉଁ ଶବ୍ଦ କରି ଖାଆନ୍ତି । ଖାଇବା ପୂର୍ବରୁ ଚଳୁ କରିବା ଓ ଆଗ ଟିକିଏ ପାଣି ପିଇ ପରେ ଖାଇବା ଏକ ସୁନ୍ଦର ପ୍ରଥା । ଖାଦ୍ୟ ଯେଉଁ ନଳୀ ପଥରେ ପେଟ ଭିତରକୁ ଯାଏ, ତାହା ସମସ୍ତ ସମୟରେ ଶୁଖିଲା ଥାଏ । ଆଗ ପାଣିଯାଇ ସେ ବାଟକୁ ସଳଖ ଓ ପରିଷ୍କାର କରିଦିଏ । ଇଉରୋପୀୟମାନେ ଖାଇବା ପୂର୍ବରୁ ସୁପ୍ Soup) ବା ଝୋଳ ବା ଅଣ ପିଅନ୍ତି ।

ଝାଡ଼ାଫେରିବା ଓ ପ୍ରସ୍ରା କରିବା ସମୟରେ ତୁନ ହୋଇ ରହିବା ବିଶେଷ ଆବଶ୍ୟକ । ତୁନ ହୋଇ ଦୁଇ ପାଟି ଦାନ୍ତକୁ ଚାପି ରଖିଲେ ମୁଣ୍ଡ ବାଳ ସହଜରେ ପାଚେ ନାହିଁ । ଏହାଦ୍ୱାରା ମନୁଷ୍ୟ ଅନ୍ୟମନସ୍କ ହେବାର ସମ୍ଭାବନା କମ ଥାଏ । ଅନ୍ୟମନସ୍କ ହେଲେ ଝାଡ଼ା ପ୍ରସ୍ରା ଭଲ ବାହାରେ ନାହିଁ ଏବଂ ଦେହର ଅନ୍ୟ ସ୍ଥାନରେ ତାହା ପଡ଼ିଯିବାର କିମ୍ବା ଲଗିବାର ଆଶଙ୍କା ପ୍ରାପ୍ତ ରହିଥାଏ । ଅନ୍ୟମନସ୍କ ହୋଇ ପ୍ରସ୍ରା କରିବାକୁ ଯତ୍ନକଲେ ଆମ୍ଭମାନଙ୍କ କଥାର ସତ୍ୟ ଜଣାପଡ଼ିବ ।

ନୈଷ୍ଠିକ ହିନ୍ଦୁ ପ୍ରସ୍ରା କରି ସାରି ପାଣିରେ ମୂତ୍ରଦ୍ୱାର ଧୋଇଦିଏ । କାରଣ ମୂତ୍ରଦ୍ୱାରରେ ଯତ୍‌କିଞ୍ଚିତ୍ ମୂତ୍ର ଲାଗି ରହେ । ଏହା ପିନ୍ଧିବା ଲୁଗାକୁ ମଇଳା କରେ । ମଇଳାକୁ ନୈଷ୍ଠିକ ହିନ୍ଦୁ ବାଘ ସାପ ପରି ଡରେ । ନୈଷ୍ଠିକ ମୁସଲମାନମାନେ ଖଣ୍ଡେ ମାଟି ଢେଲା ଧରି ମୂତ୍ରଦ୍ୱାର ପୋଛି ଦିଅନ୍ତି । ଏହା ସ୍ୱାସ୍ଥ୍ୟ ନିମିତ୍ତ ଏକ ସୁନ୍ଦର ଅଭ୍ୟାସ ଅଟେ । ମୁସଲମାନ ଧର୍ମ ଆରବ ଦେଶରୁ ବାହାରି ଥିଲା । ସେ ଦେଶ ମରୁଭୂମି, ପାଣି କ୍ୱଚିତ୍ ମିଳେ । ମାଟି ଢେଲା ଏଥି ନିମିତ୍ତ ବ୍ୟବହାର କରିବା ସ୍ୱାଭାବିକ । ଆମ ଦେଶରେ ପାଣିର ଅଭାବ ନାହିଁ, ପ୍ରସ୍ରା କରି ସାରିବା ପରେ, ପାଣି ବ୍ୟବହାର କରିବା ସ୍ୱାସ୍ଥ୍ୟ ସହାୟକ ।

———

# ଆରତି (ଆଳତି)

ଧୂପ ଓ ଆଳତି ସମୟରେ ହିନ୍ଦୁ ମନ୍ଦିରରେ ଯେଉଁ ଘଣ୍ଟ ବାଡ଼ଆ ହୁଏ ସେଥିରେ କାନ ଅତଡ଼ା ପଡ଼ଯାଏ; ଘଣ୍ଟ, ଘଣ୍ଟା, ଖୋଳ କରତାଳ ଠାଏ ଠାଏ ଏକାଠି ବାଜି ଉଠେ । ଏଥିରେ ତାଳ ନାହିଁ, ଲୟ ନାହିଁ, କୌଣସି ପ୍ରକାର ସଙ୍ଗୀତ ନାହିଁ, ଖାଲି କାନଫଟା ଶବ୍ଦ । ଏପରି ଶବ୍ଦ-ଜଙ୍ଗଲ ମଧ୍ୟରେ ହିନ୍ଦୁ ଆସେ ଦିଅଁ ଦର୍ଶନ କରିବାକୁ, ଏଥିରେ ମନ ଯେପରି ଦିଅଁଙ୍କ ପାଖରେ ରହୁଥିବ ତାହା ବେଶ ଅନୁମାନ କରାଯାଇ-ପାରିବ । ଅହିନ୍ଦୁମାନେ ହିନ୍ଦୁ ମନ୍ଦିରର ଆଳତି ସମ୍ବନ୍ଧରେ ଏପରି ମତ ପ୍ରକାଶ କରିଥାନ୍ତି ।

ମୁସଲମାନମାନେ ତାଙ୍କ ମସଜିଦ୍‌ରେ ଜଣେ ଲୋକ ରଖିଥାନ୍ତି । ସେ ପ୍ରାର୍ଥନା ସମୟରେ ମସଜିଦ୍‌ର ନିର୍ଦ୍ଦିଷ୍ଟ ଉଚ୍ଚ ସ୍ଥାନକୁ ଯାଇ ଡାକ ଦିଅନ୍ତି । ଏ ଡାକ ଶୁଣିବା ମାତ୍ରକେ ମୁସଲମାନ ମସଜିଦ୍‌କୁ ଆସି ପ୍ରାର୍ଥନାରେ ଯୋଗ ଦିଅନ୍ତି । ଆସି ନ ପାରିଲେ ସେ ଯେଉଁଠି ଥାନ୍ତି ସେଠାରେ ରହି ପ୍ରାର୍ଥନା କରନ୍ତି । ଏ ପ୍ରଥାଟି ବଡ଼ ସୁନ୍ଦର । ଖ୍ରିଷ୍ଟିଆନ ମାନଙ୍କ ଚର୍ଚ୍ଚରେ ଘଣ୍ଟା ବାଜେ । ସେ ଘଣ୍ଟା ଶୁଣିବା ମାତ୍ରକେ, ସେମାନେ ମଧ୍ୟ ସେପରି କରନ୍ତି । ଏନ୍‌ଜେଲେସ (ଚର୍ଚ୍ଚ ଘଣ୍ଟା ଦିନ ଆରମ୍ଭ, ମଝି ଓ ଶେଷରେ ବାଜେ) ନାମକ ଖଣ୍ଡିଏ ଚିତ୍ର ଜଣେ ଫରାସୀ ଚିତ୍ରକାର ଆଙ୍କିଛନ୍ତି । ଏ ଚିତ୍ରଟି ପୃଥିବୀ ପ୍ରସିଦ୍ଧ ହୋଇ ପାରିଛି । ଚର୍ଚ୍ଚରେ ଏଞ୍ଜେଲସ ବାଜିବା ଶୁଣି ବିଲରେ କାମ କରୁଥିବା କୃଷକ ଓ କୃଷକପତ୍ନୀ ସେହି ବିଲରେ ଶସ୍ୟ କାଟୁଥିବା ଅବସ୍ଥାରେ ଏକ ହାତରେ 'ଦା' ଓ ଅନ୍ୟ ହାତରେ ଶସ୍ୟ ବିଡ଼ା ଧରି ଠିଆହେବା ଅବସ୍ଥାରେ ଟିକିଏ ମୁଣ୍ଡ ନୁଆଁଇ ଦେଇ ମନେ ମନେ ପ୍ରାର୍ଥନା ବା ଭଗବାନଙ୍କୁ ନମସ୍କାର କରୁଅଛନ୍ତି ।

ମୁସଲମାନ ଧର୍ମ ଆରବ ଦେଶରୁ ବାହାରିଥିଲା । ଆରବ ମରୁଭୂମି ଲୋକସଂଖ୍ୟା ବଡ଼ କମ । ଗଛପତ୍ର ଖୁବ୍ କମ । ବଣ ଜଙ୍ଗଲ ନାହିଁ ।

ସେପରି ନିର୍ଜନ ଦେଶରେ ଜଣେ ଡାକିଲେ ପାଖ ଆଖ ଲୋକ ବେଶ ଶୁଣିପାରନ୍ତି ବା ଶୁଣିବାର ଯଥେଷ୍ଟ ସମ୍ଭାବନା ଥାଏ । ପୃଥିବୀର ଜନବହୁଳ ଦେଶ ମଧ୍ୟରେ ଭାରତ ଗୋଟିଏ । ଏଠାରେ ଗଛ ପତ୍ର ବଣ ଜଙ୍ଗଲ ଗାଁ ଗଣ୍ଡା ନଗର ଭର୍ତ୍ତି ହୋଇଛି । ଜନ କୋଳାହଳ ଲାଗି ରହୁଛି । ଗାଁ ଓ ସହର ଏପରି ଭିଡ଼ ଆଉ, ଏପରି ଗଳି ରାସ୍ତା ପୂର୍ଣ୍ଣ ଯେ ଶବ୍ଦ ସଞ୍ଚାଳନ ଅବାଧ ହୋଇପାରେ ନାହିଁ । ତେଣୁ ଦେଉଳମାନଙ୍କରେ ଯେଉଁ ଘଣ୍ଟ ଘଣ୍ଟା ସକାଳ, ଦ୍ୱିପହର ଓ ସନ୍ଧ୍ୟାବେଳେ ବାଜେ ତାହା ସଙ୍ଗୀତ ଝଙ୍କାର ଉଠାଇବା ନିମିତ୍ତ ହୋଇନାହିଁ । ଏବେ ସୁଦ୍ଧା ଗାଁରେ ଥିବା ଦେବ ମନ୍ଦିରମାନଙ୍କରେ ଘଣ୍ଟ ଘଣ୍ଟା ସାଙ୍ଗରେ ବଡ଼ ବଡ଼ ତାଳ ଢକ୍କା—ବଡ଼ କାଠ ରହିଅଛି । ଆରତି ସମୟରେ ଏହା ପିଟାଯାଏ । ଏହାକୁ ପିଟିବାରେ, ଘଣ୍ଟ ଘଣ୍ଟା, ତୂରୀ, ଶଙ୍ଖ ବଜାଇବାରେ କେହି କେବେ ତାଳଲୟ ଧରିବାର ଦେଖା-ଯାଏ ନାହିଁ । ଶବ୍ଦ କରିବାର ଅର୍ଥ ଯାହା ଉଦ୍ଦେଶ୍ୟ ଦେବାର ଅର୍ଥ ତାହା । ଏହି ଶବ୍ଦ ପାଖଆଖର ଘର, ଦ୍ୱାର, ବିଲ, ବାଡ଼ି, ବଣ ଜଙ୍ଗଲକୁ ଶୁଣା-ଯାଏ । ଯେଉଁ ହିନ୍ଦୁ ଯେଉଁଠାରେ ଥାଉ ପଛକେ, ଏଶବ୍ଦ ଶୁଣିବା ମାତ୍ରକେ ମୁହୂର୍ତ୍ତିକ ନିମିତ୍ତ ଭଗବାନଙ୍କୁ ମନେ ପକାଉ ବା ପ୍ରାର୍ଥନା କରୁ ବୋଲି ଆରତି ବା ଆଳତି ସୂଚନା ହୁଏ ।

ଯେଉଁ ହିନ୍ଦୁମାନେ ଦେଉଳ ବା ମନ୍ଦିର ପାଖରେ ଥାନ୍ତି ସେମାନେ ପ୍ରାୟ ସେଠାକୁ ଆସି ହରିଙ୍କ ଦର୍ଶନ କରନ୍ତି କିମ୍ବା ପ୍ରାର୍ଥନା କରନ୍ତି । ଆର-ତିରେ ଗୁଆ ଘିଅର ବତୀକାଠି ବ୍ୟବହାର କରାଯାଏ । ଏହାର ଧୂପକୁ ଦର୍ଶକମାନେ ଆଘ୍ରାଣ କରନ୍ତି । ଗୁଆଘିଅର ଗୁଣ ଅମୃତୋପମ । ଗୁଆଘିଅ ଧୂପ ବାୟୁ ବିଶୁଦ୍ଧ କରେ । ନାନା ପ୍ରକାର ଜର୍ମ ବା ଜୀବାଣୁ ମାରିପକାଏ । ମେଘ ବର୍ଷାରେ ସାହାଯ୍ୟ କରେ । (ବିଶେଷ ବିବରଣୀ ନିମିତ୍ତ ଗୋ-ମାତା ଅଧ୍ୟାୟ ଦେଖନ୍ତୁ) ହିନ୍ଦୁ ସେଥି ନିମିତ୍ତ ବିପଦ କିମ୍ବା ରୋଗରେ ପଡ଼ିଲେ ହରିଙ୍କଠାରେ ଘିଅ ଦୀପ ଜାଳିବା ମନାସ କରେ । ସଞ୍ଜବେଳେ ଘର ଗୃହ-ସ୍ଥିତେ ଗୁଆଘିଅର ସଞ୍ଜବତୀ ହୁଏ । ଦେଉଳକୁ ବା ମନ୍ଦିରକୁ ଅନେକ ଲୋକ ଆସନ୍ତି । ଗୁଆଘିଅର ଧୂପ ସମସ୍ତେ ଯେପରି ନେଇ ପାରିବେ ସେଥି ନିମିତ୍ତ ଓ ତାହାଦ୍ୱାରା ବାୟୁ ବିଶୁଦ୍ଧ ହୋଇ କୃଷି ସହାୟକ ହେବ ସେଥି ନିମିତ୍ତ ମଧ୍ୟ, ଆରତି ବା ଆଳତି ଏବଂ ହୋମ ଓ ଯଜ୍ଞ କରିବା ହିନ୍ଦୁର ଏକ ଅସାଧାରଣ ସର୍ଜନା ।

ଆରତି କାଠି ଦେବତାଙ୍କ ସମ୍ମୁଖରେ ଏପରି ଭାବରେ ବୁଲାଇ ବୁଲାଇ ଦିଆଯାଏ ଯେ ଏହାକୁ ଦେଖିବା ନିମିତ୍ତ ଆସିଥିବା ଦର୍ଶକମାନଙ୍କର ଆଖିର ପେଶି (Eye muscles) ତଳ, ଉପର, ଦୁଇପାଖ—ସୁନ୍ଦର ଭାବରେ ସଂଚାଳିତ ହୋଇ ଉପଯୋଗୀ ବ୍ୟାୟାମ ପାଏ ଓ ଆଖିକୁ ଭଲ ରଖେ । To Kill two birds with one stone ଅର୍ଥାତ୍ ଏକା ଟେକାକେ ଦୁଇଟା ଚଢ଼େଇ ମାରିବା ଇଂରେଜ ପ୍ରବଚନକୁ ଧରି କହିଲେ ଆରତି ସମ୍ବନ୍ଧରେ ଏହା କୁହାଯାଇ ପାରିବ ଯେ ହିନ୍ଦୁ ଏକା ଟେକାକେ ୨ଟାଠ ଖାଲି ନୁହେଁ ୫ାଟା ଚଢ଼େଇ ମାରିଦିଏ । ଅର୍ଥାତ୍ ଗୋଟାଏ କଥାରେ ୫ାଟା କାମ ହାସଲ କରିଦିଏ ।

ହିନ୍ଦୁ ପିଲାମାନଙ୍କୁ ହାତଯୋଡ଼ି ଅନୁରୋଧ କରୁଛି, ପ୍ରାର୍ଥନା କରୁଛି ଯେତେବେଳେ ସେମାନେ ଆରତି ଘଣ୍ଟା ଶୁଣିବେ ସେତେବେଳେ ଯେଉଁ-ଠାରେ ଯେଉଁ ଅବସ୍ଥାରେ ଥାଆନ୍ତୁ ପଛକେ ଭଗବାନଙ୍କ ନିକଟରେ ଟିକିଏ ମୁଣ୍ଡ ନୁଆଇଁ ଦେବେ । ଦୈହିକ ଭାବରେ ମୁଣ୍ଡ ନୁଆଁଇ ନ ପାରିଲେ ମନେ ମନେ ଏପରି କରିନେବେ । ମୁସଲମାନମାନେ ନିଷ୍ଠା ସହିତ ବାଟରେ ଘାଟରେ ସବୁଠାରେ ଏକ ସମୟରେ ତାଙ୍କର ନମାଜ କରନ୍ତି । ହିନ୍ଦୁର ଧର୍ମନିଷ୍ଠା ଦିନକୁ ଦିନ କମିଯାଉଛି ।



# ହିନ୍ଦୁର ଜାତିବିଭାଗ (୧)

ଅନ୍ୟ କୌଣସି ଧର୍ମର ଲୋକସମାଜରେ ଭିନ୍ନ ଭିନ୍ନ ଜାତି ନାହିଁ; ସମସ୍ତେ ସମାନ, କିନ୍ତୁ ହିନ୍ଦୁର ତାହା ନାହିଁ । ହିନ୍ଦୁ ସମାଜରେ କେତେ ଜାତି ଉପଜାତି ଅଛି । ଏକ ହିନ୍ଦୁ ଅନ୍ୟ ହିନ୍ଦୁକୁ ଛୁଇଁଦେଲେ ସେ ମାରା ହୋଇଯାଏ । ବିବାହ ମଧ୍ୟ ବିଭିନ୍ନ ଜାତି ମଧ୍ୟରେ ହୁଏନାହିଁ, ଏପରି କି ଗୋଷ୍ଠୀ ଭିନ୍ନ ହେଲେ, ଏକ ଜାତିରେ ମଧ୍ୟ ବିବାହ ହୁଏନାହିଁ । ଯେଉଁ ଧର୍ମରେ ଭେଦ ଭାବ ଭର୍ତ୍ତିହୋଇ ରହିଅଛି, ଯେଉଁ ଧର୍ମ ମନୁଷ୍ୟ ମନୁଷ୍ୟ ଭିତରେ ସବୁବେଳେ ଗୋଟାଏ ଫରକ ଦେଖୁଥାଏ, "ଯେ ଜନ୍ମରୁ ବଡ଼, ସେ ସବୁବେଳେ ବଡ଼; ଯେ ଜନ୍ମରୁ ଶ୍ରେଷ୍ଠ, ସେ ସବୁବେଳେ ଶ୍ରେଷ୍ଠ ଯେତେ ତାହାର ଗୁଣ ଥାଉ ପଛକେ," ଏପରି କଥା ଯେଉଁ ଧର୍ମ ପ୍ରଶ୍ରୟ ଦିଏ, ସେ କଅଣ ଧର୍ମ ? ଭଗବାନ ସମସ୍ତଙ୍କର ପିତା, ସମସ୍ତେ ସମାନ, ଅନ୍ୟ ସବୁଧର୍ମ ଏହା ସ୍ୱୀକାର କରେ, କେବଳ ହିନ୍ଦୁ ଏହା ସ୍ୱୀକାର କରେ ନାହିଁ । ଅହିନ୍ଦୁମାନେ ହିନ୍ଦୁକୁ ଏପରି ସମାଲୋଚନା କରିଥାନ୍ତି ।

ଏହାର ସନ୍ତୋଷଜନକ ଉତ୍ତର ଦେବା ପୂର୍ବରୁ ଆମ୍ଭମାନଙ୍କୁ ହିନ୍ଦୁର ଦୁଇଟି ବିଶେଷତ୍ୱ ବିଷୟ ବିଚାର କରିବାକୁ ହେବ, କାରଣ ଏହି ଦୁଇଟି ବିଶେଷ କଥାକୁ ମୂଳ କରି ହିନ୍ଦୁ ତାହାର ସମାଜ ଗଢ଼ିଅଛି । ପ୍ରଥମ ହେଉଛି ଜନ୍ମାନ୍ତର ବାଦ, ଦ୍ୱିତୀୟ, ମହାଯନ୍ତ୍ର ସ୍ଥାପନ ଅର୍ଥାତ୍ ବଡ଼ ବଡ଼ କାରଖାନା ପ୍ରଭୃତି ବସାଇବା ।

ହିନ୍ଦୁ ଧର୍ମ କେବଳ ବିଶ୍ୱାସ କରେ ଯେ ମନୁଷ୍ୟ ତାହାର ପାପ କ୍ଷୟ ହେବା ପର୍ଯ୍ୟନ୍ତ ବାରମ୍ବାର ଜନ୍ମ ଗ୍ରହଣ କରୁଥାଏ, ସମସ୍ତ ପାପ କ୍ଷୟ ହୋଇ ସାରିଲେ ସେ ମୁକ୍ତିପାଏ । ଅନ୍ୟ ପ୍ରଧାନ ୨ ଧର୍ମର ମତ ଅନୁସାରେ ମୃତ୍ୟୁପରେ ସ୍ୱର୍ଗ କିମ୍ବା ନରକ ଚିରସ୍ଥାୟୀ ବୋଲି ଜଣାପଡ଼େ । କର୍ମଫଳ-ବାଦ ସମସ୍ତ ଧର୍ମରେ ଅଛି, ପୁଣ୍ୟର ଫଳ ସ୍ୱର୍ଗ, ପାପର ଫଳ ନରକ ସମସ୍ତେ ସ୍ୱୀକାର କରନ୍ତି, କିନ୍ତୁ ହିନ୍ଦୁ ଏକା କହେ ଯେ ସ୍ୱର୍ଗ ନରକ ଭୋଗ ଚିରସ୍ଥାୟୀ ନୁହେଁ । ସ୍ୱର୍ଗ କିମ୍ବା ନରକ କିଛି ସମୟ ଭୋଗ ପରେ ମନୁଷ୍ୟର ନିଜ କର୍ମ ଅନୁସାରେ ତାକୁ ପୁଣି ଜନ୍ମ ନେବାକୁ ପଡ଼େ ।

ଦୁଇଟି ପିଲା ଦୁଇ ଭିନ୍ନ ଭିନ୍ନ ଘରେ ଜନ୍ମ ହେଲେ । ଜଣେ ଜନ୍ମରୁ ଅଭାବ କଣ ଜାଣିଲା ନାହିଁ, ଭଲ ଖାଇ ପିନ୍ଧି ଭଲ ଶିକ୍ଷା ପାଇ ସୁଖରେ ଜୀବନ କଟାଇନେଲା । ଅନ୍ୟ ଜନ୍ମରୁ ଭଲ ଖାଇପାରିଲା ନାହିଁ, ପିନ୍ଧି ପାରିଲା ନାହିଁ, ଭଲଘରେ ରହି ପାରିଲା ନାହିଁ, ଭଲ ଶିକ୍ଷା ପାଇ ପାରିଲା ନାହିଁ । ନାନା କଷ୍ଟ ସହି ସହି ମରିଗଲା । ଦୁହେଁ ତ ପିଲା, ଦୁହେଁ କୌଣସି ପାପ ପୁଣ୍ୟ ଜନ୍ମ ହେଲା ମାତ୍ରକେ କରି ନ ଥିଲେ ? ତେବେ ଦୁହିଁଙ୍କର ଜୀବନ ଏପରି ଭିନ୍ନ ଭିନ୍ନ ହେଲା କାହିଁକି ? ଭଗବାନ ଯଦି ସମସ୍ତଙ୍କର ପିତା, ସେ ଏପରି ପାତର ଅନ୍ତର କରି କେନ୍ତ ଦଅନ୍ତି କାହିଁକି ? ସେ କଅଣ ପକ୍ଷପାତ କରନ୍ତି ? ଏନିବେସାନ୍ତଙ୍କ ନାମ ପ୍ରାୟ ଅଧିକାଂଶ ଜାଣନ୍ତି । ସେ ଜଣେ ଅସାମାନ୍ୟ ପ୍ରତିଭାଶାଳିନୀ ବିଦୁଷୀ ମହିଳା ଥିଲେ । ତାଙ୍କର ଗୋଟିଏ ଝିଅଟିଏ ରୋଗରେ ପଡି ବଡ଼ ଯନ୍ତ୍ରଣା ପାଇ ମରିଗଲା । କୌଣସି ପ୍ରକାର ଚିକିତ୍ସା ତାକୁ ଭଲ କରି ପାରିଲା ନାହିଁ । ତାଙ୍କୁ ଏହା ବଡ଼ ବାଧିଲା । ପିଲାଟିଏ, ସେ କଅଣ ବା ପାପ କରିଛି ? ଦୁଃଖ କଷ୍ଟ ଯଦି ପାପର ଫଳ, ତେବେ, ସେ କଅଣ ପାପ କରିଥିଲା ଯେ ଏପରି କଷ୍ଟ ପାଇଲା ? ସେ ତାଙ୍କ ନିଜ ଧର୍ମର ବହି ପଢିଲେ, ଉତ୍ତର ପାଇଲେ ନାହିଁ । ପୃଥିବୀର ଅନ୍ୟ ଧର୍ମର ଗ୍ରନ୍ଥ ନେଇ ପଢ଼ିଲେ, ଉତ୍ତର ମିଳିଲା ନାହିଁ । ପରିଶେଷରେ ହିନ୍ଦୁ ଧର୍ମବିଷୟ ଆଲୋଚନା କରି ସନ୍ତୋଷଜନକ ଉତ୍ତର ପାଇଲେ, ବିଲାତ ଛାଡ଼ି ଭାରତକୁ ଆସିଲେ । ଭାରତ ସେବାରେ ଜୀବନ କଟାଇ ଦେଲେ । ସେ ଥରେ କଂଗ୍ରେସର ସଭାପତି ହୋଇଥିଲେ ।

ଏ ଜନ୍ମର ସୁଖ ଦୁଃଖ ଏଜନ୍ମ କାର୍ଯ୍ୟର ଫଳ ନୁହେଁ । ପୂର୍ବ ଜନ୍ମମାନଙ୍କର ସମବେତ କାର୍ଯ୍ୟର ଫଳ ପ୍ରାଣୀ ଇହ ଜନ୍ମରେ ଭୋଗକରେ, ସେ ଯେତିକ ସହିପାରିବ, ତାକୁ ସେତିକ ସେତିକ କରି ଦିଆଯାଏ । ଇହ ଜନ୍ମରେ ସତ୍‌କର୍ମ କରି କଷ୍ଟ ପାଇବା, ଅସତ୍‌କର୍ମ କରି ବରଂ ସବୁବେଳେ ସୁଖ ପାଇବାର ଉଦାହରଣ ଆମେ ପ୍ରାୟ ସବୁବେଳେ ଦେଖୁଅଛୁଁ । ତେବେ "ପୁଣ୍ୟରୁ ସୁଖ ଓ ପାପରୁ ଦୁଃଖ" ଏ କଥାର ସତ୍ୟ—ଯାହାକୁ ସବୁ ଧର୍ମ ମାନ ନେଇଛନ୍ତି, କେଉଁଠି ରହିଲା ? ଜନ୍ମାନ୍ତରବାଦ କେବଳ ଏହାର ସନ୍ତୋଷଜନକ ଉତ୍ତର ଦେଇ ପାରିଛି । ଏ ଜନ୍ମର ସୁଖ ଦୁଃଖ

ପୂର୍ବ ଜନ୍ମର କାର୍ଯ୍ୟର ଫଳ । ଆମ ଓଡ଼ଶାରେ ଅଶିକ୍ଷିତ ଲୋକେ ସୁଦ୍ଧା ଭାଗବତର ଚାର ସୁନ୍ଦର ପଦ ଗୁଡ଼କ ବୋଲ ଏହାର ସମାଧାନ କରଥାନ୍ତି ।

"ପୂର୍ବେ ଅର୍ଜିଛୁ ଫଳ ଯେତେ, ଯାଚ ମୁଁ ଦେଉଥାଇ ତୋତେ" × × × × × "କର୍ମ ତୋହର ନଜଗୁରୁ, ଉଦ୍ଧବ କେତେତେଁ ପଚାରୁ ?" × × × "କେ ତାତ, କର୍ମପଦେ ସେବ, କର୍ମୁହିଁ ନାହିଁ ଅନ୍ୟ ଦେବ" ।

ତେଣୁ ହିନ୍ଦୁର ବଶ୍ୱାସ ଏ ଜନ୍ମର ସୁଖ, ଦୁଃଖ, ବଡ଼ ହେବା, ସାନ ହେବା, ସମାଜରେ ସମ୍ଭ୍ରାନ୍ତ ସ୍ଥାନ ପାଇବା ନ ପାଇବା, ପଣ୍ଡିତ ହେବା, ମୂର୍ଖ ହେବା, ଉଚ୍ଚ ନୀଚ କୁଳରେ ଜନ୍ମ ହେବା ଆଦ ଯାବତୀୟ ଅବସ୍ଥା ମନୁଷ୍ୟର ପୂର୍ବଜନ୍ମ ଅର୍ଜିତ ଫଳ ଅଟେ । ଯେ ଯେମିତ ବୁଣେ, ସେ ସେମିତ ପାଏ । ଧାନ ବୁଣିଲେ ଧାନ, ବାଜୁଙ୍ଗା ବୁଣିଲେ ବାଜୁଙ୍ଗା ମିଳେ ।

"The Books say well, my brothers ! Each man's life
The outcome of his former living is;
The bygone wrongs bring forth sorrows and woe
The bygone right breeds bliss

Edwin Arnold—The Light of Asia

ପୂର୍ବ ଜନ୍ମ କଥା ଯେଉଁମାନେ ସ୍ମରଣ କର ପାରନ୍ତି ସେମାନଙ୍କୁ ଜାତିସ୍ମର କୁହାଯାଏ । ଏପରି ଜାତିସ୍ମର ଲୋକ ଏବେ ଠାଏ ଠାଏ ଜନ୍ମ ହୋଇ ହିନ୍ଦୁ ବଶ୍ୱାସର ସତ୍ୟତା ପ୍ରମାଣ କରୁଅଛନ୍ତି । ୧୯୩୩ ଖ୍ରୀଷ୍ଟାବ୍ଦରେ ହଙ୍ଗେର ଦେଶରେ ଗୋଟିଏ ବାଳକା ମରଗଲା, କନ୍ତୁ କଛି ସମୟ ପରେ ସେ ଜାଇଁ ଉଠିଲା । କନ୍ତୁ ନଜର ବାପ ମାଙ୍କୁ ଚହ୍ନି ପାରଲା ନାହିଁ କ ନଜର ମାତୃଭାଷାରେ କଥା କହ ପାରଲା ନାହିଁ । ସ୍ପେନ ଦେଶର ଭାଷାରେ କଥା କହ, ସ୍ପେନର ରାଜଧାନୀ ମାଡ୍ରିଡରେ ସେ ଦନେ ଥିଲା ବୋଲ କହଲା । ଦଲ୍ଲୀରେ ଗୋଟିଏ ବାଳକା କହଲା ମଥୁରାରେ ତାହାର ପୂର୍ବ ଜନ୍ମର ସ୍ୱାମୀ ଅଛନ୍ତି, ସେ ତାଙ୍କର ନାମ ଓ ଠିକଣା ଦେଲା । ସେ ସ୍ୱାମୀ

ସେଠାକୁ ଆସିବାରୁ ବାଳକଟି ତାଙ୍କୁ ଚିହ୍ନି ପାରିଲା ଏବଂ ଏପରି କେତେ କଥା କହିଲା ଯାହା ସେହି ସ୍ୱାମୀଛଡ଼ା ଆଉ କେହି ଜାଣି ନଥିଲେ । ଫରିଦ-ପୁର ଜିଲ୍ଲାର ମହାରିପୁର ନାମକ ସ୍ଥାନରେ ୩ ବର୍ଷ ବୟସ୍କ ଗୋଟିଏ ବାଳକ ହଠାତ୍ କାନ୍ଦ କାନ୍ଦ ଜିଦ୍ ଧରିଲା ଗୃହ ଗାଁ ଯିବାକୁ । ସେ କହିଲା ସ୍ୱୃହ ଗାଁରେ ତାର ଘର, ସେଠାରେ ସେ ୩ଟି ପୁଅ ଓ ୨ଟି କନ୍ୟା ଛାଡ଼ି ଆସିଛି । ସେ ସେଠାର ଅବିକଳ ବର୍ଣ୍ଣନା ଦେଲା, ସେଠାକୁ ତାକୁ ନିଆ-ଗଲା । ସବୁ ଠିକ ମିଳିଲା ।

"ମହାଯନ୍ତ୍ର ପ୍ରବର୍ତ୍ତନ" ଅର୍ଥାତ୍ ବର୍ତ୍ତମାନ ଯୁଗର ବଡ ବଡ କଳ ବସାଇ ନାନା ପ୍ରକାର ଜିନିଷ ତିଆରି କରିବାକୁ ମନୁ ପାପ ବୋଲି ନିର୍ଦ୍ଦେଶ କରିଅଛନ୍ତି । ଏହା ପାପ କାହିଁକି ବିଚାର କରିବା ପୂର୍ବରୁ ପ୍ରଶ୍ନ ହୋଇପାରେ ମନୁ ଯେତେବେଳେ ଏ କଥା ଲେଖିଲେ ସେତେବେଳେ ମନୁଷ୍ୟ ବୁଦ୍ଧି କଅଣ ଏପରି ଉନ୍ନତ ଅବସ୍ଥାକୁ ଆସିଥିଲା ଯେ ସେ ଏ କାଳର ରେଲ, ଏରୋପ୍ଲେନ, ବୁଡ଼ାଜାହାଜ, ଟେଲିଗ୍ରାଫ, ଆଟମ୍ ବମ୍ ଆଦି ବାହାର କରି ପାରିଥାନ୍ତା ?

ହିନ୍ଦୁର ଋଷି ଶାସ୍ତ୍ରକାରମାନେ ବଣ ଜଙ୍ଗଲରେ ରହୁଥିଲେ, ସେ ଖାଲି ଭବ ଭବ କେତେଗୁଡ଼ିଏ ଉପଦେଶମୂଳକ ମାଣ୍ଡ ଗଢ଼ିଦେଇ ଯାଇ-ଅଛନ୍ତି । ଏ କାଳର ବିଜ୍ଞାନର ଅଗ୍ରଗତି ସମ୍ବନ୍ଧରେ ସେମାନଙ୍କର ଧାରଣା କେବେହେଁ ନ ଥିବ । ହିନ୍ଦୁ ସେମାନଙ୍କୁ କହେ ତ୍ରିକାଳଜ୍ଞ । ଏପରି କହିବା କେବଳ ଧର୍ମାନ୍ଧତା, ତାହା ନ ହେଲେ ଭବ ଉନ୍ମାଦନା ବା ଉଚ୍ଛ୍ୱାସ ! ! !

ହଁ; ଏପରି ପ୍ରଶ୍ନ ଠିକ୍ । ହିନ୍ଦୁ ଋଷି, ଶାସ୍ତ୍ରକାରମାନେ ବଣ ଜଙ୍ଗଲରେ ରହୁଥିଲେ; ବଣ ଜଙ୍ଗଲରେ ରହି ନ ଥିଲେ ସେମାନେ ସମ୍ଭବତଃ ତ୍ରିକାଳଜ୍ଞ ହୋଇ ପାରି ନ ଥାନ୍ତେ । ହିନ୍ଦୁ ସଭ୍ୟତାର ବିଶେଷତ୍ୱ ଏହି ଯେ ପୃଥିବୀର ଅନ୍ୟାନ୍ୟ ସଭ୍ୟତା ବଢ଼ିଛି ନଗରରେ, ମନୁଷ୍ୟ ହାତ ଗଢ଼ା (man made) ନଗରରେ, ହିନ୍ଦୁ ସଭ୍ୟତା ବଢ଼ିଛି ମନୁଷ୍ୟର ଆଦି ବାସସ୍ଥଳୀ ବଣଜଙ୍ଗଲରେ, ପ୍ରକୃତିର ପ୍ରେମମୟ, ଲୀଳାମୟ କୋଳରେ । ବିଂଶ ଶତାବ୍ଦୀର ଯନ୍ତ୍ର ପ୍ରଧାନ ସଭ୍ୟତା ସେ ଜାଣିଥିଲା, ତାକୁ ଭୋଗିଥିଲା; ଦେଖି ଶିଖି ଅନେକ ନିର୍ବେଳ ତାକୁ ଫୋପାଡ଼ି ଦେଲା । ତେଣୁ କହିଲା ମହାଯନ୍ତ୍ର ପ୍ରବର୍ତ୍ତନ ପାପ । କିପରି ?

ରାମାୟଣ ମହାଭାରତର ଯୁଦ୍ଧ ବର୍ଣ୍ଣନା ଦେଖାଯାଉ । ରାବଣର ରାଜପ୍ରାସାଦ ଓ ଜୀବନ ଧାରଣର ବର୍ଣ୍ଣନାରୁ ଦେଖାଯାଏ ଯେ ସେ ଏକାଳର ଇଲେକ୍‌ଟ୍ରିସିଟି (ବିଦ୍ୟୁତ)ର ବ୍ୟବହାର ଜାଣିଥିଲା ଏବଂ ସେ ଶକ୍ତିରୁ ଉତ୍ପନ୍ନ ସମସ୍ତ ସୁବିଧା ଭୋଗ କରୁଥିଲା । ଅଗ୍ନି ବାୟୁ ଆଦି ଦେବତାମାନେ ତାହାର ଚାକର ହୋଇ ଖଟୁଥିଲେ ଅର୍ଥାତ୍ ଅଗ୍ନି, ବାୟୁ, ବୃଷ୍ଟି (ଇନ୍ଦ୍ର)ରୁ ଯେଉଁ ଶକ୍ତି ଉତ୍ପନ୍ନ ହୁଏ ରାବଣ ତାହା ଜାଣି ସେ ଶକ୍ତିକୁ ତାହାର କାର୍ଯ୍ୟରେ ଲଗାଉଥିଲା । ଆମେ ବର୍ତ୍ତମାନ କହି ପାରିବା ସ୍ୱର୍ଗର ଅପ୍‌ସରା ସୌଦାମିନୀ ଏତେ ଚଞ୍ଚଳା ଯେ ତାକୁ ଲୋକେ ଧରି ନ ପାରି ଚପଳା ନାମ ଦେଲେ, ସେ ଏବେ ଆମର ବଶ ହୋଇ ଆମଘରେ ରହିଲଣି । ସେ ଆଉ ପୂର୍ବପରି ଚପଳା ନୁହେଁ, ସ୍ଥିରା । ସ୍ଥିରସୌଦାମିନୀ ଆମ ଘରେ ରହି ଆମ ଘର ମଣ୍ଡି ଦେଉଛି, ଆମର ସମସ୍ତ କାମ, ରନ୍ଧାବଢ଼ା, ଲୁଗା କରୁ ଆଦି ସବୁ କରୁଛି । ଇଲେକ୍‌ଟ୍ରିସିଟି ବା ବିଦ୍ୟୁତର ବିଭିନ୍ନ ବ୍ୟବହାରକୁ ଉପ-ଯୋଗୀ ଭାଷାରେ କହିଲେ କଥାଟା ମିଛ କହୁନାହିଁ ଅଥଚ ମନୋରଞ୍ଜନ କରୁଛି । ଲଙ୍କାପୁରର ବିଭିନ୍ନ ବର୍ଣ୍ଣନା ଠିକ୍ ସେପରି ହୋଇଛି । ପଚାଶ ବର୍ଷ ତଳେ ପୁଷ୍ପକ ରଥକୁ ଲୋକେ କବିକଳ୍ପନା ବୋଲି ଭାବୁଥିଲେ । ଏ ଯୁଗର ଏରୋପ୍ଲେନ ଦେଖି ଲୋକେ କହିଲେଣି ରାବଣର ଏପରି ଉଡ଼ାରଥ ଥିବ, କିନ୍ତୁ ପୁଷ୍ପକ ରଥ ରାବଣର ଏରୋପ୍ଲେନଠାରୁ ଆହୁରି ଅଧିକ ଶକ୍ତି-ଶାଳୀ ଥିଲା । ତାହା ମାଲିକର ମନ ଅନୁସାରେ ଚଳୁଥିଲା । କିଏ ଜାଣେ ଆଉ କୋଡ଼ିଏ ବର୍ଷ ପରେ ଠିକ୍ ସେପରି ଏରୋପ୍ଲେନ ନ ବାହାରିବ ? ଏବେ ତ ଯନ୍ତ୍ର ବାହାରିଲାଣି ଯାହାଦ୍ୱାରା ଅଙ୍କ କଷା ହେଉଛି, ମିଶାଣ, ଫେଡ଼ାଣ, ହରଣ, ଗୁଣନ ଅନାୟାସରେ ହୋଇଯାଉଛି । ଏପରିକି ଯନ୍ତ୍ରଦ୍ୱାରା ଏକ ଭାଷାରୁ ଅନ୍ୟ ଭାଷାର ଅନୁବାଦ ବାହାରି ଯାଉଛି । ଇନ୍ଦ୍ରଜିତ ଆକାଶରେ ରହି ଯୁଦ୍ଧ କରୁଥିଲା । ସମସ୍ତ କଥା ଲେଖିବାକୁ ଏଠାରେ ସ୍ଥାନ ନାହିଁ । କେବଳ ପୁଷ୍ପକ ରଥ କଥା ବିଚାର କଲେ ଜଣାଯାଏ ଯେ ରାବଣ ଯାନ୍ତ୍ରିକ ସଭ୍ୟତାରେ ବହୁଦୂର ଅଗ୍ରସର ହୋଇ ଯନ୍ତ୍ର ବଳରେ ଅତ୍ୟାଗ୍ରସ୍ତ ହୋଇ ଉଠିଥିଲା । ରାମଚନ୍ଦ୍ର ତାହାର ସେହି ଯାନ୍ତ୍ରିକ ପରାକ୍ରମ ଭାଙ୍ଗି ଦେଇଥିଲେ । ପୁଷ୍ପକ ରଥକୁ ସାଙ୍ଗରେ ଆଣିଥିଲେ । କୁମାରିକାଠାରୁ ଲଙ୍କା ପର୍ଯ୍ୟନ୍ତ ଭୂଖଣ୍ଡର ରାଜା ହୋଇଥିଲେ । ରାଜ୍ୟ କରିବା ସକାଶେ ପୁଷ୍ପକ

ରଥକୁ ପାଖରେ ରଖିଥାନ୍ତେ । ତାପରେ ଆଉ କେତୋଟି କରିପାରିଥାନ୍ତେ । କିନ୍ତୁ ସେ ପୁଷ୍ପକକୁ ପାଖରେ ନ ରଖି ରାବଣର ବଡ଼ଭାଇ କୁବେରଙ୍କ ପାଖକୁ ଫେରାଇ ଦେଇଥିଲେ ।

ଯାନ୍ତ୍ରିକ ସଭ୍ୟତାକୁ ମୂଳପୋଛ କରିଦେବା ସହଜ ନୁହେଁ । ଅସାଧାରଣ କିମ୍ବା ଅଲୌକିକ-ଶକ୍ତି-ସମ୍ପନ୍ନ ଲୋକ ନହେଲେ ଏହା କରି ପାରିବ ନାହିଁ । ରାମଚନ୍ଦ୍ର ବହୁ କଷ୍ଟ ସହି ଏହା କରିପାରିଥିଲେ ! କରିସାରି ଏପରି ରାଜ୍ୟ ପାଳନ କଲେ ଯେ ଲୋକେ ଦୁଃଖ କଷ୍ଟ କଅଣ ଜାଣିପାରିଲେ ନାହିଁ । ରୋଗହୀନ ରାଜ୍ୟରେ ଅଭାବହୀନ ପ୍ରଜାଙ୍କର ସେ ହେଲେ ଭୋଗହୀନ ରାଜା । ଆମେ ସେଥିପାଇଁ ତାଙ୍କୁ ଝୁରି ହେଉଛେଁ । ରାମରାଜ୍ୟକୁ ସ୍ୱପ୍ନ ଦେଖୁଛେଁ । ସେ ସାଧାରଣ ମନୁଷ୍ୟ ନ ଥିଲେ, ତେଣୁ ଆମେ ତାଙ୍କୁ କହୁଁ ଅବତାର ।

ସେ ଚାଲିଗଲେ, ତାଙ୍କ ଆଦର୍ଶ କାଳକ୍ରମେ ଲୋକେ ଭୁଲିଗଲେ । ସମାଜ କ୍ରମେ ସରଳତା ଭୁଲିଗଲା । ସମାଜ ଜଟିଳ ହେଲା । ଲୋକେ ବିଳାସୀ ହେଲେ । ପୁଣି ଯନ୍ତ୍ରର ଆବିଷ୍କାର ହେଲା । ଯାହା ହାତରେ ଯନ୍ତ୍ର ରହିଲା ସେ ଶକ୍ତିଶାଳୀ ହେଲା । ଦୁର୍ବଳକୁ ଦବେଇ ରଖିଲା । ଯାନ୍ତ୍ରିକ ଉନ୍ନତି ବଢ଼ି ବଢ଼ି ଏପରି ଅବସ୍ଥାରେ ପହଞ୍ଚିଲା ଯେ ଶାନ୍ତିକାମୀ ସାଧାରଣ ଲୋକେ ତ୍ରାହି ତ୍ରାହି ରବ ଦେଲେ । ଆମେରିକା ଆଟମ୍‌ବମ୍ ବାହାର କଲା ବେଳକୁ ରୁଷ କସ୍‌ମିକ୍ Cosmic Rays) ବମ ବାହାର କରିବାରେ ଯେପରି ଯତ୍ନ କରୁଛି, ସେପରି କର୍ଣ୍ଣ ଦୁର୍ଯ୍ୟୋଧନ ସମ୍ମୋହନବାଣ (ସମ୍ଭବତଃ ଏଯୁଗର ବିଷାକ୍ତ ବାଷ୍ପ ପରି) ତିଆରି କଲାବେଳକୁ ଅର୍ଜୁନ ବାହାର କଲେ ପାଶୁପତ ଅସ୍ତ୍ର । ମହାଭାରତ ଯୁଦ୍ଧରେ ଯେଉଁ ଅସ୍ତ୍ର ସବୁ ବ୍ୟବହାର କରାଯାଇଥିଲା, ଦ୍ରୋଣ, ଅଶ୍ୱତ୍ଥାମା, ଅର୍ଜୁନଙ୍କର ଯୁଦ୍ଧ କୌଶଳ ଯେପରି ଭୟଙ୍କର ହୋଇଥିଲା, ତାହା ଏ ଯୁଗର ବମ, ଡାଇନାମାଇଟ, ବିଷାକ୍ତ ବାଷ୍ପଠାରୁ କୌଣସି ପ୍ରକାରେ କମ ମାରାତ୍ମକ ବୋଲି ଅନୁମିତ ହେଉ ନାହିଁ । ଠିକ୍ ଏପରି ସମୟରେ ଅସାଧାରଣ ପ୍ରତିଭାଶାଳୀ ଜଣେ ଲୋକ ଜନ୍ମ ହୋଇଥିଲେ । ହାଣ କଟା ଯାହାଙ୍କର ବ୍ୟବସାୟ ସେହି କ୍ଷତ୍ରିୟ ଘରେ ସେ ଜନ୍ମ ହୋଇ ତାଙ୍କୁ ଛାଡ଼ ଗଉଡ଼ ଘରେ ଆସି ଗୋରୁ ଚରଉଥିଲେ । ଶ୍ରୀକୃଷ୍ଣ ସେକାଳର ଯାନ୍ତ୍ରିକ ସଭ୍ୟତାକୁ ନିଜେ ମୁଖ୍ୟ ଭାବରେ ଲୋପ କରି-

ନଥିଲେ । ସେ ଦେଖିଲେ ଦୁଇଟି ପରାକ୍ରମଶାଳୀ ବଂଶ ସମସ୍ତ ମାରଣାସ୍ତ୍ର ହାତରେ ରଖିଛନ୍ତି । ଏହି ଦୁଇ ବଂଶ ମଧ୍ୟରେ ଯେ ଅଧିକତର ଧାର୍ମିକ ଓ ଉଦାର-ସ୍ୱଭାବ-ସମ୍ପନ୍ନ ସେ ତାହାର ପକ୍ଷ ନେଲେ । ଉଭୟ ପକ୍ଷ ମଧ୍ୟରେ ଯୁଦ୍ଧ ଅବଶ୍ୟମ୍ଭାବୀ । ତାହାହିଁ ହେଲା । ପାଣ୍ଡବମାନେ ତାଙ୍କର ସମସ୍ତ ଧର୍ମପରାୟଣତା ସତ୍ତ୍ୱେ ଯୁଦ୍ଧ ଜାଣି ପାରୁନଥାନ୍ତେ । କେବଳ ଶ୍ରୀକୃଷ୍ଣଙ୍କର ବୁଦ୍ଧିବଳରେ ସେମାନେ ମରୁ ମରୁ ବଞ୍ଚିଗଲେ, ତେଣୁ ତାଙ୍କଠାରେ ଚିର କୃତଜ୍ଞ ହୋଇ ରହିଲେ ।

କୁରୁଙ୍କ ପତନ ସହିତ ମାରଣାସ୍ତ୍ରରୁ ଅଧେ ନଷ୍ଟ ହୋଇଥିଲା । ବିଜୟୀ ପାଣ୍ଡବମାନଙ୍କ ହାତରେ ବଡ଼ ବଡ଼ ଅସ୍ତ୍ର ରହିଗଲା । ଅସ୍ତ୍ର ଓ ହିଂସାର ଅପକାରିତା ସେ ତାଙ୍କୁ ବୁଝାଇଦେଲେ । ସେମାନେ ସେ ମାରଣାସ୍ତ୍ର ସମୁଦ୍ରରେ ବୁଡ଼ାଇ ଦେଲେ । ସେ ଯେଉଁ ଯଦୁବଂଶରେ ଜନ୍ମ ହୋଇଥିଲେ ସେହି ବଂଶର ଲୋକମାନେ ମଧ୍ୟ କ୍ଷତ୍ରିୟର ଉଗ୍ରସ୍ୱଭାବ ଛାଡ଼ିନଥିଲେ । ସେ କୌଶଳ କ୍ରମେ ସେମାନଙ୍କୁ ଆପଣା ଆପଣା ମଧ୍ୟରେ ମାଡ଼ଗୋଳ କରାଇ ମରାଇ ଦେଲେ । ସେ କାଳର ଯାନ୍ତ୍ରିକ ସଭ୍ୟତା ଓ ତତ୍ ପୋଷକ ମାରଣାସ୍ତ୍ର ଏହିପରି ଲୋପ ପାଇଲା । ସେ ନିଜେ ହେଲେ ଗୋପାଳ, ତାଙ୍କ ବଡ଼ ଭାଇ ଧରିଲେ ହଳ । କୃଷି ଓ ତତ୍ ପୋଷକ ଗୋପାଳନ ମନୁଷ୍ୟ ସମାଜର ଆଦର୍ଶ ହେଉ ବୋଲି ସେ ନିଜ ଜୀବନରେ ତାହା କରି ଆଦର୍ଶ ଦେଖାଇ ଦେଇଗଲେ । ଯୁଧିଷ୍ଠିରଙ୍କର ରାଜ୍ୟ ପାଳନ ରାମରାଜ୍ୟର ଅନୁରୂପ ହୋଇଥିଲା । ଯେଉଁ ଅସାଧାରଣ କୃତିତ୍ୱ ନିମିତ୍ତ ଆମେ ରାମଚନ୍ଦ୍ରଙ୍କୁ ଅବତାର କହୁଁ, ତାହାର ପରି ବରଂ ତାହାଠାରୁ ଅଧିକତର କୃତିତ୍ୱ ନିମିତ୍ତ, ଶ୍ରୀକୃଷ୍ଣଙ୍କୁ ମଧ୍ୟ ଅବତାର କହୁଛୁଁ, କାରଣ ମହାଭାରତ ସମୟରେ ସମସ୍ୟା ଆହୁରି ଅଧିକ ଜଟିଳ ହୋଇଯାଇଥିଲା ।

ଯନ୍ତ୍ର ଯେତେବେଳେ ନୂଆ ହୋଇ ବାହାରିଲା, ଲୋକେ ଭାବିଲେ ଏହା ମନୁଷ୍ୟର ଖାଲବୁହା ପରିଶ୍ରମ ଲାଘବ କରିଦେବ । ତାହା କଅଣ ହେଲା ? ଫଳହେଲା ଅଳ୍ପ କେତେଜଣ ବୁଦ୍ଧିମାନ ଲୋକ ହେଲେ ଲକ୍ଷପତି, କୋଟିପତି, ଆଉ ହଜାର ହଜାର ଲୋକ ତାଙ୍କ ଅଧୀନରେ କାମ କରି ପଶୁଠାରୁ ଆହୁରି ହୀନ ଜୀବନ ଯାପନ କରିବାକୁ ବାଧ୍ୟ ହେଲେ ।

ଆମ ଓଡ଼ିଶାରେ ସେପରି ବଡ଼ ନଗର ଏପର୍ଯ୍ୟନ୍ତ ବସିନାହିଁ । ଯେଉଁଠାରେ ବସିଛି ସେଠାରେ କଅଣ ହେଉଛି ? ଗୋଟିଏ ଗୋଟିଏ କାରଖାନାରେ ହଜାର ହଜାର ଲୋକ କାମ କରନ୍ତି । ସ୍ତ୍ରୀମାନେ ମଧ୍ୟ । ମଜୁରିଆମାନେ କାରଖାନା ପାଖରେ ପିଲା କୁଟୁମ୍ବ ନେଇ ରହିବାକୁ ଘର ପାଆନ୍ତି । ଯେଉଁଘର ଦିଆଯାଏ; ତାହା ଏତେ ଛୋଟ ଯେ ପରିବାର— ବାପ ମା ଓ ଦୁଇ ତିନଟି ପିଲାଙ୍କ ପାଇଁ ଏହା ନିତାନ୍ତ କମ । ସେଥିରେ ପୁଣି ହଜାର ହଜାର ଲୋକ ଏକାଠି ରହନ୍ତି । ସେହି ଶୋଚନୀୟ ଅବସ୍ଥା ବର୍ଣ୍ଣନା କରିବାକୁ ଆମ୍ଭମାନଙ୍କର ଶକ୍ତି ନାହିଁ । ନିଉୟର୍କ ସୁପ୍ରିମ କୋର୍ଟର ଜଜ ହାୱାର୍ଡ ସାହେବ (Justice Wesly Howard of Supreme Court, NewYork ) Is Civilisation Worth Having ? ନାମକ ଏକ ପ୍ରବନ୍ଧ ଲେଖିଥିଲେ । ତାହାର କିୟଦଂଶର ଓଡ଼ିଆ ଅନୁବାଦ ଏଠାରେ ଦିଆଗଲା । "ଆଧୁନିକ ନଗରମାନଙ୍କରେ ମନୁଷ୍ୟ ବଡ଼ ବଡ଼ ପାର୍କ ବା ଉଦ୍ୟାନ ନିର୍ମାଣ କରେ । ବଡ଼ଲୋକମାନଙ୍କର ସ୍ମାରକ ସ୍ୱରୂପ ପ୍ରସ୍ତର ମୂର୍ତ୍ତି ସ୍ଥାପନ କରେ । ଚିତ୍ତ ବିନୋଦନ ନିମିତ୍ତ ପଶୁଶାଳା ବସାଏ । ରୋଗୀଙ୍କୁ ସାହାଯ୍ୟ କରିବାକୁ ଡାକ୍ତରଖାନା ତିଆରି କରେ । ଏହାହେଲା ଏକ ପାଖର ଚିତ୍ର, ଅନ୍ୟ ଦିଗରେ କଅଣ ହେଉଛି ? ଏପରି ବଡ଼ ବଡ଼ ପ୍ରତିଷ୍ଠାନ ପୂର୍ଣ୍ଣ ନଗରର ଅପର ପାର୍ଶ୍ୱରେ ଦେଖାଯାଏ ଛୋଟ, ସନ୍ତସନ୍ତିଆ ଅନ୍ଧାରିଆ ଅସ୍ୱାସ୍ଥ୍ୟକର କୁଡ଼ିଆଘର ଓ ପାଗଳା ଗାରଦ । ଏହି ଛୋଟ ଅପରିଷ୍କାର ଘରେ ଶିଶୁ ଜନ୍ମ ହୁଏ । ସେ ଜୀବନରେ ଦିନେ ନୀଳ ଆକାଶ ଦେଖିପାରେ ନାହିଁ କି ନିର୍ମଳବାୟୁ ସେବନ କରି ପାରେ ନାହିଁ । ମା ମାନଙ୍କର ଅକାଳ ମୃତ୍ୟୁ ହୁଏ । ଆହା, ଏହି ମାମାନଙ୍କର ପାଦ ଶ୍ୟାମଳ ଘାସ ଭୂମି ଦିନେ ଛୁଇଁ ନାହିଁ କି ବଣ ଜଙ୍ଗଲର ନିସ୍ତବ୍ଧତା କଅଣ ଏମାନେ ଜାଣି ନାହାନ୍ତି । ଏହା ହେଉଛି ଆମର ସଭ୍ୟତା" :

'କେତେ ଜଣ ମନୁଷ୍ୟ ଏଣେ ଉନ୍ନତି ଦିଗରେ ଚାଲିଛନ୍ତି, ସେହି ଉନ୍ନତିର ପଛେ ପଛେ ଏକ ଅବନତି ଜଗତ ସୃଷ୍ଟି ହୋଇଅଛି । ଏଠାରେ ଛୋଟ ପିଲାମାନଙ୍କୁ ଚୋରି କରିବା ଶିକ୍ଷା ଦିଆଯାଏ, ବାଳିକାମାନେ ଶିକ୍ଷା ପାନ୍ତି ସେଠାରେ ବୁଲିବା ନିମିତ୍ତ ଯେଉଁଠାରେ ରହିଅଛନ୍ତି ଚୋର, ବଦମାସ ଗଣ୍ଠିକଟା ଲୋକ ଓ ବେଶ୍ୟା । ଏହି ଚୋର ଡକାଏତମାନେ ରାତ୍ରଯାକ

ବୁଲୁଥାନ୍ତି, ସୂର୍ଯ୍ୟ ଉଦୟ ପୂର୍ବରୁ ପ୍ରେତ ସ୍ୱରୂପ ଅଦୃଶ୍ୟ ହୋଇଯାନ୍ତି । ଆହା ଅଭାବ ନିମିତ୍ତ ଏମାନେ ଲୁଗା ଖଣ୍ଡିକ ବଦଳି ପାରନ୍ତିନାହିଁ । ପୋକ, ଛାର-ପୋକ ପୂର୍ଣ୍ଣ ଖଣ୍ଡିଆ ଅଖା ଉପରେ ମଇଳା ଦୁର୍ଗନ୍ଧ ପୂର୍ଣ୍ଣ ସ୍ଥାନରେ ଏମାନେ ଶୋଇ ପଡ଼ନ୍ତି ।" "ଏହାର ନାମ ସଭ୍ୟତା ।"

"ଏହି ହତଭାଗ୍ୟମାନଙ୍କ ରାଜ୍ୟରେ ଶିଶୁମାନଙ୍କୁ ଚାଣି ଚପି ମାରି-ଦିଆଯାଏ । ବୃଦ୍ଧ ଲୋକଙ୍କୁ କେହି ସେବା କରିବାକୁ ନଥାଏ । ରୋଗୀକୁ କେହି ଶୁଶ୍ରୂଷା କରେ ନାହିଁ । ଦୁର୍ବଳ ଉପରେ ଅତ୍ୟାଗ୍ଭର ହୁଏ । କେହି ପାଗଳ ହେଲେ ତାକୁ ନାନା ପ୍ରକାର ଯନ୍ତ୍ରଣା ଦିଆଯାଏ । ଯୁବକମାନେ ଚରିତ୍ରଭ୍ରଷ୍ଟ ହୁଅନ୍ତି । ସ୍ତ୍ରୀଲୋକମାନେ ଏହି ପରିଶ୍ରମ ଘରର ଏକ କଣରେ ପ୍ରସବ କରିବା ସମୟରେ ଅନ୍ୟ କଣରେ ଠକମାନେ ବସି ଜୁଆ ଖେଳନ୍ତି ଓ ନାନା ଅସଭ୍ୟ କଥାରେ ଗାଳି ଦିଆ ଦେଇ ହୁଅନ୍ତି । ମୁମୂର୍ଷୁ ଲୋକ ଧକେଇ ଧକେଇ ମଲାବେଳେ ସ୍ତ୍ରୀଲୋକମାନେ ମଦ ଖାଇ ପାଟିଗୁଣ୍ଡ କରନ୍ତି । ପିଲାଟି ମାନେ ଖନଖନିଆ କଥା କହି ସେଠାରେ ଖେଳୁଥାନ୍ତି ।" ଷ୍ଟେଟ୍ସମ୍ୟାନ ୨୮।୧୧।୧୯୨୮ ।

ଯେଉଁଠାରେ ବଡ଼ ବଡ଼ କାରଖାନା ଅଛି ସେଠାରେ ଊଣା ଅଧିକେ ହଜାର ହଜାର ମଜୁରିଆର ଜୀବନ ଧାରଣା ପ୍ରଣାଳୀ ଏହି ପ୍ରକାର, ଏହା ହେଲା ସେ ସ୍ଥାନର ଚିତ୍ର । ବର୍ତ୍ତମାନ ଦେଖାଯାଉ କଳ କାରଖାନା ପରୋକ୍ଷ ଭାବରେ କି କ୍ଷତି କରୁଛି । କଳ କାରଖାନାଦ୍ୱାରା ଉତ୍ପନ୍ନ ଦ୍ରବ୍ୟର ପରିମାଣ ବହୁତ ବଢ଼ିଯାଏ, ତାକୁ କଣିବାକୁ ବଜାର ଦରକାର, ବଜାର ପାଇବା ନିମିତ୍ତ ସାମ୍ରାଜ୍ୟ ଦରକାର, ସାମ୍ରାଜ୍ୟ ରଖିବା ନିମିତ୍ତ ଅସ୍ତ୍ର ଶସ୍ତ୍ର ଗୋଳା ବାରୁଦ ଦରକାର । ଦୁଇଟି ମହାଯୁଦ୍ଧ ହୋଇଗଲା । କାହିଁକି ? ବାଣିଜ୍ୟ ନିମିତ୍ତ ଉପଯୁକ୍ତ ବଜାର ପାଇବା ପାଇଁ । ଇଉରୋପର ଇଂଲଣ୍ଡ, ଜର୍ମାନି, ଫ୍ରାନ୍ସ ଇଟାଲି ପ୍ରଭୃତି ଯନ୍ତ୍ରପ୍ରଧାନ ଦେଶ, ଯୁଦ୍ଧ ହେଲା ଏମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ନିମିତ୍ତ । ଯେ ପର୍ଯ୍ୟନ୍ତ ଯନ୍ତ୍ର ଶିଳ୍ପର ପ୍ରସାର ଅବାଧ ଭାବରେ ଗ୍ଭଲିଥିବ, ଉପରୋକ୍ତ ଅବସ୍ଥାକୁ ଆଡ଼େଇ ଦେଇ ହେବ ନାହିଁ ।

ହିନ୍ଦୁ ସଭ୍ୟତା ଏବେ କେତେବର୍ଷ ହେଲା ବଢ଼ିନାହିଁ । ଇଉରୋପୀୟ ମାନଙ୍କ ଭାଷାରେ କହିଲେ ସେମାନେ ଯେତେବେଳେ ଅସଭ୍ୟ ଅବସ୍ଥାରେ

ବଣ ଜଙ୍ଗଲରେ ଥିଲେ ହିନ୍ଦୁ ସଭ୍ୟତା ସେତେବେଳକୁ ଉନ୍ନତ ହୋଇ ଆଧୁନିକ ସଭ୍ୟତାକୁ ଟପି ଯାଇଥିଲା । ଏବେ ସୁଦ୍ଧା ହିମାଳୟରେ ଯୋଗୀ-ମାନେ ଅଛନ୍ତି ଯେଉଁମାନେ ହଜାର ହଜାର ବର୍ଷବଞ୍ଚି ଅଛନ୍ତି । ଯେଉଁମାନେ ମୃତ୍ୟୁକୁ ଜିଣିଥିଲେ ସେମାନେ କଅଣ କେତେଟା ଯନ୍ତ୍ର ଉଦ୍ଭାବନ କରି ପାରି ନ ଥାନ୍ତେ ? ସେମାନେ ଯୋଗ ସ୍ୱରୂପ ଅତ୍ୟାଶ୍ଚର୍ଯ୍ୟ କ୍ରିୟା ଉଦ୍ଭାବନ କରି ତ୍ରିକାଳଜ୍ଞ ହୋଇ ପାରିଥିଲେ । ତେଣୁ ସେମାନେ (ମନୁଆଦି) ଯାହା ଲେଖି ଯାଇ ଅଛନ୍ତି ତାହା ଠିକ୍ । ଏକାଳର ପାଶ୍ଚାତ୍ୟ ସଭ୍ୟତା ମନୁଷ୍ୟକୁ ମନୁଷ୍ୟ କରୁନାହିଁ, କରୁଛି ରାକ୍ଷସ । ତାହା ନ ହୋଇଥିଲେ ଯୁଦ୍ଧ ଏପରି ଲାଗୁ ନ ଥାନ୍ତା । ହର୍ଷବର୍ଦ୍ଧନ, ଅଶୋକଙ୍କ ପରି ରାଜା ପୃଥିବୀ ଇତିହାସରେ ନାହାନ୍ତି; ରାମଚନ୍ଦ୍ରଙ୍କ କଥା ଛାଡ଼ିଦିଅ । ଏ ଯୁଗର କୁଟନୀତି, ଏ ଯୁଗର ସର୍ବଗ୍ରାସୀ ଲୋଭ ଯୁଦ୍ଧ ନିମିତ୍ତ ସଭ୍ୟ ଜାତିମାନଙ୍କର ଅଜସ୍ର ବ୍ୟୟ ପ୍ରଭୃତି ବିଚାର କରି ଓ ଏହାକୁ ବନ୍ଦ କରିବାର କୌଣସି ଉପାୟ ନ ଦେଖି ହକ୍‌ସଲିଙ୍କ ପରି ପୃଥିବୀବିଖ୍ୟାତ ପଣ୍ଡିତ ହତାଶ ହୋଇ କହୁଛନ୍ତି, ଭଗବାନ ହେଲେ ଗୋଟିଏ ଧୂମକେତୁ ପଠାଇ ଏ ପୃଥିବୀଟାକୁ ଚୂରମାର କରି ଦିଅନ୍ତେ (A Kindly comet which would sweep the whole affair away.")

ସେଦିନ (୨୯-୧୧-୫୦) ଫ୍ରାନ୍‌ସର ଖ୍ୟାତନାମା ଅଧ୍ୟାପକ ସିଗ୍‌ଫ୍ରିଡ୍ ରାଭେନ୍‌ସା କଲେଜ, କଟକ, ଠାରେ ଭାଷଣ ଦେଇ ନାନାକଥା ଆଲୋଚନା କରି କହିଲେ—"ଆଜକାଲିର ବାୟୁମଣ୍ଡଳ ଯେପରି ମାରାତ୍ମକ ହେବାକୁ ଯାଉଛି ତାହାତ ପ୍ରତ୍ୟେକ ବ୍ୟକ୍ତି ଜାଣନ୍ତି । କେବଳ କଳହ ଓ ପ୍ରତି-ଯୋଗିତା ଦ୍ୱାରା ମଣିଷ ନିଜର ଭବିଷ୍ୟତ ଗଢ଼ିବାପାଇଁ ବର୍ତ୍ତମାନ ଅଦମ୍ୟ ଚେଷ୍ଟା ଚଳାଇଛି । କେତେକ ପରିମାଣରେ ବୈଷୟିକ ଉନ୍ନତି ହାସଲ କରିବାଛଡ଼ା ଆଜକାଲିର ସମାଜ ଅନ୍ୟ କିଛି ନୂତନତା ଆବିଷ୍କାର କରି ନାହିଁ; ବିଜ୍ଞାନ ବଳରେ ସବୁପ୍ରକାର କାର୍ଯ୍ୟ ସମ୍ପନ୍ନ କରିବା ପାଇଁ ବର୍ତ୍ତମାନ ବିଶେଷ ଭାବେ ଚେଷ୍ଟା ଚାଲିଛି । ଯେଉଁ ଦେଶର ଲୋକେ ଯେତେ କମ ସମୟରେ ବୈଜ୍ଞାନିକ ପନ୍ଥାର ଆଶ୍ରୟ ନେଇ ଦାୟିତ୍ୱ ତୁଲାଉଛନ୍ତି ବା କାର୍ଯ୍ୟ ଶେଷକରି ପାରୁଛନ୍ତି ସେ ଦେଶର ମାନମର୍ଯ୍ୟାଦା ସେତେ ଉଚ୍ଚସ୍ତରର ବୋଲି ବିବେଚିତ ହେଉଅଛି । × × × ବିଭିନ୍ନ ଜିସମର କଳ

କବଜା ଓ ଯନ୍ତ୍ରପାତି ହେତୁ ଶିଳ୍ପ କ୍ଷେତ୍ରରେ ମଧ୍ୟ ଆଶ୍ଚର୍ଯ୍ୟଜନକ ଭାବରେ ଉନ୍ନତି କରିବା ଏବେ ସମ୍ଭବପର ହୋଇପାରିଛି; କିନ୍ତୁ ଏହା ସତ୍ତ୍ୱେ ମନୁଷ୍ୟକୁ ଏହି ବୈଜ୍ଞାନିକ କାର୍ଯ୍ୟ ପ୍ରଣାଳୀଦ୍ୱାରା ଏକରକମ ପଙ୍ଗୁ ବା ଅକର୍ମଣ୍ୟ କରିଦିଆଯାଉଛି । ଦୁଃଖର କଥା ଯେ ଚିନ୍ତାଶୀଳ ବ୍ୟକ୍ତିମାନେ ଉକ୍ତ ବିଷୟଟି ପ୍ରତି ଆଦୌ ଭ୍ରୂକ୍ଷେପ ବି କରୁନାହାନ୍ତି × × ×

(ଦୈନିକ ସମାଜ ୩୦ । ୧୧ । ୫୦)



# ଜାତିବିଭାଗ (୨)

ହିନ୍ଦୁ ଏ ସମସ୍ତ ବିଷୟ ବିଦ୍ୟ ଚକ୍ଷୁରେ ଦେଖି ଜାତି ବିଭାଗ ବାନ୍ଧି ଦେଇ ଯାଇଅଛି । ଏହାଦ୍ୱାରା କେହି କୋଟିପତି ହୋଇ ପାରିବେ ନାହିଁ କି କେହି ଉପାସ ରହିବେ ନାହିଁ । ସମସ୍ତେ ଖାଇ ପିଇ ସୁଖ ସ୍ୱାଚ୍ଛନ୍ଦ୍ୟରେ ଓ ଶାନ୍ତିରେ ରହି ପାରିବେ । ଚଣ୍ଢିକଣା ପ୍ରତିଦ୍ୱନ୍ଦ୍ୱିତା ଏଥିରେ ଆଦୌ ସ୍ଥାନ ପାଏନାହିଁ, ମନୁଷ୍ୟ ଜୀବନର ପ୍ରଧାନ ଲକ୍ଷ୍ୟ—ଚରିତ୍ରର ଉନ୍ନତି ଦ୍ୱାରା ଦେବତ୍ୱ ଅର୍ଜ୍ଜନ କରିବା—କେବଳ ହିନ୍ଦୁ ସଭ୍ୟତାର ସାମାଜିକ ବିଧାନ ଦ୍ୱାରା ଯେପରି ସହଜ ଅନ୍ୟ ବିଧାନ ଦ୍ୱାରା ତାହା ସମ୍ଭବ ହେଲେ ମଧ୍ୟ ସେପରି ସହଜ ନୁହେଁ ।

ଜାତି ବିଭାଗ ବିରୁଦ୍ଧରେ ନିମ୍ନଲିଖିତ ଆପତ୍ତି ଉଠିଥାଏ ।

(୧) ଏହା ମନୁଷ୍ୟକୁ ଘୃଣା କରିବା ଶିଖାଏ (୨) ଏକତା ନାଶ କରେ (୩) ଗୁଣକୁ ଅନାଦର କରେ (୪) ତେଣୁ ଗୁଣ ଓ ଚରିତ୍ରକୁ ଶ୍ରେଷ୍ଠ କରି ଜନ୍ମକୁ ବଡ କରେ ।

(୧) ଏହା ଘୃଣା ଶିଖାଏ ନାହିଁ । ପାଶ୍ଚାତ୍ୟ ସମାଜରେ ଯେତେବେଳେ ଲୋକ ଅନ୍ୟ କୌଣସି କାର୍ଯ୍ୟ ନ ପାଇ ନିଜର ଇଚ୍ଛା ଓ ରୁଚି ବିରୁଦ୍ଧରେ ଏକ ଅପରିଷ୍କାର ଜୀବନ ନେବାକୁ ବାଧ୍ୟ ହୁଏ ସେତେବେଳେ ସେ ନିଜକୁ ଘୃଣା କରିବାକୁ ଶିଖେ ଓ ଅନ୍ୟକୁ ଈର୍ଷା ଚକ୍ଷୁରେ ଦେଖେ । ତାହାର ସାରା ଜୀବନଟା ଅସନ୍ତୋଷରେ କଟେ । ହିନ୍ଦୁ ଯେତେବେଳେ କୌଣସି ହୀନ ବ୍ୟବସାୟକୁ ପୈତୃକ ବ୍ୟବସାୟ ବୋଲି ଗ୍ରହଣ କରେ ତାହାର ସେପରି ମାନସିକ ଅସନ୍ତୋଷ ଓ ଘୃଣା ନ ଥାଏ । ପୂର୍ବ ଜନ୍ମରେ ଯେ ଯେପରି ଦେଇଛି ସେ ସେପରି ପାଇଛି—ଏହା ତାହାର ବଦ୍ଧମୂଳ ଧାରଣା । ଏ ଜନ୍ମରେ ସେହି ବ୍ୟବସାୟ ସାଧୁଭାବରେ କଲେ ଅପର ଜନ୍ମରେ ସେ ଆହୁରି ଉଚ୍ଚ ସ୍ତରରେ ଜନ୍ମ ହେବ ବୋଲି ସେ ବିଶ୍ୱାସ କରେ । ଅଭିଜ୍ଞାନ ଶକୁନ୍ତଳା ନାଟକରେ ରାଜଶ୍ୟାଳକ କେଉଟକୁ ଟାହୁଲି

କରି କହିଲେ "ଆହା ତୋର ଜୀବିକା କେତେ ମହତ୍ତ୍ୱ।" କେଉଁଟ ଟିକିଏ ମାତ୍ର ବିଷ୍ମିତ ନ ହୋଇ ସଙ୍ଗେ ସଙ୍ଗେ ଉତ୍ତର ଦେଲା "ଯେଉଁ କୁଳରେ ଯାହାର ଜନ୍ମ ସେ କୁଳର କାର୍ଯ୍ୟ ତାହା ପକ୍ଷରେ କେତେବେଳେ ଛାଡ଼ିବାର ନୁହେଁ।" ସମାଜ ଚଳିବା ନିମିତ୍ତ ବିଭିନ୍ନ ଜୀବିକା ଦରକାର, ସେଥି ନିମିତ୍ତ ବିଭିନ୍ନ ଲୋକ ଦରକାର। ଏକ ଅପରର ସହାୟକ, ଶ୍ରେଷ୍ଠ ବଡ଼କୁ ଛାଡ଼ି ପାରିବ ନାହିଁ କି ବଡ଼ ଶ୍ରେଷ୍ଠକୁ ଛାଡ଼ି ପାରିବ ନାହିଁ। ଏପରିକି ଜୀବିକା ମଧ୍ୟରେ ଶ୍ରେଷ୍ଠ ବଡ଼ ବୋଲି କିଛି ନାହିଁ। ପ୍ରତ୍ୟେକ ପ୍ରତ୍ୟେକର ଅଭାବ ପୂରଣ କରେ ମାତ୍ର, ତେଣୁ ବଡ଼ କିଏ ସାନ କିଏ କହି ହେବ ନାହିଁ। ଓଡ଼ିଶାର ରାଜା ଗଜପତି ଏକଥାକୁ ବିଚକ୍ଷଣ ଭାବରେ ତାଙ୍କ ପ୍ରଜାଙ୍କୁ ପ୍ରତି-ବର୍ଷ ଶିଖାନ୍ତି, ଗୁଣ୍ଡିଚା ଯାତକୁ ଗୃହଆଡ଼ୁ ଲକ୍ଷ ଲକ୍ଷ ଲୋକ ଆସନ୍ତି। ରାଜା ବିଅଁଙ୍କ ଆଗରେ ଯେଉଁ ପହଁରା କରନ୍ତି ତାହାର ନାମ ରଖିଛନ୍ତି "ଛେରା ପହଁରା," ଅର୍ଥାତ୍ ମେହେନ୍ତରର ମଇଳା ସଫା କରିବା। ଏହାଦ୍ୱାରା ରାଜା ନିଜକୁ ଶିକ୍ଷା ଦେଉଛନ୍ତି ଯେପରି, ପ୍ରଜାମାନଙ୍କୁ ସେପରି ଶିଖାଉଛନ୍ତି ଯେ ସମାଜ ଚଳିବା ନିମନ୍ତେ ରାଜା ଯେପରି ଆବଶ୍ୟକ, ମେହେନ୍ତର ମଧ୍ୟ ସେପରି ଆବଶ୍ୟକ। କୌଣସି ଜୀବିକା କଷ୍ଟକର ହୋଇପାରେ, ସେଥି ନିମିତ୍ତ ତାହା ଘୃଣ୍ୟ ହୋଇପାରେ ନାହିଁ। କାରଣ ତାହାଦ୍ୱାରା ସମାଜର ଏକ ଅଭାବ ଦୂର ହେଉଅଛି। ଗାଁ ମାନଙ୍କରେ ଭିନ୍ନ ଭିନ୍ନ ଜାତିର ଲୋକ ରହି ପରସ୍ପରର ସହାୟକ ହୋଇ ହଜାର ହଜାର ବର୍ଷ ହେଲା ଚଳିଛନ୍ତି, କେହି କାହାକୁ ଘୃଣା କରନ୍ତି ନାହିଁ। ଘୃଣା, ଦ୍ୱେଷ ସେତିକି ବେଳେ ପଶିବ ଯେତେବେଳେ ଏକ ଜାତିର ଜୀବିକା ଅନ୍ୟ ଜାତି ମାଡ଼ି ବସିବ। ଜାତି ବିଭାଗରେ ଏପରି କର୍ମସଙ୍କର ପ୍ରଥା ମନା।

ଜାତି ବିଭାଗରେ ବ୍ରାହ୍ମଣଙ୍କୁ ଅବିଚଳିତ ମସ୍ତିଷ୍କ ଚର୍ଚ୍ଚା କରିବାର ସୁବିଧା ଦିଆ ହୋଇଅଛି ଏବଂ ଜାତିମାନଙ୍କ ମଧ୍ୟରେ ସବୁଠାରୁ ବଡ଼ କରି ରଖା ହୋଇଛି। ଏହାଦ୍ୱାରା କାଳେ ସେ ଅତ୍ୟାଗ୍ରହୀ ହୋଇ ଅନ୍ୟକୁ ଘୃଣା କରିବେ, ସେଥି ସକାଶେ ପଇସା ରୋଜଗାର କରିବା ଏବଂ ତାହାଦ୍ୱାରା ଧନଶାଳୀ ହେବା କଥାକୁ ଏକାବେଳକେ ବାହାର ଦିଆଯାଇଛି। ଏବେ ଅବଶ୍ୟ ତାହାର ବ୍ୟତିକ୍ରମ ହେଲାଣି, କିନ୍ତୁ ବ୍ରାହ୍ମଣ ବ୍ରତ ହେଲା ଦାନ ଓ ଦାରିଦ୍ର୍ୟ ବ୍ରତ ଗ୍ରହଣ କରିଥାଏ। ସେ ବ୍ରତ ହେଲା ଦାନ ଭିକ୍ଷାକରେ।

ଜ୍ଞାନରେ ଯେତେବଡ଼ ହେଉପଛକେ, ପେଟ ପୋଷିବା ନିମିତ୍ତ ସେ ସମାଜରୁ ଦାନ ଗ୍ରହଣ କରେ । ଏହି ବିଧାନ ଦ୍ୱାରା ବ୍ରାହ୍ମଣର ଶ୍ରେଷ୍ଠତ୍ୱର ଅହଙ୍କାର ଭାଙ୍ଗି ଦିଆଯାଇଛି । ତ୍ରିକାଳଜ୍ଞ ମନୁ କହି ଅଛନ୍ତି :—

ସମ୍ମାନାଦ୍ ବ୍ରାହ୍ମଣୋ ନିତ୍ୟମୁଦ୍‌ବିଜେତ ବିଷାଦିବ
ଅମୃତସ୍ୟେବ ଚାକାଂକ୍ଷେ ଦବମାନସ୍ୟ ସର୍ବଦା ।

ଅର୍ଥାତ୍ ବ୍ରାହ୍ମଣ ସମ୍ମାନକୁ ବିଷପରି ଭୟ କରିବ । ଅପମାନକୁ (ଅନ୍ୟର ବେଖାତିର ଭାବକୁ) ଅମୃତ ପରି ଆକାଙ୍କ୍ଷା କରିବ ।

ଏ ଯୁଗରେ ଯେତେବେଳେ ବର୍ଣ୍ଣାଶ୍ରମ ଧର୍ମ (ଜାତି ବିଭାଗ) ଓଲଟ ପାଲଟ ହୋଇ ଗଲାଣି ଏହି ମହତ୍ ଉପଦେଶର ଗଭୀର ଅର୍ଥ ବୁଝିବାକୁ ଲୋକେ ଯତ୍ନ କରିବେ ନାହିଁ । ବରଂ ହସି ହସି ଉଡ଼େଇ ଦେବେ । ତେବେ ସୁଦ୍ଧା ହିନ୍ଦୁ ବ୍ୟବସ୍ଥାର ଉଦାରତା ଓ ବିଚକ୍ଷଣତା ବୁଝାଇବା ନିମିତ୍ତ ଏହାକୁ ଏଠାରେ ଉଦ୍ଧାର କରିବା ଅଯୌକ୍ତିକ ହେବ ନାହିଁ ।

(୨) "ଜାତି ବିଭାଗ ନିମିତ୍ତ ହିନ୍ଦୁମାନେ ଶୀଘ୍ର ସେମାନଙ୍କର ସ୍ୱାଧୀନତା ହରାଇଲେ" ଏ କଥା ଯେଉଁମାନେ କହନ୍ତି ସେମାନେ ଇତିହାସ ପଢ଼ିଥିଲେ ପଢିଲା ପରି ପଢ଼ି ନାହାନ୍ତି ବୋଲି ଜଣାପଡ଼େ । ହିନ୍ଦୁର କୌଣସି ଇତିହାସ କିମ୍ବା ପୁରାଣରେ ଲେଖାନାହିଁ ଯେ ହିନ୍ଦୁର ବିଭିନ୍ନ ଜାତି ମଧ୍ୟରେ କେବେ କଳି ଗୋଳ ଲାଗିଛି । ଏହା କେତେବେଳେ ହୋଇ ନାହିଁ । ବରଂ ଏହା ସ୍ୱୀକାର କରିବାକୁ ହେବ ଯେ ବିଭିନ୍ନ ହିନ୍ଦୁ ରାଜା ପରସ୍ପର ମଧ୍ୟରେ କଳି ଲଗାଇ ଯୁଦ୍ଧ କରିଛନ୍ତି । ଜୟଚନ୍ଦ୍ର ପୃଥ୍ୱୀରାଜ କଳି ଲଗାଇନଥିଲେ ହିନ୍ଦୁ ସ୍ୱାଧୀନତା ହରାଇ ନଥାନ୍ତା । ସେ କାଳର ସ୍ୱାଧୀନ ହିନ୍ଦୁରାଜାମାନେ ମିଳିତ ହୋଇଥିଲେ ମୁସଲମାନ କେବେହେଁ ଭାରତରେ ପଶିପାରି ନଥାନ୍ତେ । ହିନ୍ଦୁରାଜ୍ୟ ଖଣ୍ଡ ଖଣ୍ଡ ହୋଇ ଚାରିଆଡ଼େ ବିଛେଇ ହୋଇ ରହିଥିଲା, ଏମାନଙ୍କ ମଧ୍ୟରେ ଜଣେ ହେଲେ ସୁଦ୍ଧା ଅଖଣ୍ଡ ଭାରତ କଳ୍ପନା କରି ନ ଥିଲେ । ଅଶୋକ ହର୍ଷବର୍ଦ୍ଧନ ପ୍ରଭୃତିଙ୍କ ଚେଷ୍ଟା କ୍ଷଣସ୍ଥାୟୀ ହୋଇଥିଲା ।

(କ) ଏପରି ହିନ୍ଦୁରାଜ୍ୟ ଖଣ୍ଡ ବିଖଣ୍ଡ ହୋଇ ରହିଥିଲେ ସୁଦ୍ଧା ହିନ୍ଦୁମାନଙ୍କର ବୀରତ୍ୱ କମ୍ ନ ଥିଲା । ଆଲେକଜାଣ୍ଡର ଯେତେବେଳେ

ଗ୍ରୀସ ଠାରୁ ପୂର୍ବଦଗକୁ ଅଭିଯାନ ଚଳାଇ ଏସିଆ ମହାଦେଶରେ ପଶିଲେ, ତାଙ୍କୁ କେହି ବାଧା ଦେଇପାରିନଥିଲେ । ଭାରତରେ ପୃଣ୍ଣ ତାଙ୍କଦ୍ୱାରା ପରାସ୍ତ ହେଲେ ସତ, କିନ୍ତୁ ତାଙ୍କ ସୈନ୍ୟମାନେ ଏପରି ହତୋତ୍ସାହ ହୋଇ-ଥିଲେ ଯେ ସେମାନେ ଆଉ ଆଗେଇବାକୁ ସାହସ କଲେ ନାହିଁ ।

(ଖ) ମହମ୍ମଦଙ୍କର ମୃତ୍ୟୁପରେ ଆରବମାନେ ଏକରକମ ଅପରା-ଜେୟ ହୋଇ ଉଠିଥିଲେ । ଇଜିପ୍ଟ ଓ ସିରିଆ ମହମ୍ମଦଙ୍କ ମୃତ୍ୟୁର ୭ ବର୍ଷ ମଧ୍ୟରେ, ପାରସ୍ୟ ଦଶବର୍ଷ, ତୁର୍କିସ୍ଥାନ ଆଠବର୍ଷ, ଓ ସ୍ପେନ, ଉତ୍ତର ଆଫ୍ରିକା ଏକ ଏକ ବର୍ଷ ମଧ୍ୟରେ ଅଧିକୃତ ହୋଇଥିଲା । କିନ୍ତୁ ୪ଶତ ବର୍ଷ ଲାଗି ଲଢି ସୁଦ୍ଧା ସମସ୍ତ ଭାରତବର୍ଷକୁ ମୁସଲମାନ ମାନେ ଜୟ କରି ପାରି ନଥିଲେ । ଇଜିପ୍ଟ, ସିରିଆ, ତୁର୍କିସ୍ଥାନ ପ୍ରଭୃତିରେ ଜାତି ବିଭାଗ ନଥିଲା ।

(ଗ) ମୁସଲମାନମାନଙ୍କର ଅଧିକାଂଶ ବିଜୟ ଛଳ ଚାତୁରୀ ଦ୍ୱାରା ହୋଇଥିଲା । ହିନ୍ଦୁମାନେ ଧର୍ମଯୁଦ୍ଧରେ ଅଭ୍ୟସ୍ତ ଥିଲେ, ସେମାନେ ଅତର୍କିତ ଭାବରେ କାହାକୁ ଆକ୍ରମଣ କରୁ ନ ଥିଲେ । ଥରେ ମୁସଲମାନମାନେ କୌଣସି ଉପାୟ ନ ପାଇ ଷଣ୍ଢ ଗୁଡ଼ଏ ଆଣି ତାଙ୍କ ସୈନ୍ୟଙ୍କ ଆଗରେ ରଖି ଦେଲେ । ହିନ୍ଦୁମାନେ ଏହା ଦେଖି ଯୁଦ୍ଧରୁ କ୍ଷାନ୍ତ ହେଲେ । କିନ୍ତୁ ପରେ ଅତର୍କିତ ଭାବରେ ଆକ୍ରାନ୍ତ ହୋଇ ପରାସ୍ତ ହେଲେ ।

ପୃଥ୍ୱୀରାଜ ଶାହାବୁଦ୍ଦିନ ମହମ୍ମଦ ଘୋରିଙ୍କୁ ପରାସ୍ତ କରି ଦୟା ଦେଖାଇ ପ୍ରାଣଦାନ କରିଥିଲେ, ପରେ ସେ ସନ୍ଧି ପ୍ରସ୍ତାବ ପଠାଇ ଅତର୍କିତ ଭାବରେ ପୃଥ୍ୱୀରାଜଙ୍କୁ ଆକ୍ରମଣ କରି ପରାସ୍ତ କରିଥିଲେ ।

(ଘ) ମରହଟ୍ଟାମାନେ "ଯେସାକୁ ତେସା" ନୀତି ଧରି ମୁସଲମାନ ରାଜ୍ୟ ଭାରତରୁ ପ୍ରାୟ ଲୋପ କରି ଦେଇଥିଲେ, ସେମାନେ ଚୌଥ ଓ ସର ଦେଶମୁଖୀ ଦେଇ କୌଣସି ପ୍ରକାରେ ସେମାନଙ୍କର ଛୋଟ ଛୋଟ ରାଜ୍ୟଟି-ମାନ ରଖି ପାରିଥିଲେ ।

(ଙ) ଯେତେବେଳେ କୌଣସି ନୂଆ ଜାତି ଆସ୍ତେ ଆସ୍ତେ ଉଠିବାକୁ ବସେ, ସେ ନିକଟସ୍ଥ ପୁରୁଣା ଜାତିକୁ ପ୍ରାୟ ପରାସ୍ତ କରିଥାଏ । ପୃଥିବୀର ଇତିହାସରେ ଏହାର ବହୁତ ଉଦାହରଣ ଅଛି ।

ରୋମ ଗ୍ରୀସ୍‌କୁ ୫୨ ବର୍ଷ ମଧ୍ୟରେ, କାର୍ଥେଜ୍‌କୁ ପ୍ରାୟ ୧୦୦ ବର୍ଷ ମଧ୍ୟରେ ଧ୍ୱଂସ କରି ଦେଇଥିଲା, ପ୍ରାଚ୍ୟ ରୋମ ସାମ୍ରାଜ୍ୟ ବଢ଼ି ବଢ଼ି ଆସି-ଆମାଇନର ଚପି ଯାଇଥିଲା । ତୁର୍କିମାନେ ୧୫ ବର୍ଷ ମଧ୍ୟରେ ଏହାକୁ ବିଧ୍ୱସ୍ତ କରିଦେଇଥିଲେ । ପଶ୍ଚିମ ରୋମ ସେହିପରି ଉତ୍ତରାଞ୍ଚଳସ୍ଥ ଅସଭ୍ୟ ଲୋକଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ଛିନ୍ନ ଭିନ୍ନ ହୋଇ ଯାଇଥିଲା । ଏହିପରି ଆହୁରି ଅନେକ ଉଦାହରଣ ପୃଥିବୀ ତମାମ ରହିଅଛି । ଦେଶ ସବୁ ଏପରି ବିଜିତ ହୋଇ ସେମାନଙ୍କର ସଭ୍ୟତା ସମ୍ପୂର୍ଣ୍ଣ ହରାଇଥିଲେ । ଭାରତ ତାହାର ସଭ୍ୟତା ଅକ୍ଷୁଣ୍ଣ ରଖିଅଛି, ଶତ ଶତ ଆକ୍ରମଣ ଓ ପରାଜୟ ଏହାକୁ ଦୋହଲେଇ ଦେଇଛି, ମୂଳରୁ ଉପାଡ଼ି ଦେଇପାରିନାହିଁ ।

(ଚ) ଶକ ଓ ହୁନମାନେ ଭାରତ ଆକ୍ରମଣ କରି ସବା ଶେଷରେ ବିତାଡ଼ିତ ହୋଇଥିଲେ । ଇତିହାସରୁ ଦେଖାଯାଏ ଯେ ଏହି ହୁନ୍‌ମାନେ (ଆଟିଲ୍ଲା ନେତୃତ୍ୱରେ) ଇଉରୋପର ରାଇନ୍ ନଦୀ ପର୍ଯ୍ୟନ୍ତ ସେମାନଙ୍କର ଧ୍ୱଂସମୂଳକ ବିଜୟ ଯାତ୍ରା ନେଇ ପାରିଥିଲେ । ତାହା ଏପରି ଦୀର୍ଘସ୍ଥାୟୀ ଓ ବ୍ୟାପକ ହୋଇଥିଲା ଯେ ଏବେ ସୁଦ୍ଧା ତାହାର ଚିହ୍ନ ସ୍ୱରୂପ ରାଜ୍ୟର ନାମ ହଙ୍ଗେରି (Hungary) ରହିଅଛି ।

(ଛ) ମୁସଲମାନଙ୍କଦ୍ୱାରା ହିନ୍ଦୁ ବିଜିତ ହୋଇଥିଲେ ହେଁ ସେମାନେ ତାଙ୍କଠାରୁ ଭାରତର ଅଧିକାଂଶ ଉଦ୍ଧାର କରି ନେଇଥିଲେ । ଇଂରେଜ ମୁସଲମାନମାନଙ୍କଠାରୁ ଭାରତର ଅଧିକାଂଶ ନେଇ ନାହାନ୍ତି, ନେଇଛନ୍ତି ହିନ୍ଦୁ (ମରହଟ୍ଟା) ଓ ଶିଖଙ୍କ ଠାରୁ ।

(ଜ) ଜାତିବିଭାଗ ଗୁଣ ଅନାଦର କରେ; ଏହା ଠିକ୍ ବିପରୀତ । ଜାତି ବିଭାଗ ନିମିତ୍ତ ବିଭିନ୍ନ ଜାତିମାନଙ୍କର ନିଜ ନିଜର କାର୍ଯ୍ୟରେ ଦକ୍ଷତା ବଢ଼ି ଯାଇଛି । ବ୍ୟବସାୟ ବଂଶଗତ ହେବାରୁ କାର୍ଯ୍ୟକୌଶଳ ଓ ଦକ୍ଷତା ଏପରି ବଢ଼ିଯାଇଛି ଯେ ଜାତିର ନିତାନ୍ତ ନିର୍ବୁଦ୍ଧିଆ ଲୋକ ମଧ୍ୟ ତାହାର ବ୍ୟବ-ସାୟ କରି କୌଣସି ପ୍ରକାରେ ପେଟ ପୋଷି ପାରୁଛି । ଶିଳ୍ପ କେବଳ ରକ୍ଷା ପାଇନାହିଁ, ଶିଳ୍ପଗୁଡ଼ିକ ପୃଥିବୀ ପ୍ରସିଦ୍ଧ ହୋଇପାରିଛି । "ଯାହାର ଯାହା ଖୁସି" ବ୍ୟବସାୟ ଗ୍ରହଣଦ୍ୱାରା ଦକ୍ଷତା ନଷ୍ଟ ହୁଏ, ପରସ୍ପର ମଧ୍ୟରେ ଅସଂଯତ, ପ୍ରତିଦ୍ୱନ୍ଦ୍ୱିତା ବୃଦ୍ଧିପାଏ କ୍ଷତି ହୁଏ ସମାଜର, ବ୍ୟକ୍ତିର ମଧ୍ୟ ।

ଜାତି ବିଭାଗ ନଥିଲେ ସରକାର କେତେ ରକମର ସ୍କୁଲ (ବିପ୍ଳବ ସେଖାଦନ ଆଦି) ବସାଇବାକୁ ବାଧ୍ୟ ହେଉଥାନ୍ତେ । ଶିକ୍ଷା ମଧ୍ୟ ସେଠାରେ ଏପରି ବ୍ୟାପକ ଓ ସୁନ୍ଦର ହେଉ ନ ଥାନ୍ତା । ଜାତି ବିଭାଗ ରହିଛି ବୋଲି ପିଲାମାନେ ପିଲାଦିନୁ ବାପ ମା ମାନଙ୍କର ଗଳଗ୍ରହ ନ ହୋଇ ସାହାଯ୍ୟକାରୀ ହୋଇଅଛନ୍ତି ଏବଂ ନିଜେ ନିଜେ ବଂଶଗତ କାର୍ଯ୍ୟରେ କ୍ରମେ କ୍ରମେ ତାଲିମ ହୋଇ ଯାଉଅଛନ୍ତି । ଜନ୍ମଗତ, ରକ୍ତଗତ, ବଂଶଗତ ଗୁଣ ସହଜ ସୁନ୍ଦର ପ୍ରାକୃତିକ ଉପାୟରେ ବିକାଶ ଲାଭ କରୁଛି । ତେବେ ଯୁକ୍ତିହୋଇପାରେ, ଚଣ୍ଡାଳ ଜଣେ ଯଦି ଅନ୍ୟ କୌଣସି ଗୁଣ କିମ୍ବା ବ୍ୟବସାୟରେ ଅସାଧାରଣ ପ୍ରତିଭା ନେଇ ଜନ୍ମ ହୁଏ, ତେବେ ଜନ୍ମଗତ ବାଧାଥିବାରୁ ତାହା ବିକଶିତ ହୋଇ ପାରେନାହିଁ । ସାମାଜିକ ବେଷ୍ଟନୀ ମଧ୍ୟରେ ତାହା ମଉଳିଯାଏ । ବ୍ରାହ୍ମଣ ମଧ୍ୟ ଅସାଧାରଣ ଶିଳ୍ପୀ ହୋଇ ଜନ୍ମ ହୋଇପାରେ । ତାହାର ସେ ଗୁଣ ସାମାଜିକ ବନ୍ଧନ ନିମିତ୍ତ ମୁକୁଳିତ ହୁଏ ନାହିଁ । ତେଣୁ ଗୁଣ, ଜନ୍ମଗତ ଗୁଣ ଅନାଦୃତ ହୁଏ । ଜାତି ବିଭାଗ ନିମିତ୍ତ ଏହା ସମ୍ଭବ ହୁଏ । ହଁ, ଏହା ହୁଏ, କିନ୍ତୁ ଏପରି ଅସାଧାରଣତା ଏତେ କମ ଯେ ସମୂହ କଲ୍ୟାଣ ଦୃଷ୍ଟିରେ ଏହା ଧରାଯାଏ ନାହିଁ । ସଂସାରର ପ୍ରତ୍ୟେକ ନିୟମ କିମ୍ବା ନୀତିରେ କିଛି ନା କିଛି ବ୍ୟତିକ୍ରମ ବରାବର ଦେଖାଯାଏ ।

(୪) ଜାତି ବିଭାଗ ଗୁଣ ଚରିତ୍ରକୁ ଚାପିଦିଏ ଏବଂ ଜନ୍ମକୁ ବଡ଼ କରେ; ବାହାରକୁ ଏପରି ଦେଖାଯାଇପାରେ । ଗୁଣବାନ ଚରିତ୍ରବାନ ଲୋକ ଯେଉଁ କୁଳରେ ଜନ୍ମ ହେଉ ପଛକେ ତାହାର ସମ୍ମାନ ପାଏ । ହିନ୍ଦୁ କହେ ଜନ୍ମରୁ ସମସ୍ତେ ଶୂଦ୍ର ହୋଇ ଜନ୍ମ ହୁଅନ୍ତି, ଆଶ୍ରମ ଦ୍ୱାରା ସେ କେବଳ ବ୍ରାହ୍ମଣ ପଦବାଚ୍ୟ ହୋଇପାରେ । ସମାଜରେ ସବୁ ବ୍ୟବସାୟ ପରସ୍ପରର ସହାୟକ ଓ ପରିପୂରକ ହୋଇଥିବାରୁ ସମସ୍ତେ ସମାନ, ବ୍ରାହ୍ମଣ ମଧ୍ୟ । ତେବେ ବ୍ରାହ୍ମଣକୁ କେବଳ ଉଚ୍ଚ ଆସନ ଦିଆଯାଇଛି ତାହାର ଅସାଧାରଣ ତ୍ୟାଗ ନିମିତ୍ତ, ସାଂସାରିକ ଭୋଗ ବିଳାସରେ ସେ ପଶେନାହିଁ ବୋଲି । ବ୍ରାହ୍ମଣମଧ୍ୟ ଅନ୍ୟ ଜାତିଠାରୁ ଧର୍ମଉପଦେଶ ନେଇପାରେ, ମହାଭାରତରେ ବ୍ୟାଧଠାରୁ ଜଣେ ବ୍ରାହ୍ମଣ ଧର୍ମର ତତ୍ତ୍ୱ ବୁଝିଥିଲେ ବୋଲି ଉଲ୍ଲେଖ ଅଛି ।

---

ଏ ପ୍ରବନ୍ଧ ୧୩୪୦, ଆଷାଢ଼ ମାସର ବସୁମତୀରେ ପ୍ରକାଶିତ ବସନ୍ତକୁମାର ଚଟ୍ଟୋପାଧ୍ୟାୟଙ୍କର "ବର୍ଣ୍ଣାଶ୍ରମ ଧର୍ମ" ପ୍ରବନ୍ଧର ଛାୟା ଅବଲମ୍ବନେ ଲିଖିତ ।

# ଜାତି ବିଭାଗ (୩)

ଏକ ଜାତି ଯହିଁ ଅନ୍ୟ ଜାତିର ଅଭାବ ପୂରଣ କରେ; ପରସ୍ପରକୁ ସାହାଯ୍ୟ କରିବା ନିମିତ୍ତ ଓ ପୂର୍ଣ୍ଣାଙ୍ଗ ସମାଜକୁ ଚଳାଇବା ନିମିତ୍ତ ଯହିଁ ଜାତି ବିଭାଗ ହୋଇଅଛି ଏବଂ ଜାତିସ୍ୱରୂପ ସମସ୍ତେ ଯହିଁ ସମାନ, ତେବେ ଏକ ଜାତିର ଲୋକ ଅନ୍ୟ ଜାତିରେ ବିବାହ କରିପାରେ ନାହିଁ, ଏକ ଜାତିର ଲୋକ ଅନ୍ୟ ଜାତି ହାତରୁ ଖାଏ ନାହିଁ କାହିଁକି ? ସମାନ କଥାଟା ରହିଲା କେଉଁଠାରେ ? ହିନ୍ଦୁ ସମାଜଟା ପାହାଚ ପାହାଚ ହୋଇ ଗଢ଼ା । ସମାନ ବା ସମଭାବଟା ମୁହଁରେ କିମ୍ବା ଖାଲି କାଗଜ କଲମରେ ଥାଏ ।

ହିନ୍ଦୁର ବିବାହ ଅନ୍ୟ ସମାଜର ବିବାହଠାରୁ ଫରକ । ଧର୍ମସାଧନ ଅର୍ଥାତ୍ ମନୁଷ୍ୟ ଜନ୍ମ ପାଇ ନିଜର କାମରେ ଲାଗିରହି, ତାହାକୁ ଭଲ-ଭାବରେ କରି, ତାହାଦ୍ୱାରା ନିଜର ଚରିତ୍ର ଉନ୍ନତିକରି ଆତ୍ମାର ମୁକ୍ତି ହାସଲ କରିବା ହିନ୍ଦୁର ଲକ୍ଷ୍ୟ । ହିନ୍ଦୁର ଆଶ୍ରମ ଏହାକୁ ଲକ୍ଷ୍ୟକରି ଗଢ଼ା ହୋଇଛି । ହିନ୍ଦୁ ବାହାହୁଏ ଏହି ଲକ୍ଷ୍ୟରେ ପହଞ୍ଚିବା ନିମିତ୍ତ । ବିବାହ ତାହାର କେବଳ ଯେ ଗୋଟାଏ ଦୈହିକ ଅଭାବ ପୂରଣ କରେ ତାହା ନୁହେଁ, ଧର୍ମସାଧନରେ ଏହା ତାହାର ପ୍ରଧାନ ସାହାଯ୍ୟ ହୁଏ । ତେଣୁ ହିନ୍ଦୁ ସ୍ତ୍ରୀକୁ କହେ ସହଧର୍ମିଣୀ । ଧର୍ମ ଚିତା ଜାଳିଲେ, ପଇତା ପକାଇଲେ କିମ୍ବା ଦାଢ଼ି ଥୋଡ଼ ରଖିଲେ ଅର୍ଜନ କରାଯାଏ ନାହିଁ । ନିଜର କର୍ତ୍ତବ୍ୟ (ଅନ୍ୟ ଚକ୍ଷୁରେ ତାହା ଯେତେ ଶ୍ରେଷ୍ଠ ବା ନଗଣ୍ୟ ହେଉପଛକେ) ନିଷ୍ଠା ସହିତ ପାଳିଲେ ଭଗବାନ ସନ୍ତୁଷ୍ଟ ହୁଅନ୍ତି, ତେଣୁ ଧର୍ମ ଅର୍ଜନ କରାଯାଏ । ଯେ ଯେଉଁ କୁଳରେ ଜନ୍ମ ହୋଇଛି, ସେ କୁଳର କାମ ସୁନ୍ଦର ଭାବରେ କରିବା ହେଉଛି ତାହାର କର୍ତ୍ତବ୍ୟ ❊ । ଏଥିପାଇଁ ସେ କେଉଁଠି ସାହାଯ୍ୟ, ଉପଯୁକ୍ତ ସାହାଯ୍ୟ କିଏ ଦେଇପାରେ ? ସେ କୁଳ କାମ ଯେ ଦେଖିଛି,

---

❊ ସ୍ୱେ ସ୍ୱେ କର୍ମଣ୍ୟ ଭିରତଃ ସଂସିଦ୍ଧିଂ ଲଭତେ ନରଃ । ଗୀତା ୧୮ । ୪୫ ସ୍ୱକର୍ମେ ରତ ନରପନ୍ତି, ସମ୍ପୂର୍ଣ୍ଣ ସିଦ୍ଧିକି ଲଭନ୍ତି ।

କମ୍ବା ଶିଖିଛି, କମ୍ବା ଅଙ୍ଗ ନଭେଇଛି, କମ୍ବା ସେହି ବେଷ୍ଟନୀ ମଧ୍ୟରେ ବଢିଛି ସେ ଉପଯୁକ୍ତ ସାହାଯ୍ୟ ଦେଇପାରେ । ତେଣୁ ସେ ବାଛେ ବିବାହ ନିମିତ୍ତ ସେହିଲୋକ, ଯାହାର ଶିକ୍ଷା, ଦୀକ୍ଷା ରୁଚି ତାହାର କୁଳ କାମ ସହିତ ଖାପଖାଇବ । ଏକ ଅପରକୁ ଜୀବିକା ନିର୍ବାହରେ ସାହାଯ୍ୟ କରିବ । ରୁଚି ବିଭିନ୍ନ ହେଲେ, ମନ ମିଳେ ନାହିଁ । ପ୍ରଥମେ ପ୍ରେମ ଉନ୍ମାଦନାରେ ଲୋକେ ବାହା ହୋଇପଡ଼ନ୍ତି, ଉନ୍ମାଦନା ବେଶୀ ସମୟ ରହେ ନାହିଁ, ତାହାପରେ ମନୋମାଳିନ୍ୟ ଘଟେ, ଛାଡ଼ପତ୍ର ଦାବି ହୁଏ, ଘର ଭାଙ୍ଗେ । ଏହାର ହଜାର ହଜାର ଉଦାହରଣ ଅନ୍ୟତ୍ର ଦେଖାଯାଉଛି । ହିନ୍ଦୁ ଯେ ସ୍ତ୍ରୀକୁ କହେ "ସହ-ଧର୍ମିଣୀ" ଏହି କଥାହିଁ ଆମ୍ଭମାନଙ୍କ ଉକ୍ତିର ଯଥାର୍ଥତା ପ୍ରମାଣ କରୁଛି । ତେଣୁ ହିନ୍ଦୁ ଏକ ଜାତି ମଧ୍ୟରେ ବିବାହ କରେ ।

"ହିନ୍ଦୁ ହିନ୍ଦୁକୁ ଛୁଏଁ ନାହିଁ ।" ହିନ୍ଦୁ ହିନ୍ଦୁ ହାତରୁ ଖାଏ ନାହିଁ । ହିନ୍ଦୁ ଧର୍ମର ସମାଲୋଚକମାନଙ୍କ ହାତରେ ଏ କଥାଟା ଗୋଟାଏ ମସ୍ତବଡ଼ ଚାବୁକ୍ । ହିନ୍ଦୁ ଯେଉଁ କାରଣରୁ ମଇଳାବୁହା ଗଙ୍ଗା ପାଣିକୁ ପବିତ୍ର ମନେ କରେ, ସେହି କାରଣରୁ ସେ ଲୋକ ବିଶେଷକୁ ଛୁଇଁବାକୁ କମ୍ବା ଲୋକ ବିଶେଷ ହାତରୁ ଖାଇବାକୁ ମଙ୍ଗେ ନାହିଁ । ସେ ମନୁଷ୍ୟକୁ ଘୃଣାକରେ ନାହିଁ, ମନୁଷ୍ୟଠାରେ ଥିବା ଅପରିଷ୍କାରତାକୁ ଡରେ । ମନୁସଂହିତାରେ ଅସ୍ପୃଶ୍ୟତାର ବ୍ୟବସ୍ଥା ଅଛି । ସେ ଶ୍ଳୋକର ଓଡ଼ିଆ ଅନୁବାଦ ଏହିପରି— "ଋତୁମତୀ ସ୍ତ୍ରୀ, ଚଣ୍ଡାଳ, ଶବ, ଯେଉଁ ଲୋକ ଶବ ସ୍ପର୍ଶ କରିଅଛି, ସଦ୍ୟଃ ପ୍ରସୂତା ସ୍ତ୍ରୀଙ୍କୁ ସ୍ପର୍ଶକଲେ ସ୍ନାନ କରି ଶୁଦ୍ଧହେବ ।" (ମନୁସଂହିତା ୫।୮୫) ଚଣ୍ଡାଳ ସହିତ ନିଜର ଝିଅ, ଭଉଣୀ, ସ୍ତ୍ରୀ ଏପରିକି ମାକୁ ମଧ୍ୟ ରଖି ଦିଆଯାଇଛି । ଘୃଣା ରହିଲା ମନୁଷ୍ୟଠାରେ ନା ମନୁଷ୍ୟଠାରେ ଥିବା ଅପରିଷ୍କାର-ତାରେ ?

ଧୋବାଘରେ କେତେ ପ୍ରକାର ମଇଳା ଲୁଗା ପଡ଼ୁଛି । କଲେରା, ବସନ୍ତ ଆଦି ସଂକ୍ରାମକ ରୋଗଗ୍ରସ୍ତ ଲୋକଙ୍କର ଶତ ଶତ ହଜାର୨ କନା, ଲୁଗା ସେ ସଫା କରୁଛି । ଧୋବାମାନେ ଉକ୍ତ ରୋଗମାନଙ୍କରେ ମରିଯାଉ ନାହାନ୍ତି । ସହରମାନଙ୍କରେ କଲେରା ଲାଗୁଛି, ମେହେନ୍ତରମାନେ ସେ ମଇଳା ସଫା କରୁଛନ୍ତି; ସେମାନଙ୍କ ମଧ୍ୟରୁ କେହିତ୍ କ୍ୱଚିତ ଏ ରୋଗରେ

ମରିଥାନ୍ତି । ଟିକା ନେଲେ ଯେପରି ବସନ୍ତ ରୋଗରୁ ନିଷ୍କୃତି ମିଳେ, ସେପରି ଯେ ଯେଉଁ ବ୍ୟବସାୟ କରେ ସେ ସେଥିରେ ସର୍ବଦା ନିଯୁକ୍ତ ହୋଇ ଏକ ପ୍ରକାର ନିଷ୍କୃତି ବା ଅବ୍ୟାହତି (Immunitly) ପାଇଯାଇଥାଏ । ଅନ୍ୟଲୋକ (ଯେଉଁମାନେ ଏଥିରେ ନିଯୁକ୍ତ ହୋଇନଥାଏ) ଏଥିରୁ ଅବ୍ୟାହତି ପାଇବାର ସମ୍ଭାବନା ନ ଥାଏ ବରଂ ତଦ୍ଦ୍ୱାରା ଆକ୍ରାନ୍ତ ହେବାର ସମ୍ଭାବନା ଥାଏ; ତେଣୁ ହିନ୍ଦୁ କେତେକ ବ୍ୟବସାୟ ଅନ୍ତର୍ଗତ ଲୋକଙ୍କୁ ଛୁଏଁ ନାହିଁ । ମଇଳାକୁ କିଏ ନ ଡରେ ?

ଜର୍ମଥିଓରି (Germ theory) ବା ଜୀବାଣୁ ବିଜ୍ଞାନ ଏବେ ବାହାରିଲା । ହିନ୍ଦୁ କେଜାଣି କେଉଁକାଳୁ ଏହା ଜାଣିଥିଲା । ସେ ଏହା ଜାଣିଥିବା ବୋଲି, ତାହାର ଆଚାର ବ୍ୟବହାର ତାହା ଅନୁସାରେ ସେ ଗଢିଛି । ହିନ୍ଦୁ ଯଦି ଅସ୍ପୃଶ୍ୟ ଲୋକଙ୍କୁ ଘୃଣାକରିଥାନ୍ତା, ସେମାନଙ୍କର ସଂଖ୍ୟା ଭାରତରେ ୫।୬ କୋଟି ହୋଇ ନ ଥାନ୍ତା । ଅଷ୍ଟ୍ରେଲିଆର ଆଦିମ ଅଧିବାସୀଙ୍କ ସଂଖ୍ୟା ଦିନକୁ ଦିନ କମି ଯାଉଛି । ସେଦିନ ଖବର କାଗଜରେ ଟାସମାନିଆର ସର୍ବଶେଷ ଆଦିମ ଅଧିବାସୀ ମରିଗଲା ବୋଲି ବାହାରିଥିଲା । ମନୁ ସଂହିତାର ୩ଅଧ୍ୟାୟର ୯୨ ଶ୍ଳୋକରେ ଅଛି ଚଣ୍ଡାଳକୁ ଯତ୍ନ ସହିତ ଆହାର ପ୍ରଦାନ କରିବ । ଘୃଣା ଥିଲେ ସେ ଏକଥା ଲେଖି ନଥାନ୍ତେ । ଚଣ୍ଡାଳର ବ୍ୟବସାୟରେ ଅନ୍ୟ କେହି ହସ୍ତକ୍ଷେପ କରିବେ ନାହିଁ ବୋଲି ମଧ୍ୟ ବ୍ୟବସ୍ଥା ଅଛି । ଘୃଣା ତେବେ କେଉଁଠାରେ ରହିଲା ?

———

# ଜାତିବିଭାଗ (୪)

ଜାତି ବିଭାଗ ଯଦି ଏତେ ଭଲ, ପୃଥିବୀର ଅନ୍ୟ ଦେଶରେ ଏହା ନିଶ୍ଚୟ ଥାନ୍ତା । ଅନ୍ୟ କୌଣସି ଦେଶରେ ଏହା ନାହିଁ ।

ପୃଥିବୀର ଅନ୍ୟ କୌଣସି ଦେଶର ଲୋକ "ଯୋଗ" ବିଦ୍ୟା ଜାଣି ନ ଥିଲେ । ଯୋଗ ବଳରେ ମନୁଷ୍ୟ ଅସାଧ୍ୟ ସାଧନ କରିପାରେ । ଏହା ପ୍ରାୟ ଅନେକ ଦେଖିଛନ୍ତି ଓ ଜାଣିଛନ୍ତି ଯେ ସାମାନ୍ୟ ହଠଯୋଗ ଶିଖି ଲୋକେ ଲୁହା ଶିକୁଳି ହାତରେ ଛିଣ୍ଡାଇ ଦେଉଅଛନ୍ତି । ଶାବଳ ପରି ଲୁହାକୁ ହାତକଥା ଛିଡ଼ିଦିଅ, ତଣ୍ଟିଠାରେ ଲଗାଇ ଓ ତଣ୍ଟିଠାରୁ ଚାପ ପକାଇ ତାହାକୁ ବଙ୍କା କରି ଦେଉଅଛନ୍ତି । ଛାତି ଉପରେ ବଡ ବଡ ପଥର ଥୋଇ ସେହି ପଥର ଉପରେ ବଡ଼ ବଡ଼ ହାତୁଡ଼ିର ମାଡ଼କୁ ସହି ପାରୁଛନ୍ତି । ସେମାନଙ୍କଠାରୁ ଆହୁରି ଯେଉଁମାନେ ଅଧିକ ଶିଖିଛନ୍ତି ସେମାନଙ୍କୁ ବାକ୍ସ ମଧ୍ୟରେ ବନ୍ଦକରି ମାଟିତଳେ ପୋତିଦେଲେ ମଧ୍ୟ ସେମାନେ ବଞ୍ଚି ରହୁଛନ୍ତି । ଏବେ ଜଣେ ଯୋଗୀ ଏହା ବାଲେଶ୍ୱରଠାରେ ଦେଖାଇଥିଲେ । ଯୋଗ ସାମାନ୍ୟ ଶିଖିପାରିଲେ ଏହିପରି ଅଲୌକିକ କାମ କରିଯାଇ ପାରେ । ପୂର୍ବେ ହିନ୍ଦୁ ଯୋଗୀମାନେ ତପସ୍ୟା କରି ଦିବ୍ୟ ଜ୍ଞାନ ଅର୍ଜନ କରି ଦିବ୍ୟ ଚକ୍ଷୁରେ ଯାହାସବୁ ଦେଖିଥିଲେ, ତାହାକୁ ଆମର ଶାସ୍ତ୍ରମାନଙ୍କରେ ଲିପିବଦ୍ଧ କରିଯାଇଛନ୍ତି । ସେମାନେ ବର୍ଣ୍ଣାଶ୍ରମ ବା ଜାତି ବିଭାଗର ମହତ୍ତ୍ୱ ବୁଝି ତାହା ପ୍ରବର୍ତ୍ତାଇ ଦେଇ ଯାଇଛନ୍ତି । ମହାଯନ୍ତ୍ର ସ୍ଥାପନ ବା କଳକବଜାର ଅଯଥା ପ୍ରଚଳନକୁ ମହାପାପ ବୋଲି କହିଅଛନ୍ତି । ଶାସ୍ତ୍ର ପୁରାଣ ଉଲ୍ଲିଖିତ ଦେବାସୁର ଯୁଦ୍ଧ ସମ୍ଭବତଃ ଏକ ଦିଗରେ ଯନ୍ତ୍ର ଅନ୍ୟ ଦିଗରେ ତନ୍ତ୍ର ବା (Soul force)ର ଯୁଦ୍ଧ ବୋଲି ଏବେ ମନେ ହେଉଛି ।

ଅନ୍ୟ ଦେଶମାନଙ୍କରେ ଜାତି ବିଭାଗ ନାହିଁ । ଇଚ୍ଛା ଅନୁସାରେ ବ୍ୟବସାୟ ଗ୍ରହଣ କରିଯାଏ । ସେଥି ନିମିତ୍ତ ସମାଜଗଠନରେ ନାନା-ପ୍ରକାର ବାଦ ବିସମ୍ବାଦ ଅସୁବିଧାକୁ ଲକ୍ଷ୍ୟ କରି ଇଂଲଣ୍ଡର ରସ୍କିନ

(Ruskin) ନାମକ ଜଣେ ଇଂରାଜୀ ପଣ୍ଡିତ ତାଙ୍କର "The Political Economy of Art" ପ୍ରବନ୍ଧରେ ଲେଖିଛନ୍ତି "The notion of discipline and interference lies at the root of all human progress or power, the "Let Alone" principle is, in all things, which man has to do with, the principle of Death", ଅର୍ଥାତ୍ ମନୁଷ୍ୟର ସର୍ବପ୍ରକାର ଉନ୍ନତି ଓ ଶକ୍ତି ସଂଚୟର ମୂଳରେ ରହିଛି ଶାସନ ଓ ଶୃଙ୍ଖଳା, ମନୁଷ୍ୟର ସମସ୍ତ ମନଇଚ୍ଛା କାମ ମୃତ୍ୟୁରେ ବାଟ ଅଟେ । ସେ ପୁଣି କହିଛନ୍ତି, ଆମର ଶାସନତନ୍ତ୍ର ବା ଆଇନ କେବଳ ଦୋଷୀର ବିଚାର କରି, ଉପଦ୍ରବ ଓ ଅପରାଧ କରିବାରେ ବାଧାଦେଇ, ଆଇନ ଭାଙ୍ଗିଲେ ଦଣ୍ଡର ବ୍ୟବସ୍ଥା କରି ସନ୍ତୁଷ୍ଟ ହୋଇ ରହିଛି । କିନ୍ତୁ ସମାଜ ଚଳାଇବାରେ ଆମେ ଯେତିକି ଯେତିକି ଆଗକୁ ଯାଉଥିବା, ଆମର ଶାସନତନ୍ତ୍ରର ସେତିକି ସେତିକି ଖାଲି ବିଚାର କରି ଦଣ୍ଡଦେଇ ସନ୍ତୁଷ୍ଟ ହୋଇ ରହିବ ନାହିଁ । ପରିବାରରେ ମା ବାପ ଯେପରି ଖାଲି ଦଣ୍ଡ ନ ଦେଇ ପିଲାର ସବୁ ପ୍ରକାର ଉନ୍ନତି ନିମିତ୍ତ ଯତ୍ନ କରନ୍ତି ସେହିପରି ଶାସନତନ୍ତ୍ର ମଧ୍ୟ ସମାଜର ଲୋକମାନଙ୍କ ନିମିତ୍ତ ବନ୍ଦୋବସ୍ତ କରିବ । ଅର୍ଥାତ୍ ଶାସନତନ୍ତ୍ର ଏପରି ନିୟମ ବାନ୍ଧିଦେବ ଯେ ଯାହାଦ୍ଵାରା ଆମେ * ଆମର ଜୀବିକା ନିର୍ଦ୍ଦେଶ କରିପାରିବୁ, ନିର୍ବୋଧତା ବା ମୂର୍ଖତାରେ ପଡ଼ିବୁ ନାହିଁ, ବିପଦ ସମୟରେ ସାନ୍ତ୍ଵନା ପାଇ ପାରିବୁ ।"

ସମାଜ କିପରି ଚଳିଲେ ସମସ୍ତେ ସୁଖ ଶାନ୍ତିରେ ରହି ପାରିବେ ପୃଥିବୀର ଅନ୍ୟ ଦେଶମାନଙ୍କରେ ବର୍ତ୍ତମାନ ଖୋଜା ଚାଲିଛି । ଉପରୋକ୍ତ ଉକ୍ତି ଏହା ସ୍ପଷ୍ଟ ଦେଖାଉଅଛି । ହିନ୍ଦୁର ସାମାଜିକ ବିଧାନ ଏପରି ନିୟମ

* National law has hitherto been only judicial, contented that is with an endeavour to prevent and punish violence and crime, but as we advance in our social knowledge, we shall endeavour to make our government paternal as well as judicial, that is to establish such laws and authorities as may at once direct us in our occupations, protect us against our follies and visit us in our distress. (Ruskin The Political Economy of Art.)

ବାନ୍ଧିଛି ଯେ ଜନ୍ମ ହେଲା ମାତ୍ରକେ ପ୍ରତ୍ୟେକେ ପ୍ରତ୍ୟେକର ଜୀବିକା ପାଇ ଯାଉଛି । ଏହା ପାରସ୍ପରିକ ପ୍ରତିଦ୍ୱନ୍ଦିତାକୁ ମୂଳପୋଛ କରି ସମାଜରେ ସୁଖ ଶାନ୍ତିର ଦ୍ୱେଜ ଛୁଟାଇ ବାଦବିସମ୍ବାଦ ଅବୋଧତାକୁ ଲୋପ କରି ଦେଇଛି; ବିପଦ ଆପଦ ସମୟରେ ନିଜ ଜାତିର ଲୋକଙ୍କ ମଧ୍ୟରେ ମନୁଷ୍ୟ ସାନ୍ତ୍ୱନା ଓ ସହାନୁଭୂତି ପାଉଛି ।

ଆମ ଦେଶରେ ଜନ୍ମ ଅନୁସାରେ ଜାତି ବିଭାଗ ଅଛି । ଅନ୍ୟ ଦେଶରେ ଶ୍ରେଣୀ ବା ଜାତି ବିଭାଗ ଧନ ଅନୁସାରେ ଦେଖାଯାଏ । ଏପରି ବିଭାଗରେ ଧନକୁ ଅତ୍ୟନ୍ତ ଅଧିକ ଗୌରବ ଦିଆହୁଏ । ଧନୀ ଦରିଦ୍ରକୁ ହୀନ ଚକ୍ଷୁରେ ଦେଖେ । ଦରିଦ୍ର ଈର୍ଷା କରେ । ଏହା ଦ୍ୱାରା ସମାଜରୁ ଶାନ୍ତି ନଷ୍ଟ ହୁଏ । ଆମ ଦେଶରେ ଏକ ଜାତିବିଶିଷ୍ଟ ଧନୀ ଦରିଦ୍ର ମଧ୍ୟରେ ଖାଇବା ପିଇବା ଏପରିକି ବିବାହ ମଧ୍ୟ ଚଳେ । ପାଶ୍ଚାତ୍ୟ ଦେଶମାନଙ୍କରେ ଧନୀ ଦରିଦ୍ର ଏକତ୍ର ଖିଆ ପିଆ କରନ୍ତି ନାହିଁ । ବିବାହ ମଧ୍ୟ କ୍ୱଚିତ୍ ହୋଇଥାଏ । ସେ ଦିନ ଗ୍ରେଟ୍‌ବ୍ରିଟେନର ରାଜା ଅଷ୍ଟମ ଏଡ଼ୱାର୍ଡ଼ ଜଣେ ସାଧାରଣ ଶ୍ରେଣୀର ସ୍ତ୍ରୀକୁ ବିବାହ କରିବାରୁ ସିଂହାସନ ଛାଡ଼ିବାକୁ ବାଧ୍ୟ ହୋଇଥିଲେ । କେବଳ ଗ୍ରେଟ୍‌ବ୍ରିଟେନ ନୁହେଁ, ଇଉରୋପର ଅନ୍ୟ ଦେଶର କେତେକ ରାଜା ଏପରି ବିବାହ କରି ହିଟହଟା ହୋଇଛନ୍ତି ।

**ଅନ୍ୟ ଧର୍ମରେ ଭେଦଭାବ ନାହିଁ, ଅଛି କେବଳ ହିନ୍ଦୁ ଧର୍ମରେ** । ଯେ ପୃଥିବୀର ଇତିହାସ ଭଲକରି ପଢ଼ିଛନ୍ତି, ସେ ଏହା କହି ପାରିବେ ନାହିଁ । ଆମ ଦେଶରେ ଯେଉଁ ପାର୍ସିମାନେ ଅଛନ୍ତି ସେମାନଙ୍କର ପୂର୍ବପୁରୁଷ ପାରସ୍ୟରୁ ଆସିଥିଲେ । ଆରବରୁ ମୁସଲମାନ ଆସି ସେମାନଙ୍କୁ କହିଲେ "ଆମର ଧର୍ମ ଗ୍ରହଣ କର । ମୁସଲମାନ ହୁଅ । ନହେଲେ ତମେ ଏଠାରେ ରହିବ ନାହିଁ ।"

ଯେ ମୁସଲମାନ ହେଲା, ସେ ସେଠାରେ ରହିଲା, ଯେ ନହେଲା, ସବୁ ଲୁଚ କରି ଅନ୍ୟତ୍ର ପଳାଇ ଆସିଲା ଏବଂ ଜୀବନ ରକ୍ଷା କଲା । ଏକଥା ଠିକ୍ ଏହିପରି, "ତମେ ଯଦି ମୋ ଭଳିଆ ନ ଚଳ, ମୋର ମତ ଗ୍ରହଣ ନକର, ତେବେ ତମେ ମୋର ଶତ୍ରୁ ।" ଏ କଥା କି ହୋଇପାରେ ? ହିନ୍ଦୁ କହେ ବ୍ରାହ୍ମଣ ତାହାର ବ୍ୟବସାୟ କରୁଛି । କ୍ଷତ୍ରିୟ ତାହାର,

ବୈଶ୍ୟ ତାହାର, ଶୂଦ୍ର ମଧ୍ୟ ତାହାର କରୁଛନ୍ତି ସମସ୍ତେ ଏକାଠି ଚଳୁଛନ୍ତି, କେହି କାହାକୁ ଘୃଣା କରୁନାହିଁ । ସେହିପରି ଆଜ ଗୋଟିଏ ଜାତି ଗାର୍ଜି ଆସିଛି । ଆସ, ସେ ତାହାର ଧର୍ମ ପାଳିବ, ପାଳୁ, ମୁସଲମାନ, ଖ୍ରୀଷ୍ଟାନ୍ ସେହିପରି ଆସୁଛନ୍ତି; ଆସନ୍ତୁ, ତାଙ୍କର ଧର୍ମ ପାଳନ୍ତୁ, କେହି କାହାକୁ ଘୃଣା କିମ୍ବା ଦ୍ୱେଷ ନକଲେ ହେଲା । ପ୍ରକୃତ ଭେଦଭାବ ରହିଛି ହିଂସା, ଦ୍ୱେଷ, ଘୃଣାରେ ଏବଂ ଅସହନଶୀଳତାରେ; ବ୍ୟବସାୟମୂଳକ ଜାତି ବିଭାଗରେ ନାହିଁ ।

ଇଉରୋପର ଇତିହାସ ପଢ, ଏକ ସମ୍ପ୍ରଦାୟର ଖ୍ରୀଷ୍ଟାନ୍ ଅନ୍ୟ ସମ୍ପ୍ରଦାୟର ଖ୍ରୀଷ୍ଟାନକୁ ପୋଡ଼ି ମାରି ଦେଇଛି । ଧର୍ମଯୁଦ୍ଧର ରକ୍ତରେ ଇତିହାସ ରଞ୍ଜିତ ହୋଇଅଛି । ବୌଦ୍ଧଧର୍ମ ଏହି ଭାରତରେ ଜନ୍ମ, ବୌଦ୍ଧ ଧର୍ମ ପ୍ରଚାରରେ କେଉଁ ହିନ୍ଦୁ କେବେବେଳେ ବାଧା ଦେଇଥିଲା କି ? ସହନଶୀଳତା ହିନ୍ଦୁ ଭାରତରେ ଯେପରି ଦେଖାଦେଇଛି ପୃଥିବୀର ଅନ୍ୟ-କେଉଁଠାରେ ସେପରି ଦେଖାଯାଇ ନାହିଁ । ତରବାରି ତାହାର ଧର୍ମରେ କେବେବେଳେ ସ୍ଥାନ ପାଇ ନାହିଁ ।

ଆମେରିକାର ଯୁକ୍ତରାଷ୍ଟ୍ର [U.S.A.] ର ସିକାଗୋ [Chicago] ସହରରେ ୧୮୯୩ ଖ୍ରୀଷ୍ଟାବ୍ଦରେ ଯେଉଁ ସର୍ବଧର୍ମ ସମ୍ମିଳନୀ (World's Parliament of Religions) ବସିଥିଲା, ସେଠାରେ ୧୧ । ୯ । ୧୮୯୩ ଦିନ ବିବେକାନନ୍ଦ ସ୍ୱାମୀ ଯେଉଁ ବକ୍ତୃତା ଦେଇ ଆମେରିକାରେ ଚହଳ ପକାଇ ଦେଇଥିଲେ, ତାହାର କିୟଦଂଶର ଓଡ଼ିଆ ଅନୁବାଦ ତଳେ ଦିଆଗଲା ।

"ଏକଥା କହିବାକୁ ମୋ ମନରେ ଟିକିଏ ଗର୍ବ ଅନୁଭବ କରୁଛି ଯେ ମୁଁ ସେହି ଜାତିର ଲୋକ ଯେଉଁ ଜାତି ସମସ୍ତ ପୃଥିବୀର ସମସ୍ତ ଧର୍ମର ନିର୍ଯ୍ୟାତିତ ଓ ଶରଣାର୍ଥୀମାନଙ୍କୁ ଆଶ୍ରୟ ଦେଇଅଛି । ରୋମାନମାନେ ଯେଉଁ ବର୍ଷ ସେମାନଙ୍କର (ଇଜ୍‌ରେଲାଇଟ୍ ବା ଇହୁଦି) ପବିତ୍ର ମନ୍ଦିରକୁ ଭାଙ୍ଗି ଧୂଳିସାତ୍ କରିଦେଲେ, ସେହିବର୍ଷ ଇଜ୍‌ରେଲାଇଟ୍ ବା ଇହୁଦିମାନେ ତାଙ୍କ ଦେଶ ଛାଡ଼ି ଦକ୍ଷିଣଭାରତରେ ଆଶ୍ରୟ ଗ୍ରହଣ କରିଥିଲେ । ଆମେ ତାଙ୍କୁ ଆମ କୋଡ଼ରେ ସ୍ଥାନ ଦେଇଅଛୁ । ପାରସ୍ୟର ଯୋରସ୍ତର ପ୍ରଚାରିତ ଧର୍ମ

ଲୁପ୍ତ ହୁଅନ୍ତାଣି, ମୋର ଧର୍ମର ଲୋକ ସେମାନଙ୍କୁ (ପାର୍ସି) ଆଶ୍ରୟ ଦେଇ ତାଙ୍କ ଧର୍ମସାଧନରେ ସାହାଯ୍ୟ ଦେଇଅଛନ୍ତି । ମୁଁ ପିଲାଦିନେ ଗୋଟିଏ ସ୍ତୋତ୍ର ବୋଲୁଥିଲି । ମୋ ଦେଶର ଲକ୍ଷ ଲକ୍ଷ ଲୋକ ଏହା ପ୍ରତିଦିନ ବୋଲନ୍ତି, ସେଇଟିକ ଆପଣମାନଙ୍କ ଆଗରେ ଥରେ ବୋଲେ "ନଦୀମାନେ ଭିନ୍ନ ଭିନ୍ନ ସ୍ଥାନରୁ ବାହାରନ୍ତି, କିନ୍ତୁ ସମସ୍ତେ ଶେଷରେ ଯାଇଁ ସମୁଦ୍ରରେ ପଡ଼ନ୍ତି । ପ୍ରଭୁ ! ଠିକ୍ ସେହିପରି ଭିନ୍ନ ଲୋକର ଭିନ୍ନ ରୁଚି ଥିବାରୁ, ବାହାରକୁ ଭିନ୍ନ ଦେଖାଗଲେ ସୁଦ୍ଧା, କିଏ ସଳଖ କିଏ ବଙ୍କା ହେଲେ ସୁଦ୍ଧା ସବୁ ଉପାସନା ତମର ଉଦ୍ଦେଶ୍ୟରେ ହୋଇଥାଏ ।"

---

# ଜାତିବିଭାଗ (୪)

ଏହାକୁ ଅନ୍ୟ ଲୋକମାନେ କିପରି ଦେଖିଅଛନ୍ତି:—'Vision of India' ନାମକ ପୁସ୍ତକରେ ସିଡ୍‌ନି ଲୋ Sydney Low ନାମକ ଜଣେ ଚିନ୍ତାଶୀଳ ପଣ୍ଡିତ ଲେଖିଅଛନ୍ତି । "ହିନ୍ଦୁ ସମାଜ ଯେ ନାନାପ୍ରକାର ରାଜ୍ୟ ବିପ୍ଳବ ଓ ପ୍ରାକୃତିକ ବିପ୍ଳବ ସତ୍ତ୍ୱେ ଶତ ଶତ ବର୍ଷ ଅଟଳ ଅଚଳ ଭାବରେ ରହିଅଛି, ତାହାର ପ୍ରଧାନ କାରଣ ହେଉଅଛି 'ଜାତି ବିଭାଗ' ଏଥିରେ ସନ୍ଦେହ ନାହିଁ । ଏହି ଜାତି ବିଭାଗ ପାଇଁ କୌଣସି ଲୋକକୁ ଜୀବିକା ନିମିତ୍ତ ଭାବିବାକୁ ହୁଏନାହିଁ । କାହାର ବନ୍ଧୁ ଅଭାବ ହୁଏନାହିଁ । ଏହି ଜାତି ଭେଦ ସମସ୍ତଙ୍କୁ ଦଳଗତ କରେ ଏବଂ ଈର୍ଷା ହାତରୁ ରକ୍ଷା କରେ । ଆଜି କାଲିର ସମସ୍ତଙ୍କର ଏକତ୍ର ହେବାର ଆଡ଼୍‌ଡା (Club), ବ୍ୟବସାୟୀ ସଂଘ (Trade union) ପ୍ରଭୃତି ଯେତେ ଯାହା ସମାଜକୁ ସାହାଯ୍ୟ ଦେବା ନିମିତ୍ତ ସୃଷ୍ଟି ହୋଇଅଛି, ଏକା ଜାତିଭେଦ କୃପାରୁ ହିନ୍ଦୁ ସେ ସମସ୍ତ ପାଇଅଛି । ଦରିଦ୍ର ଲୋକମାନଙ୍କ ନିମିତ୍ତ ଧନ ନିବାସ (Work House) ସ୍ଥାପନ କରିବା ଦରକାର ହୁଏ ନାହିଁ । ଦୁଃସ୍ଥ ଆତ୍ମୀୟସ୍ୱଜନ ଓ ବନ୍ଧୁମାନଙ୍କୁ ପାଳନ କରିବା ସର୍ବପ୍ରକାରେ କର୍ତ୍ତବ୍ୟ ବୋଲି ଏବେ ସୁଦ୍ଧା ହିନ୍ଦୁମାନେ ମାନନ୍ତି । (ପାଶ୍ଚାତ୍ୟ ଦେଶମାନଙ୍କରେ ବାହାହୋଇ ସାରିଲେ ପୁଅ ବାପମାଆଙ୍କ ଠାରୁ ଅଲଗା ହୋଇ ଅଲଗା ଘରେ ରହେ, ସେ ବୁଢ଼ା ବାପ ମାଆଙ୍କୁ ପାଳେ ନାହିଁ, ଆତ୍ମୀୟ ସ୍ୱଜନଙ୍କ କଥା ଛାଡ଼ିଦିଅ) * । ପାଚବାରିକ ଆକର୍ଷଣ ଓ ବ୍ୟବସାୟର ଆକର୍ଷଣ ଫଳରେ ଯେ ଏପରି ବୃଦ୍ଧି ହୁଏ ଏଥିରେ ଟିକିଏ ମାତ୍ର ସନ୍ଦେହ ନାହିଁ । ଜାତି ବିଭାଗ ବିନା ଭାରତ କଳ୍ପନା କରିଯାଇ ପାରେ ନାହିଁ । ଆବେ ଦୁବ୍ୱା Abbe Dubois ହିନ୍ଦୁଧର୍ମର ଘୋର ଶତ୍ରୁ, ତଥାପି ସେ ମାନିଛନ୍ତି" ଜାତି ବିଭାଗ ହିନ୍ଦୁଧର୍ମର ଶ୍ରେଷ୍ଠ ବ୍ୟବସ୍ଥା । ଏହାରି ନିମିତ୍ତ ଭାରତ ଅସଭ୍ୟତା ସମୁଦ୍ରରେ ବୁଡି ଯାଇନାହିଁ । ବରଂ ନାନାପ୍ରକାର ବାଧା ବିଘ୍ନ ସତ୍ତ୍ୱେ ବିଜ୍ଞାନ, ଶିଳ୍ପ ଓ ସଭ୍ୟତାର ଉନ୍ନତି

---

* ବନ୍ଧନୀ ମଧ୍ୟସ୍ଥ ମନ୍ତବ୍ୟ ଲେଖକଙ୍କର ।

କରି ପାରିଅଛି । ଏହା କେବଳ ଜାତି ବିଭାଗ ନିମିତ୍ତ ସମ୍ଭବ ହୋଇଅଛି ଏଥିରେ ସନ୍ଦେହ ନାହିଁ । ଜଗତ ସମ୍ମୁଖରେ ଭାରତର ଉଚ୍ଚପଦ ଜାତି-ବିଭାଗ ସମ୍ଭୂତ ।

ଜାତି ବିଭାଗରେ ସୁଶାସନ ଓ ଧର୍ମ ରକ୍ଷାହୁଏ । ଯେଉଁ ମହାଭ୍ତ ପୃଥିବୀର କେଉଁଠାରେ ଦେଖାଯାଏ ନାହିଁ ସେ ସମସ୍ତ ହିନ୍ଦୁ ପାଇଅଛି ଜାତି ବିଭାଗ ପ୍ରଥାରୁ । ଇଉରୋପରେ କେତେ ବଂଶ ଘୃଣିତ ବିବାହାଦି ଦ୍ୱାରା ନଷ୍ଟ ହୋଇଯାଇଛି । ଭାରତରେ ଏପରି କେତେବେଳେ ହୋଇ ପାରିବ ନାହିଁ ।

ସେ ଆହୁରି କହିଅଛନ୍ତି "ଭାରତରେ ଶାସ୍ତ୍ରକାରମାନେ (ଋଷି) ଜାତିବିଭାଗ ସୃଷ୍ଟି କରି ଯେଉଁ ଅକ୍ଷୁଣ୍ଣ ଗୌରବ ଲାଭ କରିଅଛନ୍ତି ତାହାର ତୁଳନା ସାରା ପୃଥିବୀରେ ନାହିଁ । ସେହି ବ୍ୟବସ୍ଥା ନିମିତ୍ତ ହଜାର ହଜାର ବର୍ଷ ହିନ୍ଦୁ ସମାଜ ବିପ୍ଳବିପ୍ଳବ ସହିତ ଯୁଦ୍ଧ କରି ଯେମିତି ଥିଲା ଠିକ୍ ସେମିତି ଭବରେ ଠିଆ ହୋଇ ପାରିଛି । ହିନ୍ଦୁମାନେ ଅନେକଥର ପରାଧୀନ ହୋଇଛନ୍ତି; କିନ୍ତୁ ବିଜେତାର ଆଚାର ବ୍ୟବହାର ସେମାନଙ୍କ ଉପରେ ଲଦି ଦେବାର ଚେଷ୍ଟା କେତେବେଳେ କିନ୍ଦୁମାତ୍ର ସଫଳ ହୋଇ ନାହିଁ ।

ଆୟୁରଲଣ୍ଡର କବି ଡାକ୍ତର କଜନ୍‌ସ (Dr. Cousins, Irish poet) କରାଚି ଠାରେ ବକ୍ତୃତା ଦେଇ କହିଥିଲେ "ଭାରତର ସଭ୍ୟତା ହେଉଛି ଆଦି ସଭ୍ୟତା, ଏହି ସଭ୍ୟତା ହେଉଛି ନିର୍ଦୋଷ । ଏହାର ଦ୍ୱାରା ମନୁଷ୍ୟ ଦୋଷ ନିର୍ମୁକ୍ତ ହୋଇ ମୁକ୍ତି ପାଏ । ଭାରତର ଯୁବକମାନେ ଏହା ସବୁବେଳେ ମନେ ରଖିବା ଉଚିତ । ଆଧୁନିକ ସଭ୍ୟତାକୁ ପରିହାରକରି ଭାରତୀୟ ସଭ୍ୟତାକୁ ମାତୃ ସଭ୍ୟତା ରୂପେ ଜଗତ ସମ୍ମୁଖରେ ଛିଡ଼ା କରାଇବା ପ୍ରତ୍ୟେକ ଭାରତୀୟ ଯୁବକର କର୍ତ୍ତବ୍ୟ ଅଟେ ।"

ପର୍ତ୍ତୁଗିଜମାନେ ପଞ୍ଚଦଶ ଶତାବ୍ଦୀରେ ଏଠାକୁ ଆସି କହିଥିଲେ "ହିନ୍ଦୁ ଧର୍ମରେ ମନୁଷ୍ୟର କେତେଦୂର ଉନ୍ନତି ହୁଏ ତାହା କଳ୍ପନା କରାଯାଇ ପାରେ ନାହିଁ । ଏପରି କି ହିନ୍ଦୁର ଅସ୍ପୃଶ୍ୟ ନୀଚଜାତିର ଲୋକମାନେ ସୁଦ୍ଧା ମିଛ ଚୋରି ଅପେକ୍ଷା ମୃତ୍ୟୁକୁ ଶ୍ରେୟସ୍କର ମଣିଥାନ୍ତି ।"

ପ୍ରାଇସ୍ କଲିଅର Price Collier ନାମକ ଜଣେ ଆମେରିକାର ଗ୍ରନ୍ଥକାର 'The East and the West' (ଦି ଇଷ୍ଟ ଆଣ୍ଡ ଦି ଓ୍ୱେଷ୍ଟ) ନାମକ ପୁସ୍ତକରେ ଲେଖିଛନ୍ତି— "କେବଳ ଭାରତରେ ଦାରିଦ୍ର୍ୟ ଅପମାନ ସୂଚକ ନ ଥିଲା । × × × ଏବେ ଭାରତର ଦେହରେ ଅର୍ଥସ୍ପୃହା ରୂପ ପାଶ୍ଚାତ୍ୟ ବିଷ ପ୍ରବେଶ କରାଯାଉଛି । ବର୍ତ୍ତମାନ ଜନ୍ମ ନାହିଁ, କର୍ମ ନାହିଁ, କେବଳ ଅଛି ପଇସା । ଭାରତରେ ଏହା କେତେବେଳେ ନ ଥିଲା । × × × ବିଦେଶୀ ଅନୁଗ୍ରହରୁ ଏହି ପାଶ୍ଚାତ୍ୟ ବିଷରେ ଭାରତ ବର୍ତ୍ତମାନ ଜର୍ଜରିତ ହେଉଅଛି ।"

A G.Gardiner (ଏ. ଜି, ଗାର୍ଡ଼ିନର) ପିଲରସ୍ ଅଫ୍ ସୋସାଇଟି [The Pillars of Society ] ନାମକ ପୁସ୍ତକରେ ଲେଖିଅଛନ୍ତି "ଭାରତର ଜାତି ବିଭାଗ ମୂଳ ସତ୍ୟ ଉପରେ ପ୍ରତିଷ୍ଠିତ । ଆମ ଜାତିଭେଦ ଧନ ଉପରେ ପ୍ରତିଷ୍ଠିତ । ଭାରତର ଜାତିଭେଦ ପ୍ରଥାକୁ ନିନ୍ଦା କରିବା ନିମିତ୍ତ ଆମର ଯେଉଁ ଦାବୀ ଅଛି ତାହାଠାରୁ ରଣଜିତ୍‌ସିଂହଜୀଙ୍କର ଆମ ଜାତିଭେଦକୁ ସଂସ୍କାର କରିବାରେ ଅଧିକତର ଦାବୀ ଅଛି ।" ଯାମନଗରର ଯାମ ବା ରାଜା ରଣଜିତ୍ ସିଂହଜୀ ବିଲାତରେ କ୍ରିକେଟ ଖେଳରେ ସର୍ବ ପ୍ରଧାନ ହୋଇ ପାରିଥିଲେ । ଧନୀ ନିର୍ଦ୍ଧନ ଭେଦ ବିଲାତରେ ବଡ଼ ଉତ୍କଟ । ସେଠାରେ ଲୋକେ ଖେଳ କୌତୁକ ଖୁବ୍ ପସନ୍ଦ କରନ୍ତି ଓ ସେଥି ନିମିତ୍ତ ବହୁତ ଖର୍ଚ୍ଚ କରନ୍ତି । ତେଣୁ କେତେ ଗରିବ ଲୋକ ଖେଳକୁ ବ୍ୟବସାୟ ସ୍ୱରୂପ ଧରି ପଇସା ରୋଜଗାର କରନ୍ତି । ଏହି ପେଷାଦାର କ୍ରିକେଟ ଖେଳାଳିଙ୍କ ସାଙ୍ଗରେ ଅନ୍ୟ ଖେଳାଳୀ ଏକାଠି ଖିଆପିଆ କରନ୍ତି ନାହିଁ । ରଣଜିତ୍ ସିଂହଜୀ ବହୁ କଷ୍ଟରେ ଏମାନଙ୍କୁ ଏକାଠି ମିଳାଇ ଦେଇଥିଲେ ।

Sir John Woodroffe (ସାର ଜନ୍ ଉଡରଫ କଲିକତା ହାଇକୋର୍ଟର ଜଜ୍ ଥିଲେ । ହିନ୍ଦୁର ତନ୍ତ୍ରଶାସ୍ତ୍ର ଆଲୋଚନା କରି ସେ ସମ୍ବନ୍ଧରେ ସେ ବଡ଼ ବଡ଼ ପୁସ୍ତକ ଲେଖିଛନ୍ତି । ପୁରୀ ମୁକ୍ତିମଣ୍ଡପ ତାହାଙ୍କୁ ତନ୍ତ୍ର ବାଚସ୍ପତି ଉପାଧି ଦେଇଥିଲେ) କହିଛନ୍ତି "ଜଣେକ ସହିତ ଅନ୍ୟ ଜଣେ ନ ଖାଇ ତାହା ସହିତ ବନ୍ଧୁତ୍ୱ କରିବା କିମ୍ବା ତାକୁ ମାନ୍ୟ କରିବା ସହଜ କଥା । ଭାରତରେ ଜାତିଭେଦ ହେତୁ ଏକ ଜାତି ଅନ୍ୟ ଜାତି ସହିତ ଆହାର ବିହାର କରିପାରେ ନାହିଁ, ଏହା ସତ, କିନ୍ତୁ ସେମାନେ

ଆପଣା ଆପଣା ମଧ୍ୟରେ ଏପରି ମିଶନ୍ତି ଯେ ଇଉରୋପୀୟମାନେ ପରସ୍ପର ଏପରି ମିଶି ପାରନ୍ତି ନାହିଁ । ଭାରତରେ ରାଜା ମହାରାଜାମାନେ ସ୍ୱଜାତିର ସାମାନ୍ୟ ଗରିବ ଲୋକ ସହିତ ଏକ ପଂକ୍ତିରେ ଖାଇବାକୁ ଆପତ୍ତି କରନ୍ତି ନାହିଁ । ପୁଣି ଅତି ଗରିବ ବ୍ରାହ୍ମଣ ସର୍ବାପେକ୍ଷା ଧନୀ ମହାରାଜା ସହିତ ଏକ ପଂକ୍ତିରେ ଖାଏ ନାହିଁ ।"

ସାର ଜନ ଉଡ୍‌ରଫ ଜାତି ବିଭାଗ ସମ୍ବନ୍ଧରେ ସତର୍କ କରି କହି ଅଛନ୍ତି "ଇଉରୋପୀୟ ସଂଘର୍ଷରେ ଆସି ହିନ୍ଦୁ ସମାଜ ଶିନଭିନ୍ ହୋଇ-ନାହିଁ ତାହା କେବଳ ଜାତି ବିଭାଗ ନିମିତ୍ତ । ସେଥି ନିମିତ୍ତ ଏହାକୁ ଉଠାଇବାରେ ସେମାନେ ସର୍ବଦା ବ୍ୟସ୍ତ । ହିନ୍ଦୁ ଧର୍ମର ନାଶ ଏବଂ ହିନ୍ଦୁ ସମାଜର ଉଚ୍ଛେଦ ସେମାନଙ୍କର ଏକମାତ୍ର ଲକ୍ଷ୍ୟ ।"

Proffesor Pearson (ପ୍ରଫେସର କାର୍ଲ ପିଅରସନ) କହିଛନ୍ତି- "ଜାତିଭେଦ ଦ୍ୱାରା ମନୁଷ୍ୟର ଜୀବିକା ନିର୍ଣ୍ଣୟ ହୁଏ । ଏକଥା ଆପାତତ· ଅନ୍ୟାୟ ବୋଲି ବୋଧ ହେଲେ ସୁଦ୍ଧା ପ୍ରକୃତିରେ ତାହା ନୁହେଁ । ଜାତି ବିଭାଗ ଥିଲେ କିଛିଦିନ ପରେ ମନୁଷ୍ୟ ସ୍ୱ ସ୍ୱ କର୍ମରେ ବିଶେଷ ଦକ୍ଷତା ଲାଭ କରେ ଏହା ଉଠାଇ ଦେଇ "ଯାହାର ଯାହା ଖୁସି" "କାମ କରି-ବାକୁ ଦେଲେ ମନୁଷ୍ୟର କାର୍ଯ୍ୟଦକ୍ଷତା ନଷ୍ଟ ହୁଏ । ଅସାଧାରଣ ଧୀସମ୍ପନ୍ନ ନହେଲେ, ଯେଉଁମାନେ ହାତକାମ କରିବାରେ ଅଭ୍ୟସ୍ତ ସେମାନଙ୍କୁ ବୁଦ୍ଧିର କାର୍ଯ୍ୟଦେଲେ ବିଶେଷ କୁଫଳ ଫଳିଥାଏ । ଅଧୁନା ପ୍ରଚଳିତ ବ୍ୟବସ୍ଥା ହେତୁ ନାନାପ୍ରକାର ଅନର୍ଥ ଘଟୁଅଛି ।"

୧୮୨୧ ମସିହା ଜୁନ ୨୮ ତାରିଖରେ ସାର ଜନ ମାଲକମ (Sir John Malcolm, Agent to the Governor General) ତାଙ୍କର ତଳିଆ କର୍ମଚାରୀମାନଙ୍କ ପାଖକୁ ଉପଦେଶ ଦେଇ ଲେଖିଥିଲେ "ଭାରତୀୟ ମାନଙ୍କର ଯହିଁ ଚରିତ୍ର ହୀନ ହୋଇଥାଏ, ତାହାର କାରଣ ହେଉଛି କୁଶାସନ ଓ ଅତ୍ୟାଚାର । ସେହି ଅତ୍ୟାଚାରରୁ ସେମାନେ ଏବେ ବହୁ ପରିମାଣରେ ମୁକ୍ତ ହେଲେଣି । ମୁଁ ଅନ୍ୟ କୌଣସିଠାରେ ଏଭଳି ଉନ୍ନତ ଜାତି ଦେଖିନାହିଁ ଯେଉଁ ଜାତିର ଲୋକମାନେ ଏପରି ଅତ୍ୟାଚାର ଓ ଶାସନର ପରିବର୍ତ୍ତନ ସତ୍ତ୍ୱେ ସେମାନଙ୍କର ଅନେକ ଗୁଡ଼ିଏ ଭଲଗୁଣ ରଖିପାରିଛନ୍ତି । ଏହି ଭଲ

ଗୁଣ ଦେଶର ଅଧିକାଂଶ ଲୋକଙ୍କଠାରେ ଦେଖାଯାଏ । ସେମାନଙ୍କର କେତେଗୁଡ଼ିଏ ସାମାଜିକ ଅନୁଷ୍ଠାନ ବଡ଼ ସୁନ୍ଦର; ବିଶେଷତଃ ଜାତିବିଭାଗ ନିମିତ୍ତ ସେମାନେ ଏପରି ନୈତିକତାର ଉଚ୍ଚସ୍ତରକୁ ଉଠିଛନ୍ତି ।” × ×

ଏହିପରି ଶତ ଶତ ଉଦାହରଣ ଦିଆଯାଇପାରେ, ସବୁତକ ଏଠାରେ ଲେଖିଲେ ଏ ପୁସ୍ତକ ଅତି ପ୍ରକାଣ୍ଡ ହୋଇଯିବ ।

---

# ଜାତିବିଭାଗ [୭]

ଜାତିବିଭାଗ ନିମିତ୍ତ ହିନ୍ଦୁ ଏତେ ଅତ୍ୟାଗ୍ରହ, ଏତେ ଶାସନ ପରିବର୍ତ୍ତନ ସତ୍ତ୍ୱେ ତାହାର ନିଜତ୍ୱ ଅକ୍ଷୁର୍ଣ୍ଣ ରଖିଛି କପରି ?

ହିନ୍ଦୁ ମହାଯନ୍ତ୍ର ସ୍ଥାପନକୁ ପାପ ମନେ କରି ଜାତିବିଭାଗ ଗ୍ରହଣ କଲା । ମନେକର ସେ ଆଧୁନିକ ଯୁଗର ଯନ୍ତ୍ର ଓ ବଡ ବଡ଼ କାରଖାନା ଗ୍ରହଣ କରିଥାନ୍ତା । ଯୁଦ୍ଧ ହେଲା ସେ ପରାସ୍ତ ହେଲା, ସହରରେ ସ୍ଥାପିତ କାରଖାନା ଚୂରମାର ହେଲା କିମ୍ବା ଶତ୍ରୁ ହାତରେ ପଡ଼ିଲା, ତେବେ କେତେ ଲୋକଙ୍କର ଦାନାପାଣି ମୁହୂର୍ତ୍ତିକେ ଗୁଲିଗଲା । ପୁଣି କାରଖାନା ବସାଇବା କାଠିକର ପାଠ । ଶତ୍ରୁ ମଧ୍ୟ ଏହା କରାଇ ଦିଅନ୍ତା ନାହିଁ । କାରଖାନା ନିର୍ଭରଶୀଳ ଲୋକେ କାରଖାନା ଚଳାଇବା ବିଦ୍ୟା ଓ ତତ୍ ସଂଲଗ୍ନ ଦାନାପାଣି ହରାଇ ବାଉଳି ବାଉଳି ହୁଅନ୍ତେ । ଦାସତ୍ୱର ଶୃଙ୍ଖଳ ଆହୁରି ଦୃଢ଼ତର ହୁଅନ୍ତା । ଜାତି ବିଭାଗରେ ଏହା ସମ୍ଭବ ନୁହେଁ । ରାଷ୍ଟ୍ରବିପ୍ଲବ ହେଉ, ଦଶଥର, ଶହେଥର, ଜାତି ବିଭାଗ ସଂଲଗ୍ନ କୁଟୀରଶିଳ୍ପ ସହଜରେ ଭାଙ୍ଗିଯିବ ନାହିଁ । ଭାରତରେ ଏପରି ଶତ ଶତ ରାଷ୍ଟ୍ର ବିପ୍ଲବ ହୋଇଯାଇଛି । ବଙ୍ଗଦେଶର ଭାବୁକ, ଲେଖକ ଭୂଦେବ ମୁଖୋପାଧ୍ୟାୟ ତାଙ୍କର ସାମାଜିକ ପ୍ରବନ୍ଧରେ ଲେଖିଛନ୍ତି "ଜାତିଭେଦ ପ୍ରଚଳିତ ଥିବାରୁ ଭାରତର ସମୁଦାୟ ଶିଳ୍ପକାର୍ଯ୍ୟ ବହୁ ପୂର୍ବକାଳରୁ ଅପରିସୀମ ଉତ୍କର୍ଷ ଲାଭ କରିଅଛି ଏବଂ ସମସ୍ତ ପୃଥିବୀରେ ତୁଳନାରହିତ ହୋଇ ରହିଅଛି ।" ଯନ୍ତ୍ର ଦରକାର, କିନ୍ତୁ ତାହା ଯଦି କୁଟୀରଶିଳ୍ପର ପ୍ରତିଦ୍ୱନ୍ଦ୍ୱୀ ହୁଏ, ତେବେ ତାହା ପରିଣାମରେ ମାରାତ୍ମକ ହୁଏ ।

ଯନ୍ତ୍ରଶିଳ୍ପର ଅବାଧ ପ୍ରସାର ନିମିତ୍ତ ଆମର କୁଟୀର ଶିଳ୍ପ ଅସ୍ତ ବ୍ୟସ୍ତ ହୋଇଗଲା । ମହାତ୍ମା ଗାନ୍ଧି ସେଥି ନିମିତ୍ତ ଚରଖା ଉପରେ ଏତେ ଯୋର ଦେଇଥିଲେ । କୁଟୀର ଶିଳ୍ପରେ ସମସ୍ତେ ଯଦି ସ୍ୱାବଲମ୍ବୀ ହୋଇ ଯାଇଥାନ୍ତେ ବିଦେଶୀ ସରକାର ସେମାନଙ୍କର କିଛି କରି ପାରି ନଥାନ୍ତା, ଏହା ମହାତ୍ମାଙ୍କଙ୍କର ଦୃଢ଼ ବିଶ୍ୱାସ ଥିଲା ।

ପଶ୍ଚିମ ପଞ୍ଜାବ ଓ ପୂର୍ବ ବଙ୍ଗରେ ଅଧିକାଂଶ ଲୋକେ ବୌଦ୍ଧ ହୋଇଯାଇଥିଲେ । ଜାତିବିଭାଗ ତେଣୁ ଶିଥିଳ ହୋଇଯାଇଥିଲା । ତେଣୁ ମୁସଲମାନ ଧର୍ମ ଉକ୍ତ ଅଞ୍ଚଳରେ ସହଜରେ ବ୍ୟାପିଗଲେ । ଭାରତର ଅନ୍ୟ କୌଣସି ଅଞ୍ଚଳରେ ଏପରି ହୋଇନାହିଁ ।

ଜାତିବିଭାଗ ହିନ୍ଦୁର ଏକ ସାମାଜିକ ପ୍ରଥା; ଧର୍ମ ସହିତରେ ଏହାର ସମ୍ବନ୍ଧ ନାହିଁ । ହିନ୍ଦୁ ଧର୍ମର ଦୁଇଟି ଶାଖା ଅଛି (୧) କର୍ମକାଣ୍ଡ ଓ (୨) ଆଧ୍ୟାତ୍ମିକ (Ceremonial and spiritual) । ଏହି ଆଧ୍ୟାତ୍ମିକ କ୍ଷେତ୍ରରେ ଜାତି ନାହିଁ । ବ୍ରାହ୍ମଣ ଓ ଚଣ୍ଡାଳ ଉଭୟ ସନ୍ନ୍ୟାସୀ ହୋଇପାରନ୍ତି ସନ୍ନ୍ୟାସୀଙ୍କର ଜାତି ନାହିଁ । କଥା ଓଡ଼ିଆରେ "ବାରଜାତି ତେରଗୋଳ, ବୈଷ୍ଣବ ହେଲେ ସବୁ ଗଲା" । ଜାତିପ୍ରଥା ସମାଜରୂପ ଦେହର ଏକ ବିଚକ୍ଷଣ ସୁକଳ୍ପିତ ଶ୍ରମ ବିଭାଗ; ଦେହ ନିମିତ୍ତ ମସ୍ତିଷ୍କ ହୃଦୟ ଯନ୍ତ୍ର ପ୍ରଭୃତି ଯେପରି ଲୋଡ଼ା, ଚମ ନଖ ବାଳ ସେହିପରି ଲୋଡ଼ା । **କାଳକ୍ରମେ ଏଥିରେ ଉଚ୍ଚ ନୀଚତା ପଶିଯାଇଛି । ଏହାକୁ ହିଁ ସଂସ୍କାର କରିବାକୁ ହେବ, ଏହା କଲେ ପୁଞ୍ଜିବାଦ; ସାମ୍ୟବାଦ ପ୍ରଭୃତି** (Capitalism, Socialism. Communism) **ଭୂଆ ଉଠିପାରିବ ନାହିଁ ।**



# ତୁଳସୀ

ହିନ୍ଦୁ ତୁଳସୀ ଗଛକୁ ପୂଜା କରେ । ଘର ଅଗଣାରେ ତୁଳସୀ ଗଛ ନଥିଲେ ହିନ୍ଦୁ ଘରକୁ ଅପବିତ୍ର ମନେ କରେ । ହିନ୍ଦୁ ଚକ୍ଷୁରେ ଏହାର ଚେର, ମୂଳ, କାଠ, ପତ୍ର, ମଞ୍ଜରୀ ଓ ଫୁଲ ସବୁ ପବିତ୍ର । ଏପରିକି ତୁଳସୀ ମୂଳର ମାଟି ମଧ୍ୟ ପବିତ୍ର ।

ତୁଳସୀର ଅର୍ଥ ହେଉଛି (ତୁଳ = ତୁଳା = ସାଦୃଶ୍ୟ + ସୋ ଧାତୁ = ନାଶକରିବା + ଅ + ସ୍ତ୍ରୀ ଲିଙ୍ଗ ଈ ପ୍ରତ୍ୟୟ) ଯାହାର ପୃଥିବୀରେ ତୁଳନା ନାହିଁ, ଯେ ତାହାର ସମସ୍ତ ପ୍ରକାର ସାଦୃଶ୍ୟକୁ (ତୁଳନା) ନାଶ କରିଅଛି । ଏପରି ଗୋଟିଏ ନାମ କାହିଁକି ଦିଆହେଲା ? ଏହା କବି କଳ୍ପନା ପରି ଅତି ରଞ୍ଜନ ନା ହିନ୍ଦୁର ସ୍ୱାଭାବିକ ଭାବ ପ୍ରବଣତା ?

ତୁଳସୀର ଗୁଣ ବିଚାର କରିବା ପୂର୍ବରୁ ଏଠାରେ ଏହାର ଉଲ୍ଲେଖ ଆବଶ୍ୟକ ଯେ ଆମର ପୂର୍ବ ପୁରୁଷଙ୍କର ବିଜ୍ଞାନ ଜ୍ଞାନ ଅସାଧାରଣ ଥିଲା । ସେମାନେ ଏ ଦିଗରେ ଯେତେ ଅଗ୍ରସର ହୋଇଥିଲେ, ଏ ଯୁଗର ଇଉରୋପୀୟ ସଭ୍ୟତାପ୍ରସୂତ ବିଜ୍ଞାନ ଏପର୍ଯ୍ୟନ୍ତ ସେତେଦୂର ଯାଇନାହିଁ । ସେହି ଜ୍ଞାନ ନିମିତ୍ତ ସେ କାହାକୁ ହେୟଜ୍ଞାନ କରୁନଥିଲେ; ବରଂ କରି ପାରୁନଥିଲେ ! ସେ କାଠ, ପଥର ଗଣ୍ଠରେ ଜୀବନ ଦେଖିଥିଲେ । ଏ କଥା ପଚିଶ ବର୍ଷ ତଳେ କହିଥିଲେ ଲୋକେ ହସି ବିଦ୍ରୂପ କରି ଏହା ଉଡ଼ାଇ ଦେଇଥାନ୍ତେ । ବର୍ତ୍ତମାନ ତାହା କରି ପାରିବେ ନାହିଁ । ସ୍ୱର୍ଗୀୟ ଆଚାର୍ଯ୍ୟ ଜଗଦୀଶଚନ୍ଦ୍ର ବୋଷ ପୃଥିବୀ ସମକ୍ଷରେ ପ୍ରମାଣ କରି ଦେଇଅଛନ୍ତି ବୃକ୍ଷ ଲତାର ମନୁଷ୍ୟ ପଶୁପକ୍ଷୀ ପରି ପ୍ରାଣ ଓ ଅନୁଭୂତି ଅଛି । ସେ ସୁଖ, ଦୁଃଖ ହସ କାନ୍ଦ ବୋଧ କରେ । କଲିକତାରେ ପ୍ରତିଷ୍ଠିତ ତାଙ୍କର ଗବେଷଣା- ଗାର ସମ୍ମୁଖରେ ଗୋଟିଏ ବଡ଼ ବରଗଛ ଅଛି । ସେ ତାକୁ ଅନ୍ୟଠାରୁ ଉପାଡ଼ି ନେଇ ଆସି ତାଙ୍କର ସେଠାରେ ରଖିଛନ୍ତି । ବଡ଼ଗଛ ଉପାଡ଼ିଲେ ମରିଯିବ । କିନ୍ତୁ ସେ ମଲା ନାହିଁ । ମନୁଷ୍ୟର ଅପରେଶନ ସମୟରେ କ୍ଲୋରୋ-

ଫର୍ମ ଦେଇ ତାଙ୍କୁ ଯେପରି ଅଜ୍ଞାନ କରାଯାଏ ଏବଂ ଅଜ୍ଞାନ ଅବସ୍ଥାରେ ଦେହର କୌଣସି ଅଙ୍ଗ କଟାହେଲେ ସେ ଯେପରି କଷ୍ଟ ଜାଣି ପାରେ ନାହିଁ- କଷ୍ଟ ଜାଣୁଥିଲେ ସେ ମରି ଯାଉଥାନ୍ତା— ଠିକ ସେହିପରି ସେ ବରଗଛକୁ କ୍ଲୋରୋଫର୍ମ ଦେଇ ଅଜ୍ଞାନ କରି ଉପାଡ଼ି ଆଣିଥିଲେ ଏବଂ ତାହା ଏପର୍ଯ୍ୟନ୍ତ ବଞ୍ଚିଛି । ବୃକ୍ଷଲତା ଖାଲି ଯେ ସୁଖ ଦୁଃଖ ଅନୁଭବ କରି ପାରନ୍ତି ତାହା ନୁହେଁ ନର ନାରୀ ପରି ପ୍ରେମ ମଧ୍ୟ କରି ପାରନ୍ତି । ଏହା ସେ ପ୍ରମାଣ କରି ଦେଇ ଯାଇଅଛନ୍ତି । ଖାଲି କାଗଜ କଲମରେ ନୁହେଁ, ଯନ୍ତ୍ର ଉଦ୍ଭାବନ କରି ସେହି ଯନ୍ତ୍ର ସାହାଯ୍ୟରେ, ପୃଥିବୀର ବୈଜ୍ଞାନିକମଣ୍ଡଳୀ ସମକ୍ଷରେ!

ହିନ୍ଦୁ ଗଛ ପତ୍ରରେ ଜୀବନ ଦେଖି ପାରିଥିଲା ଏବଂ ବୁଝିଥିଲା ଏହି ଦୁନିଆଁରେ—ମନୁଷ୍ୟ, ପଶୁ , ପକ୍ଷୀ, କୀଟ, ପତଙ୍ଗ—ସମସ୍ତଙ୍କର ଜୀବନ ନିର୍ଭର କରେ ସେହି ଉଦ୍ଭିଦ-ଜଗତ ଉପରେ । ହିନ୍ଦୁର ମୁନି ଋଷିମାନେ, ଧାର୍ମିକ ବ୍ରାହ୍ମଣମାନେ କୃଷିକାର୍ଯ୍ୟକୁ ପାପ ମନେ କରୁଥିଲେ । କାରଣ କର୍ଷଣ ଦ୍ୱାରା ଲକ୍ଷ ଲକ୍ଷ ଭୂମିମଧ୍ୟସ୍ଥ ଜୀବ ନଷ୍ଟ ହୋଇଯାନ୍ତି । ସେମାନେ ବିନା ଚାଷ ଉପଜାତ ନୀବାର (ବାଲୁଙ୍ଗା) ଫଳ ମୂଳ ଖାଇ ଜୀବନ ଧାରଣ କରୁଥିଲେ । ବାଲ୍ମୀକି ବନବାସିତା ସୀତାଙ୍କୁ କହିଥିଲେ— "ନୀବାର ଯଜ ଜାତ ବିନା କର୍ଷଣେ, ଯତ୍ନେ ଆହରି ଫଳ ପୂଜା ସୁମନେ; ତୋ ନବଶୋକ ମୁନି କୁମାରୀ-ଗଣ, ହରିବେ ଭାଷି ମୃଦୁ ମଧୁ ବଚନ ।" ହିନ୍ଦୁ ଗଛରୁ ପତ୍ର ତୋଳିଲେ କିମ୍ବା ଡାଳକାଠି ଭାଙ୍ଗିଲେ ସୂକ୍ଷ୍ମ ମନ୍ତ୍ରୋଚ୍ଚାରଣ କରି ଏହା କରେ । ଏହି ମନ୍ତ୍ର ଗଛଠାରେ କୃତଜ୍ଞତା ପ୍ରକାଶ ଛଡ଼ା ଆଉ କିଛି ନୁହେଁ । ଏହା ତ ହେଲା ସମସ୍ତ ଉଦ୍ଭିଦ ଜଗତ ସହିତ ହିନ୍ଦୁର ସମ୍ବନ୍ଧ । କିନ୍ତୁ ଯେଉଁ ଉଦ୍ଭିଦରେ ସେ ବିଶେଷ କିଛି ଗୁଣ ଦେଖିଥିଲା ତାକୁ ଆଦରରେ ସାଇତି ରଖୁଥିଲା କିମ୍ବା ସମ୍ମାନ ଦେଖାଉଥିଲା ।

ଏ କାଳର ବିଜ୍ଞାନଦ୍ୱାରା ପ୍ରମାଣ କରିବାର ଶକ୍ତି ଆମ୍ଭମାନଙ୍କର ନାହିଁ । ହିନ୍ଦୁ ଋଷିମାନେ ଯୋଗବଳରେ ଜାଣିଥିଲେ ଯେ ପୃଥିବୀରେ ତୁଳସୀ ହେଉଛି ଏକମାତ୍ର ଉଦ୍ଭିଦ ଯାହା ମନୁଷ୍ୟର ଆତ୍ମା ଉପରେ କାର୍ଯ୍ୟ କରିପାରେ । ଏ ଶକ୍ତି ଅନ୍ୟ କେଉଁ ବୃକ୍ଷଲତାରେ ନାହିଁ । ତେଣୁ ଏହା ତୁଳନାହୀନ ହୋଇଥିବାରୁ ତୁଳସୀ ନାମ ପାଇଅଛି । ପଦ୍ମପୁରାଣରେ

ଦ୍ୱାବିଂଶ ଅଧ୍ୟାୟରେ ଅଛି—ପ୍ରତ୍ୟହ ତୁଳସୀ ଜଳ କରଇ ଯେ ପାନ, ବ୍ୟାଧି ତାଙ୍କୁ ନ ବାଧଇ ପାପ ହୁଏ ମ୍ଳାନ।" ଯଜ୍ଞ, ବ୍ରତ, ପିତୃ ପୂଜା, ହରିର ଅର୍ଚ୍ଚନା, ସଫଳ ନୁହଇ ତୁଳସୀର ପତ୍ରବିନା।" ତୁଳସୀ ପତ୍ରର ଜର୍ମ ବା ଜୀବାଣୁ ନାଶକ ଗୁଣଥିବାରୁ ପ୍ରତ୍ୟେକ ପୂଜା ପଦାର୍ଥରେ ଏହା ଦିଆଯାଏ। ଏହା ଜୀବାଣୁ ନାଶକ, ବାୟୁଶୋଧକ, ମେଲେରିଆ ଜ୍ୱରନାଶକ, (ଘର ଅଗଣାରେ ବହୁତ ଗୁଡ଼ିଏ ତୁଳସୀ ଗଛ ରଖିଲେ ମଶାଙ୍କ ଉପଦ୍ରବ କମି-ଯାଏ), କଫନାଶକ, ତେଜସ୍କର ଓ ବୀର୍ଯ୍ୟବର୍ଦ୍ଧକ । ଏହାର ପତ୍ରରେ Iodine (ଆଇଓଡ଼ିନ) ଅଛି। ମନୁଷ୍ୟ କଣ୍ଠ ନିକଟସ୍ଥ ଥାଇରଏଡ୍ ଗ୍ଲାଣ୍ଡରୁ ଆଇଓଡ଼ିନ ବାହାରେ ଏବଂ ଏହା ଏପରି ଗୁଣକର ଯେ ଡାକ୍ତରମାନେ ଏବେ କହୁଛନ୍ତି, ନିଆଁ ଜଳିବାକୁ ଅକ୍ସିଜେନ ଯେପରି ନିତାନ୍ତ ଦରକାର ମନୁଷ୍ୟକୁ ସୁସ୍ଥ ସବଳ ରଖିବା ନିମିତ୍ତ ଥାଇରଏଡ୍ (Thyroid) ଗ୍ଲାଣ୍ଡରୁ ବାହାରୁଥିବା ରସ (Iodine) ସେପରି ଦରକାର। ସମ୍ଭବତଃ ଆଇଓଡ଼ିନ ଯୁକ୍ତ ତୁଳସୀ ଥାଇରଏଡ୍‌କୁ ମଜବୁତ କରେ। ସେଥି ନିମିତ୍ତ ବୋଧହୁଏ ହିନ୍ଦୁ ତୁଳସୀମାଳ ଗଳଲଗ୍ନ କରି ଲଗାଏ।

ତୁଳସୀ ମହା ବିଷନାଶକ ବୋଲି ଶାଳଗ୍ରାମ ନିଘଣ୍ଟୁରେ ଲେଖା ଅଛି। ତୁଳସୀ ପତ୍ର ରସ (ନିର୍ଜଳ) ମୁଣ୍ଡ, ବେକ, ଗୁହ୍ଣ, ନାଭି ଉପରେ ପ୍ରତି ୫।୧୦ ମିନିଟରେ ଘଷି ଓ ପ୍ରତି ୧୫ ମିନିଟରେ କଦଳି ବାଉଁଶ ରସ ପିଆଇ ଜଣେ ସର୍ପଦଷ୍ଟ ଲୋକକୁ ବେହୋସ ଅବସ୍ଥାରୁ ସମ୍ପୂର୍ଣ୍ଣ ସୁସ୍ଥ କରାଯାଇ ଥିଲା।



# ପିତୁଳାପୂଜା (୨)

ହିନ୍ଦୁମାନଙ୍କୁ ଅନ୍ୟ ଧର୍ମର ଲୋକମାନେ କହନ୍ତି ହିନ୍ଦୁର ଜଡ଼ ବୁଦ୍ଧି । ସେ ଜଡ଼ ପଦାର୍ଥକୁ ପୂଜା କରେ କାଠ, । ପଥର କଣ୍ଢେଇକୁ ଦେଉଳରେ ଥୁଏ । ଫୁଲ, ଚନ୍ଦନ, ଧୂପ, ଦୀପ ପ୍ରଭୃତି ପୂଜାରେ ସେହି କାଠ, ପଥରକୁ ଦିଆଯାଏ । ଯେଉଁମାନେ ନିରାକାର ଈଶ୍ୱରଙ୍କୁ ଏପରି କାଠ ପଥର କରି ପୂଜା କରନ୍ତି ସେମାନେ ଈଶ୍ୱରଙ୍କୁ ପୂଜା କରନ୍ତି ନାହିଁ, ବରଂ ଏହାଦ୍ୱାରା ତାଙ୍କୁ ଅପମାନ ଦିଅନ୍ତି ।

ଈଶ୍ୱର ଓ ତାଙ୍କର ପୂଜା ସମ୍ବନ୍ଧରେ କିଛି ଆଲୋଚନା କରିବା ପୂର୍ବରୁ ତାଙ୍କର ସୃଷ୍ଟି ବା କାର୍ଯ୍ୟ ସମ୍ବନ୍ଧରେ କିଛି ଧାରଣା କରିବା ଆବଶ୍ୟକ ।

ଆମେ ଯେଉଁ ପୃଥିବୀ ଉପରେ ଘର କରି ରହିଅଛେଁ ତାହା ଏତେ ବଡ଼ ଯେ ତାହା ସମ୍ବନ୍ଧରେ ଗୋଟାଏ ସ୍ପଷ୍ଟ ଧାରଣା ଖୁବ୍ କମ ଲୋକଙ୍କର ଅଛି । ସୂର୍ଯ୍ୟଠାରୁ ଆମେ ଆଲୋକ ପାଉ, ସୂର୍ଯ୍ୟ ନଥିଲେ ଆମ ପୃଥିବୀ କ୍ଷଣେମାତ୍ର ରହିପାରିବ ନାହିଁ । ଯେଉଁମାନେ ଗ୍ରହ ନକ୍ଷତ୍ର ସମ୍ବନ୍ଧରେ ଆଲୋଚନା କରିଅଛନ୍ତି ସେମାନେ ଏହା ପ୍ରମାଣ କରି ଦେଇଅଛନ୍ତି ଯେ ସୂର୍ଯ୍ୟ ଏକା ଆକାଶରେ ଉଦୟ ଅସ୍ତ ହେଉନାହିଁ, ସୂର୍ଯ୍ୟ ତାହାର ୯ଟି ଗ୍ରହ ଚାରିପାଖେ ଘୂରାଇ ଆକାଶରେ ବୁଲୁଅଛି । ଆମ ପୃଥିବୀ ସେହି ଗ୍ରହ-ମାନଙ୍କ ଭିତରୁ ଗୋଟିଏ । ସୂର୍ଯ୍ୟ ଆମ ପୃଥିବୀକୁ ଯେପରି ଆଲୁଅ ଉଷୁମ ଦେଉଅଛି ଅନ୍ୟାନ୍ୟ ଗ୍ରହଗୁଡ଼ିକୁ ସେପରି ମଧ୍ୟ ଦେଉଅଛି । ପଣ୍ଡିତମାନେ ସ୍ଥିର କରିଅଛନ୍ତି ଯେ ପୃଥିବୀଠାରୁ ସୂର୍ଯ୍ୟ ଏତେ ଦୂରରେ ଅଛି ଯେ ଯଦି ଗୋଟାଏ ରେଳଗାଡ଼ି ଘଣ୍ଟାକେ ୧୦୦ ମାଇଲ ବେଗରେ ଯାଏ ଓ ଏପରି ଦିନରାତି ସବୁବେଳେ ଚାଲେ ତେବେ ତାକୁ ପୃଥିବୀଠାରୁ ସୂର୍ଯ୍ୟ ପାଖରେ ପହଞ୍ଚିବାକୁ ପ୍ରାୟ ୧୦୦ ବର୍ଷ ଲାଗିଯିବ ।

ପୁଣି ସେହି ସୂର୍ଯ୍ୟ ଆମ ପୃଥିବୀଠାରୁ ଏତେ ବଡ଼ ଯେ ତାହା ମନରେ ଭାବି ହେଉନାହିଁ । ଶହେ ହଜାରରେ ଏକ ଲକ୍ଷ ହୁଏ । ସୂର୍ଯ୍ୟ

ପୃଥିବୀଠାରୁ ତେର ଲକ୍ଷଗୁଣ ବଡ଼ । ଜଣେ ଶିକ୍ଷକ ଏହା ପିଲାଙ୍କୁ କହିବାରୁ ପିଲାଏ କହିଲେ "ଆମ ମନରେ ଏଥିରେ ଗୋଟାଏ ସଫା ଧାରଣା ହେଉ ନାହିଁ" । ଶିକ୍ଷକ ତେଣୁ ଭାବିଲେ ଓ ବ୍ୟବସାବକରି ତହିଁଆରଦିନ ସାଢ଼େ ସାତ ମହଣ ଗହମ ଗୋଟିଏ କଣରେ ରଖିଦେଲେ ଓ ତା ପାଖରେ ଗୋଟିଏ ଗହମ ଥୋଇ ପିଲାଙ୍କୁ କହିଲେ—" ଏହି ଗୋଟିକ ଗହମ ଯଦି ପୃଥିବୀ ହୁଏ, କଣରେ ଥୁଆ ହୋଇଥିବା ସାଢ଼େ ସାତମହଣ ଗହମ ହେଉଛି ସୂର୍ଯ୍ୟ । ଏଥିରୁ ଆମେମାନେ ଅନୁମାନ କରି ପାରିବା ସୂର୍ଯ୍ୟ କେତେ ବଡ଼ ।

ଆକାଶରେ ଆମେ କେତେ ନା କେତେ ତାରା ଦେଖୁଁ । ଗ୍ରହଗୁଡ଼ିକୁ ଛାଡ଼ ଦିଅ, ଏହି ତାରାମାନେ ଆମର ସୂର୍ଯ୍ୟପରି ଗୋଟିଏ ଲେଖାଏଁ ସୂର୍ଯ୍ୟ । ଆମ ସୂର୍ଯ୍ୟ ପୃଥିବୀଠାରୁ ଯେପରି ଲକ୍ଷ ଲକ୍ଷ ଗୁଣ ବଡ଼, ସେପରି ସେହି ତାରା ମାନଙ୍କ ମଧ୍ୟରେ ଏପରି ଅନେକ ତାରା ଅଛନ୍ତି ଯେଉଁମାନେ ଆମ ସୂର୍ଯ୍ୟ ଠାରୁ ଲକ୍ଷ ଲକ୍ଷ ଗୁଣ ବଡ଼ । ସୂର୍ଯ୍ୟ ଯେପରି ଆମ ପୃଥିବୀଠାରୁ ବହୁଦୂରରେ ଅଛି, ସେପରି ଆକାଶରେ ତାରାମାନେ ମଧ୍ୟ ପରସ୍ପରଠାରୁ ବହୁଦୂରରେ ଅଛନ୍ତି । ଆଲୁଅ ପ୍ରତି ସେକେଣ୍ଡରେ ଏକଲକ୍ଷ ଛୟାଅଶି ହଜାର ମାଇଲ ଆସିପାରେ, ସୂର୍ଯ୍ୟଠାରୁ ଆମ ପୃଥିବୀକୁ ଆଲୁଅ ଆସିବାକୁ ୮ମିନିଟ୍ ଲାଗେ । ସୂର୍ଯ୍ୟ ଉଦୟ ହେବାର ୮ମିନିଟ୍ ପରେ ଆମେ ତାକୁ ଦେଖିବାକୁ ପାଉଁ । ଅସ୍ତ ହେବାର ୮ ମିନିଟ୍ ପର୍ଯ୍ୟନ୍ତ ସୂର୍ଯ୍ୟ ଆକାଶରେ ଦେଖାଯାଉଥାଏ । ଆକାଶରେ ଏପରି ଗୋଟିଏ ଗୋଟିଏ ତାରା ଅଛନ୍ତି, ଯାହାଠାରୁ ଆଲୁଅ ପୃଥିବୀରେ ପହଞ୍ଚିବାକୁ ୨୦୦।୩୦୦ ବର୍ଷ କିମ୍ବା ତାହାଠାରୁ ଅଧିକ ସମୟ ଲାଗେ । ସେ ନକ୍ଷତ୍ର ଯଦି ଏହିକ୍ଷଣି ସେ ସ୍ଥାନରୁ ଲିଭିଯିବ, ଆମେ ୨୦୦ ୩୦୦ ବର୍ଷ ପର୍ଯ୍ୟନ୍ତ ସେ ତାରା ସେଠାରେ ଦେଖିପାରୁଥିବା ।

ଆକାଶରେ ଆମେ ଯେଉଁ ହାତିଦାଣ୍ଡ ବା ଛାୟାପଥ ଦେଖୁଁ, ତାହା କଅଣ ? ସେଠାରେ ବା ସେ ବାଟରେ ଏତେ ଲକ୍ଷ ଲକ୍ଷ କୋଟି କୋଟି ତାରା ଅଛନ୍ତି ଯେ ଆମେ ତାଙ୍କୁ ଗଣିପାରିବା ନାହିଁ । ଦୂରରୁ ସେଗୁଡ଼ିକ ଲଗାଲଗି ହୋଇ ମେଘପରି ଦେଖାଯାନ୍ତି । ତେଣୁ ଆମ ଲୋକେ କହନ୍ତି— "କେ ଗଣି ପାରିବ ଆକାଶ ତାରା, କେ ଗଣି ପାରିବ ବରଷା ଧାରା ।"

ଆମ ପୃଥିବୀଟି ସୂର୍ଯ୍ୟଙ୍କୁ ଦେଖିଲେ ଯେପରି ଛୋଟ, ଏପରି ଅନେକ ତାରା ଅଛନ୍ତି ଯାହାଙ୍କୁ ଦେଖିଲେ ଖାଲି ଆମ ସୂର୍ଯ୍ୟ ନୁହେଁ, ସୂର୍ଯ୍ୟ ଓ

ତାର ସମସ୍ତ ଗ୍ରହ ଉପଗ୍ରହମାନେ ଏକାଠି ସେପରି କମ୍ବା ତାହାଠାରୁ ଅଧିକ ଶ୍ରେଷ୍ଠ ଦେଖାଯିବେ । ସେହି ଅତି ବଡ଼ ତାରାମାନଙ୍କର କେଜାଣି କେତେ ଗ୍ରହ ଉପଗ୍ରହ ନଥିବେ : ପୁଣି ସେହି ଅତି ବଡ଼ ତାରାମାନଙ୍କଠାରୁ ଆହୁରି ଅତି ବଡ଼ ତାରା ଅଛନ୍ତି ଯାହାକୁ ଦେଖିଲେ ସେହି ଅତି ବଡ଼ ତାରାମାନେ ଧୂଳି ବାଲି ପରି ଦେଖାଯିବେ । ଏହିପରି ଅନନ୍ତ ଆକାଶରେ କେତେବଡ଼, ଅତିବଡ଼, ଆହୁରି ଅତିବଡ଼, ପୁଣି ତାହାଠାରୁ ବଡ଼ରୁ ବଡ଼ କେତେ ତାରା ବା ସୂର୍ଯ୍ୟ, ଗ୍ରହ, ଉପଗ୍ରହ ରହିଅଛନ୍ତି ତାହା କଳନା କରିହେଉ ନାହିଁ ବା ହେବ ନାହିଁ ।

ଆମ ପୃଥିବୀରେ କେତେ ଲକ୍ଷ ଲକ୍ଷ କୋଟି କୋଟି ପ୍ରକାର ପ୍ରାଣୀ ରହିଅଛନ୍ତି, ଯାଉଛନ୍ତି, ଆସୁଛନ୍ତି ପ୍ରତି ମୁହୂର୍ତ୍ତରେ; ଅନନ୍ତକାଳରୁ ଅନନ୍ତ ସୃଷ୍ଟି ଚାଲିଛି, ମାଛ ପାଣିରେ ରହିପାରେ; ମନୁଷ୍ୟ ପାଣି ଭିତରେ ମରି ଯିବ । ଆମେ ମନେ କରୁଛୁ ସମ୍ଭବତଃ ସୂର୍ଯ୍ୟମଣ୍ଡଳରେ କେହି ପ୍ରାଣୀ ନଥିବେ, କେ ଜାଣି ସେଠାରେ ଏପରି ପ୍ରାଣୀ ଥିବେ ଓ ସେମାନଙ୍କର ଦେହ ଏପରି ଗଢ଼ା ହୋଇଥିବ ଯେ ସେମାନେ ସେଠାରେ ଅତି ପ୍ରଚଣ୍ଡ ତାପ ସମ୍ଭାଳି ପାରୁଥିବେ ? ନିର୍ମଳ ପବନ ଓ ସୂର୍ଯ୍ୟ କିରଣ ଆମ ମନୁଷ୍ୟଙ୍କୁ ବଢ଼ାଏ, କିନ୍ତୁ ଯେଉଁ ଜୀବାଣୁ ଆମ ଦେହରେ ପଶି ଆମକୁ ରୋଗ ରୂପରେ ଖାଆନ୍ତି, ସେଥିରୁ ଅଧିକାଂଶ ଏହି ନିର୍ମଳ ପବନ ଓ ସୂର୍ଯ୍ୟ କିରଣରେ ମରିଯାଆନ୍ତି । ସେହିପରି ଆମକୁ ଯାହା ଅମୃତ; ଅନ୍ୟକୁ ତାହା ବିଷ ହୋଇ ପାରୁଛି । ସୂର୍ଯ୍ୟ କିରଣ ଅତି ପ୍ରଚଣ୍ଡ ହେଲେ ଆମେ ଜଳି ପୋଡ଼ି ଯିବା, କିଏ ଜାଣେ ଏହି ସୂର୍ଯ୍ୟ କିରଣ ସୂର୍ଯ୍ୟ ଉପରେ ଥିବା ସୃଷ୍ଟି ନିମିତ୍ତ ବା ପ୍ରାଣୀମାନଙ୍କ ନିମିତ୍ତ ମଳୟ ପବନ ପରି ସୁହାଉଥିବେ ?

ଭଗବାନ ଖାଲି ଆମ ପୃଥିବୀଟିକୁ କରି ନାହାନ୍ତି, ପୃଥିବୀ ଓ ତାହାର ପାଳକ ବା ଜୀବନଦାତା ସୂର୍ଯ୍ୟ, ତାହାର ଗ୍ରହ ଉପଗ୍ରହ ଓ ସୂର୍ଯ୍ୟ ପରି କୋଟି କୋଟି ସୂର୍ଯ୍ୟ ଓ ସେମାନଙ୍କର ଗ୍ରହ ଉପଗ୍ରହ ଏବଂ ସେମାନଙ୍କ ଉପରେ ଥିବା କୋଟି କୋଟି ସୃଷ୍ଟି ବା ପ୍ରାଣୀଙ୍କୁ ଗଢ଼ୁଛନ୍ତି ଓ ଗଢ଼ିଛନ୍ତି । ମନୁଷ୍ୟର ଏପରି ଭାଷା ନାହିଁ ଯାହାଦ୍ୱାରା ସେ ତାଙ୍କ ମୂର୍ତ୍ତିର ସହସ୍ର ଲକ୍ଷ ବା କୋଟି ଅଂଶର ଏକ ଅଂଶ ମଧ୍ୟ ପ୍ରକାଶ କରି ପାରିବ । ଆମର ଶାସ୍ତ୍ର ଯେ କହୁଛି, ଦେବତା ବ୍ରହ୍ମା ମଧ୍ୟ ବହୁମୁଖ ହୋଇ ଈଶ୍ୱରଙ୍କ ଲୀଳା ପ୍ରକାଶ

କରି ପାରିଲେ ନାହିଁ ଏହା ଜଗତ ସତ ବୋଲି ଜଣା ପଡ଼ୁଛି । ଆମର ଭାଗବତ କହନ୍ତି "ବ୍ରହ୍ମାଣ୍ଡ ମାଳ ମାଳ ହୋଇ, ତୋ ଲୋମକୂପେ ବଳଜଇ ।" ଏହା ମଧ୍ୟ ଭଗବାନଙ୍କ ସୃଷ୍ଟିର ସାମାନ୍ୟ ଟିକିଏ ପ୍ରକାଶ କରୁଛି ବୋଲି ଜଣାପଡ଼ୁଛି । ମନୁଷ୍ୟର ଶକ୍ତି ନାହିଁ, ତାଙ୍କ ସୃଷ୍ଟିର ସମସ୍ତ କଥା ଜାଣିବାକୁ, ସେ ତାକୁ ପ୍ରକାଶ କରିବ କପରି ? ତାଙ୍କ ଚକ୍ଷୁ ଚନ୍ଦ୍ରାରେ ତାହାର ସମସ୍ତ ଜ୍ଞାନ ବୁଦ୍ଧି ପରାସ୍ତ ହୋଇଅଛି ।

ଆଖିକୁ ଦେଖା ନ ଯାଉଥିବ ଜୀବାଣୁ କୋଟି କୋଟି ହୋଇ ଆମ ଦେହରେ ଥାଆନ୍ତି । ସେମାନେ କଅଣ ଆମ କଥା ଜାଣି ପାରନ୍ତି ? ଆମ ଜୀବାଣୁ ଆମ ଆଖିକୁ ଯେପରି ଶ୍ରେଷ୍ଠ, ଆମ ପୃଥିବୀ କଥା ଛାଡ଼ିଦଅ, ସମସ୍ତ ସୂର୍ଯ୍ୟ ଓ ତାହାର ଗ୍ରହ ଉପଗ୍ରହମାନେ ମଧ୍ୟ ସମସ୍ତ ସୃଷ୍ଟି ତୁଳନାରେ ସେହିପରି ଅତି ଶ୍ରେଷ୍ଠ । ସାମାନ୍ୟ ମନୁଷ୍ୟ ବା କଅଣ ?

ଭଗବାନଙ୍କର ସୃଷ୍ଟି ଏତେ ବଡ଼ ଯେ ସେ କଥା ମନୁଷ୍ୟ ଧାରଣା କରିବା ଦୂରେ ଥାଉ, ଭାବି ପୁଣ୍ଡା ପାରିବ ନାହିଁ, ଅର୍ଜୁନଙ୍କ ପରି ବୀର, ସାହସୀ ଯୋଦ୍ଧା ଭଗବାନଙ୍କର ବିଶ୍ୱରୂପର ଅଂଶ ମାତ୍ର ଦେଖୁ ଦେଖୁ ଛାନିଆଁ ହୋଇ ଯାଇଥିଲେ । କୂଅ ବେଙ୍ଗ ପରି ଆମେ ଭାବୁଁ ଭଗବାନଙ୍କର ସୃଷ୍ଟିଟି କେବଳ ଏହି ପୃଥିବୀରେ ସରିଯାଇଛି । ପୃଥିବୀରେ ଥିବା ସବୁଠାରୁ ବଡ଼ ପ୍ରାଣୀ ହାତୀ ଓ ତିମି ମାଛଠାରୁ ଆଉ ବଡ଼ ପ୍ରାଣୀ ଯେ ନାହାନ୍ତି ଏହା ନୁହେଁ । ଯେତେବେଳେ ପୃଥିବୀଠାରୁ ବଡ଼ ବଡ଼ କେତେ କୋଟି ପୃଥିବୀ, ଅଛି, ସେଥିରେ ଯେପରି କେତେ କେତେ ବଡ଼ ବଡ଼ ପ୍ରାଣୀ ନିଶ୍ଚୟ ରହିଥିବେ ଯେଉଁମାନଙ୍କୁ ଦେଖିଲେ ଆମ ପୃଥିବୀରେ ଥିବା ବଡ଼ ବଡ଼ ପ୍ରାଣୀ ମାଛି ମଶାଠାରୁ ଆହୁରି ଶ୍ରେଷ୍ଠ ଦେଖାଯିବେ । ବିଶ୍ୱରୂପ ଦେଖିବା ସମୟରେ ଏହିପରି ଅଦ୍ଭୁତ ଦୃଶ୍ୟ ଅର୍ଜୁନଙ୍କୁ ଛାନିଆ କରି ପକାଇଥିବ ।

ଭଗବାନଙ୍କ ସୃଷ୍ଟି (ଲୀଳା) କେତେ ବଡ଼ ତାହା ବୁଝାଇବାକୁ ଯାଇ ଚୈତନ୍ୟ ମହାପ୍ରଭୁ ସନାତନ ଗୋସ୍ୱାମୀଙ୍କୁ ନିମ୍ନଲିଖିତ ପୌରାଣିକ କଥାଟିକୁ କହିଥିଲେ । ଦିନେ ବ୍ରହ୍ମା ଦ୍ୱାରକାକୁ ଆସିଥିଲେ ମହାପ୍ରଭୁ ଶ୍ରୀକୃଷ୍ଣଙ୍କ ସହିତ ଦେଖା କରିବାକୁ । ଦ୍ୱାରୀ ମହାପ୍ରଭୁଙ୍କୁ ଏହା ଜଣାଇଲା । ଶ୍ରୀକୃଷ୍ଣ ଅନ୍ତର୍ଯ୍ୟାମୀ ସବୁ ଜାଣନ୍ତି, କିନ୍ତୁ ବ୍ରହ୍ମାଙ୍କୁ କିଛି ନୂଆ କଥା ଶିଖାଇବାକୁ ଇଚ୍ଛା କରି,

ହାସ୍ତିକୁ କହିଲେ, "ପଚ୍ଛର ଆସ, କେଉଁ ବ୍ରହ୍ମା ଆସଛନ୍ତି"। ହାସ୍ତି ତାହା ପଚ୍ଛରବାରୁ ବ୍ରହ୍ମା ଆଶ୍ଚର୍ଯ୍ୟ ହୋଇଗଲେ, ଭାବିଲେ ବ୍ରହ୍ମା ତ ଜଣେ କେବଳ, ଏପରି ପ୍ରଶ୍ନ କାହିଁକି ? ବହୁ ଚିନ୍ତା କରି ଖବର ଦେଲେ, "ସନକଙ୍କ ପିତା ଚତୁର୍ମୁଖ ବ୍ରହ୍ମା ଆସିଛନ୍ତି ବୋଲି ଖବର ଦିଅ ।" ମହାପ୍ରଭୁ ବ୍ରହ୍ମାଙ୍କୁ ଆସିବାକୁ ଅନୁମତି ଦେବାରୁ ବ୍ରହ୍ମା ଆସି ପ୍ରଣାମ ପୂର୍ବକ ପଚ୍ଛରିଲେ, "ମହାପ୍ରଭୁ, କାହିଁକି ଆସିଛି ପରେ କହିବି, ଆପଣ ପଚ୍ଛରି ପଠାଇଲେ, "କେଉଁ ବ୍ରହ୍ମା ଆସିଛନ୍ତି ? ଆଉ କୌଣସି ବ୍ରହ୍ମା କ'ଣ ଅଛନ୍ତି ?" ମହାପ୍ରଭୁ କହିଲେ "ହଁ ଅଛନ୍ତି । ଟିକିଏ ଅପେକ୍ଷା କରନ୍ତୁ, ସେମାନଙ୍କୁ ଦେଖିପାରିବେ ।" ମହାପ୍ରଭୁ କିଛି ସମୟ ଧ୍ୟାନରେ ବସି ରହିବା ପରେ ଶତ ଶତ ବ୍ରହ୍ମା ଓ ଇନ୍ଦ୍ର ସେଠାକୁ ଆସିଲେ । ଆମ ଜଗତ ବ୍ରହ୍ମାଙ୍କର ସିନା ଚତୁର୍ମୁଖ, ଯେଉଁମାନେ ଆସିଲେ ସେମାନଙ୍କ ମଧ୍ୟରେ କାହାର କୋଡ଼ିଏ, କାହାର ଶହେ, କାହାର ଲକ୍ଷେ ମୁଖ ବା ତାଠାରୁ ବେଶି ଥିଲା । ସମ୍ଭବତଃ ଶତମୁଖ, ଦଶମୁଖ, ସହସ୍ର ମୁଖରେ ଅର୍ଥ ହେଉଛି ଏକ ମୁଖ ବା ମସ୍ତିଷ୍କରେ ଯାହା କରଯାଇପାରେ ସେମାନେ ତାହାର ଶତଗୁଣ, ଦଶଗୁଣ ସହସ୍ରଗୁଣ ଏକା କରିପାରନ୍ତି । ଏପରି ଅସଂଖ୍ୟ ବ୍ରହ୍ମା ଓ ଇନ୍ଦ୍ର (ପ୍ରତ୍ୟେକ ଚତୁର୍ମୁଖ ବ୍ରହ୍ମାଙ୍କଠାରୁ ବଡ଼, ବହୁତ ବଡ଼ ) ଦେଖି ଆମ ବ୍ରହ୍ମା ଆଶ୍ଚର୍ଯ୍ୟ ହୋଇଗଲେ, ନିଜେ କେତେ ଛୋଟ ଜାଣିପାରିଲେ । ସମସ୍ତେ ମହାପ୍ରଭୁଙ୍କର ଆଜ୍ଞା କଅଣ ପଚ୍ଛରିବାରୁ ମହାପ୍ରଭୁ କହିଲେ, "ଆପଣମାନଙ୍କୁ ଏକଥ ଦେଖିବାର ମୋର ବହୁଦିନୁ ଇଚ୍ଛାଥିଲା, ଆଜ ତାହା ଦେଖି ମୁଁ ବଡ଼ ଖୁସି ହେଉଛି, ଆପଣମାନେ ସମସ୍ତେ ସୁଖରେ ରହନ୍ତୁ ଓ ନିଜ ନିଜ ସ୍ଥାନକୁ ଅସିବା ହେଉନ୍ତୁ ।"

---

# ପିତୁଳାପୂଜା (୨)

ଭଗବାନଙ୍କ ସୃଷ୍ଟି ଯେତେବେଳେ ଏତେ ବଡ଼ ଯେ ତାହା ଆମେ ଭାବିପାରୁ ନାହୁଁ, ଏପରିକି ସାରା ମନୁଷ୍ୟ ଜୀବନଟାସାକ ଯଦି ତାଙ୍କର ସୃଷ୍ଟି କଥା ଭାବିବାକୁ ହୁଏ, ତେବେ ତାହାର ଏକ ଅଂଶ ମାତ୍ର ସରିପାରିବ ନାହିଁ, ତେବେ ଭଗବାନ କ'ଣ ଆମେ ଠିକ୍ ଧାରଣା କରିପାରିବା ନାହିଁ ।

ତେବେ ମନୁଷ୍ୟ ଏତିକି ମାତ୍ର ଜାଣେ ଯେ ଭଗବାନ ଅଛନ୍ତି, ସେ ସବୁ ତିଆରି କରିଛନ୍ତି, ସେ ସବୁ ତିଆରି କରି ତାକୁ ଚଳାଉ ଅଛନ୍ତି, ସେ ସବୁ ଜାଣି ପାରନ୍ତି, ସେ ସବୁଠାରେ ଅଛନ୍ତି, ତାଙ୍କର ଶକ୍ତିର ସୀମା ନାହିଁ ଇତ୍ୟାଦି । ମନୁଷ୍ୟର ଭାଷା ନାହିଁ ଭଗବାନଙ୍କ ସମସ୍ତ କଥା ସେ ପ୍ରକାଶ କରି ପାରିବ । ଭଗବାନଙ୍କର ଆକାର ନାହିଁ, ସେ ନିରାକାର, କିନ୍ତୁ ତାଙ୍କର ଆକାର ଅଛି । ଇଚ୍ଛାକଲେ ସେ ନିଜେ ସବୁ ଆକାର ଧରିପାରିବେ ତାଙ୍କୁ କେହି ଦେଖିନାହାଁନ୍ତି, ସେ କେଉଁଠାରେ ନାହାନ୍ତି, କିନ୍ତୁ ସେ ସବୁଠାରେ ଅଛନ୍ତି । ଏ ଯେଉଁ ବହି ଲେଖାଯାଉଅଛି, ଏହାର ପ୍ରତ୍ୟେକ ଅଣୁପରମାଣୁରେ; ପାଠକ ପାଠିକା ଯେ ଏହାକୁ ପଢୁଅଛନ୍ତି ତାଙ୍କର ପ୍ରତ୍ୟେକ ଶିରା ପ୍ରଶିରା ନିଃଶ୍ୱାସ ପ୍ରଶ୍ୱାସରେ ସେ ଅଛନ୍ତି । ଏପରି ସ୍ଥାନ ସୃଷ୍ଟିରେ ନାହିଁ ସେ ଯେଉଁଠାରେ ନାହାନ୍ତି । ସୃଷ୍ଟିର ପ୍ରତ୍ୟେକ ପଦାର୍ଥ ତାଙ୍କ ଠାରୁ ଆସିଛି ।

ମନୁଷ୍ୟ ଜାଣେ ସେ ନିରାକାର, କିନ୍ତୁ ନିରାକାର ବୋଲି ସେ ତାଙ୍କୁ ଭାବିପାରେ ନାହିଁ । କଥାରେ ଆମେ ଖାଲି ନିରାକାର ବୋଲି କହି ପାରିବା ମାତ୍ର ନିରାକାର ସ୍ୱରୂପ କୌଣସି ଧାରଣା ମନରେ ଆସୁନାହିଁ ବା ଆସିବ ନାହିଁ । ସ୍ୱାମୀ ବିବେକାନନ୍ଦ ପିତୁଳା ପୂଜା ସମ୍ବନ୍ଧରେ କହିଥିଲେ, "ମନୁଷ୍ୟ ଯେପରି ସ୍ୱଭାବର ଶକ୍ତି ପାଇଛି, ସେଥିରେ ସେ ଭଗବାନଙ୍କୁ ମନୁଷ୍ୟ ଭଳି ଧରିନେବ ହିଁ ନେବ । ଯଦି ଗୋଟିଏ ମଇଁଷି ଭଗବାନଙ୍କୁ ପୂଜା କରିବାକୁ

ଇଚ୍ଛା କରେ, ସେ ତାହାର ପ୍ରକୃତି ଅନୁସାରେ, ଭଗବାନଙ୍କୁ ଗୋଟିଏ ବଡ଼ ମଇଁଷି ବୋଲି ଧରିନେବ । ମାଛ ଯଦି ତାଙ୍କୁ ପୂଜା କରିବାକୁ ଇଚ୍ଛାକରେ, ସେ ମଧ୍ୟ ତାଙ୍କୁ ଗୋଟିଏ ବଡ଼ ମାଛ ବୋଲି ଧରିନେବ । ମନୁଷ୍ୟ ସେପରି ତାଙ୍କୁ ଜଣେ ଅସାଧାରଣ ମନୁଷ୍ୟ ବୋଲି ଭାବିବ । ମନୁଷ୍ୟ, ମଇଁଷି, ମାଛ ପ୍ରତ୍ୟେକଙ୍କୁ ଆମେ ଯଦି ଗୋଟିଏ ଲେଖାଏ ପାତ୍ର ବୋଲି ମନେ କରୁ, ତେବେ ପ୍ରତ୍ୟେକ ପାତ୍ରକୁ, ଭଗବାନରୂପକ ସମୁଦ୍ରରେ ବୁଡ଼ାଇ ଦେଲେ ପାତ୍ରର ଆକାର ଅନୁସାରେ ଭର୍ତ୍ତି ହୋଇଥିବା ପାଣିର ଆକାର ହୋଇଯିବ । ମନୁଷ୍ୟଠାରେ ମନୁଷ୍ୟ, ମଇଁଷିଠାରେ ମଇଁଷି ଓ ମାଛଠାରେ ମାଛ ଆକାର ଧରିପାଣିରହିବ । କିନ୍ତୁ ସବୁ ପାଣି ସମାନ, ଆକାର ଭିନ୍ନ ମାତ୍ର । ମନୁଷ୍ୟ ତାଙ୍କୁ ମନୁଷ୍ୟ ପରି ଦେଖେ, ଜୀବଜନ୍ତୁମାନେ (ତାଙ୍କର ଯଦି ଭଗବାନଙ୍କୁ ଜାଣି ପାରିବାର କ୍ଷମତା ଥାଏ ) ତାଙ୍କୁ ତାଙ୍କର ପରି ଦେଖନ୍ତି । ମନୁଷ୍ୟ ଭଗବାନଙ୍କୁ ମନୁଷ୍ୟ ପରି ଦେଖିବ କି ଦେଖିବ । ଏହାଛଡ଼ା ତାହାର ଆଉ ଉପାୟ ନାହିଁ" ।

ହିନ୍ଦୁ ଭଗବାନଙ୍କୁ ଆକାର, ମନୁଷ୍ୟ ଆକାର ଦେଇ ପୂଜା କରେ । କିଏ ତେବେ କିଏ ତାଙ୍କୁ ଆକାର ନ ଦେଇ ପୂଜା କରୁଛି ? ଖ୍ରୀଷ୍ଟିୟାନ ଚର୍ଚ୍ଚକୁ ତେବେ କାହିଁକି ଯାଏ ? ସେମାନେ ଯେଉଁ କ୍ରସ (cross + )କୁ ପବିତ୍ର ବୋଲି ମନେ କରନ୍ତି, ତାହା ବା କଅଣ ? ମୁସଲମାନ ପ୍ରାର୍ଥନା କରିବା ସମୟରେ ପଶ୍ଚିମ ଦିଗକୁ (ମକ୍କା) ମୁହଁ କରେ କାହିଁକି ? ମକ୍କାରେ ଯେଉଁ "କାଆବା" ପଥର ମସଜିଦରେ ଅଛି ତାହା କଅଣ ? ତାକୁ ମୁସଲମାନ ପବିତ୍ର ବୋଲି କାହିଁକି ମନେ କରେ ? ମନରେ କୌଣସି ଏକ ରୂପର ଆଶ୍ରା ନ ଧରିଲେ ଆମେ କୌଣସି ବିଷୟ ଭାବି ପାରିବା ନାହିଁ । ତେଣୁ ହିନ୍ଦୁ ପୂଜା କରିବା ସମୟରେ ଏକ ରୂପର ଆଶ୍ରା ନିଏ କେବଳ । ସେ ରୂପକୁ କେବେହେଁ ନିଜେ ଭଗବାନ ବୋଲି ଧରି ନିଏ ନାହିଁ । ଭଗବାନ ହିନ୍ଦୁର ମନ୍ଦିରରେ ଅଛନ୍ତି, ମୁସଲମାନର ମସଜିଦରେ ଅଛନ୍ତି, ଖ୍ରୀଷ୍ଟିୟାନର ଚର୍ଚ୍ଚରେ ଅଛନ୍ତି, ଅସଭ୍ୟ ଲୋକର ଗଛ, କାଠ, ପଥରରେ ମଧ୍ୟ ଅଛନ୍ତି । ସେ ନାହାନ୍ତି ଏପରି ସ୍ଥାନ ନାହିଁ । ତାଙ୍କ ଛଡ଼ା କୌଣସି ପଦାର୍ଥ ନାହିଁ ।

ମନୁଷ୍ୟ ଯେତେବେଳେ ଆଶ୍ରା ସ୍ୱରୂପ ଧରିଥିବା ପଦାର୍ଥ ବା ଆକାରକୁ ନିଜେ ଭଗବାନ ବୋଲି ଧରି ନିଏ ଓ ତାହା କେବଳ

ଭଗବାନଙ୍କ ଠାରେ ତାହାର ମନକୁ ସ୍ଥିର କରିବାରେ ସାହାଯ୍ୟ କରୁଛି ଏହା ଭୁଲିଯାଏ, ସେତେବେଳେ ହିଁ କେବଳ ପିତୁଳା ପୂଜାକୁ ନିନ୍ଦା କରି ଯାଇ ପାରେ; କିନ୍ତୁ ସେ ଯେତେବେଳେ ପିତୁଳାକୁ ନମସ୍କାର କରେ, ଭଗବାନଙ୍କୁ ନମସ୍କାର କରିଯାଏ, ପିତୁଳାକୁ କିଛି ସ୍ନେହ ବା ଭକ୍ତିରେ ଦେଲେ ଭଗବାନଙ୍କୁ ଦିଆଯାଏ ବୋଲି ମନେ କରେ, ସେତେବେଳେ ପିତୁଳା ପୂଜାରେ କିଛି ମାତ୍ର, ଅଣୁ ମାତ୍ର ଦୋଷ ନାହିଁ, ବରଂ ପିତୁଳା ପୂଜା ମନୁଷ୍ୟଙ୍କୁ ଭଗବାନଙ୍କ ଆଡ଼କୁ ନେଇଯିବାରେ ବହୁତ ସାହାଯ୍ୟ କରିଥାଏ । ଭଗବାନଙ୍କ ପାଖକୁ ଯିବାକୁ ଏହା ସାଧାରଣ ଲୋକ ପକ୍ଷରେ ଏକ ପାହାଚ ସ୍ୱରୂପ ହୋଇଥାଏ । ପହଁରିବା ଶିଖିବା ସମୟରେ ଶୋଲ ବଡ଼ା କମ୍ବା ଅନ୍ୟ ଆଶ୍ରା ଧରିଯାଏ, ପରେ ଭଲକରି ଶିଖିଗଲେ, ଶୋଲ ବଡ଼ା କମ୍ବା ଆଶ୍ରା ଦରକାର ହୁଏ ନାହିଁ । ସେହିପରି ପିତୁଳା ପୂଜା ପ୍ରଥମରେ ଆଶ୍ରା ମାତ୍ର ।

ସ୍ୱାମୀ ବିବେକାନନ୍ଦ ଯଥାର୍ଥ କହିଅଛନ୍ତି—"ଦୁଇପ୍ରକାର ମନୁଷ୍ୟ ଭଗବାନଙ୍କୁ ମନୁଷ୍ୟ ସ୍ୱରୂପ ପୂଜା କରନ୍ତି ନାହିଁ—(୧) ମନୁଷ୍ୟରୂପ ଧରିଥିବା ପଶୁ ଯାହାର କୌଣସି ଧର୍ମ ନାହିଁ ଓ (୨) ସେହି ମହାତ୍ମା ଯେ ନିଜର ସାଧନାବଳରେ ମନୁଷ୍ୟର ଦୋଷ ଦୁର୍ବଳତାକୁ ଆୟତ୍ତ କରି ମନୁଷ୍ୟ ଦେହରେ ଦେବଭାବ ପାଇ ଗଲେଣି । ଯାହାଙ୍କୁ ଆମେ ପରମହଂସ ବା ଋଷି କହୁଁ, ସେ ଭଗବାନଙ୍କୁ ଚାରିଆଡ଼େ ସବୁଠାରେ ସବୁ ପଦାର୍ଥରେ ଦେଖିପାରନ୍ତି । ପର ଆପଣା ତାଙ୍କର ନାହିଁ । ସେ ଏକା ଭଗବାନଙ୍କୁ ପୂଜା କରନ୍ତି ନାହିଁ, କାରଣ ସେ ନିଜ ଜ୍ଞାନ ଓ ସାଧନା ବଳରେ ଭଗବାନଙ୍କୁ ନିଜ ହୃଦୟରେ ରଖି ସାରିଲେଣି; ତେଣୁ ସେ ଯେଉଁଆଡ଼େ ଚାହୁଁଛନ୍ତି ଭଗବାନଙ୍କୁ ସେ ସେଠାରେ ଦେଖିପାରୁଛନ୍ତି । ଜଣେ ନିଜର ମୂର୍ଖପଣିଆ ବା ଅଜ୍ଞାନ ହେତୁ ଭଗବାନଙ୍କୁ ପୂଜା କରେ ନାହିଁ ଓ ଅନ୍ୟ ଜଣକ ନିଜର ଜ୍ଞାନବଳରେ ଭଗବାନଙ୍କୁ ଜାଣି ଓ ପାଇ ତାଙ୍କୁ ମନୁଷ୍ୟ ରୂପ ପୁଣି ଦେବାକୁ ଭଲପାଏ ନାହିଁ । ପ୍ରଥମ ଜଣେ ମୂର୍ଖ ବା ଅଜ୍ଞାନ ଓ ଦ୍ୱିତୀୟ ଜଣକ ଜ୍ଞାନୀ ବା ପଣ୍ଡିତ, ଏହି ଦୁହିଁଙ୍କ ମଧ୍ୟରେ ଯେଉଁ ମଝି ମଝିଆ ଲୋକେ ଅଛନ୍ତି ଓ କହନ୍ତି ଯେ ସେ ଭଗବାନଙ୍କୁ କୌଣସି ରୂପରେ ପୂଜା କରନ୍ତି ନାହିଁ, ସେମାନେ ହେଉଛନ୍ତି ଗୋଟିଏ ନିଖାଏଁ ଭଣ୍ଡ, ତାଙ୍କର କଥାଣ କହିଲେ

କଅଣ ହେବ ଏହି ଜ୍ଞାନ ନାହିଁ । ନବ୍ଛିଆ ଲୋକେ ତାଙ୍କ କଥାରେ ଭୁଲନ୍ତି ।”

ହିନ୍ଦୁଧର୍ମ ଜାଣେ ସେ ନିରାକାର, ମନୁଷ୍ୟ ତାହାର ଶକ୍ତି ଅନୁସାରେ ତାଙ୍କୁ ଯେତେ ଉଚ୍ଚ ଗୁଣ, ଭାବ ବା ଧର୍ମରେ ମଣ୍ଡନ କରୁ ପଛକେ, ସେ ସମସ୍ତ ଭଗବାନଙ୍କ ଶକ୍ତି ବା ଗୁଣ କେବେହେଁ ପ୍ରକାଶ କରିପାରିବ ନାହିଁ । ତେଣୁ ହିନ୍ଦୁ ଶାସ୍ତ୍ରକାରମାନେ ଭଗବାନଙ୍କୁ କୌଣସି ପ୍ରକାରେ ବର୍ଣ୍ଣନା କରି ନ ପାରି ସବା ଶେଷରେ କହିଲେ “ନେତି”, (ନ+ଇତି) “ନେତି” , ଏହା ନୁହେଁ, ଏହା ନୁହେଁ ବା ଏତିକ ନୁହେଁ ।

ଏହା ଜାଣି ସୁଦ୍ଧା ସାଧାରଣ ମନୁଷ୍ୟ ନିମିତ୍ତ ଆକାର ପୂଜା ବା ପିତୁଳା ପୂଜାକୁ ସେମାନେ ନିନ୍ଦା କରିନାହାନ୍ତି; କାରଣ ସାଧାରଣ ମନୁଷ୍ୟ ପକ୍ଷରେ ଯେତେପ୍ରକାର ପୂଜା ଅଛି ତାହା ଯେକୌଣସି ଆକାର ନେବ ହିଁ ନେବ । ସାଧାରଣ ମନୁଷ୍ୟର ମନ ଏପରି ତିଆରି ଯେ ସେ ପୂର୍ଣ୍ଣ ନିରାକାର କଥା କଳ୍ପନା କରିପାରିବ ନାହିଁ । ହିନ୍ଦୁ ସରଳଭାବରେ ଏକଥା ମାନେ । ଅନ୍ୟମାନେ ଅନ୍ତରରେ ଏହାର ସତ୍ୟବୋଧ କଲେ ସୁଦ୍ଧା, ମୁହଁରେ ଗାଲୁ କରନ୍ତି ।

ପିତୁଳା ପୂଜା ବା ପ୍ରତିମା ପୂଜା ହିନ୍ଦୁଧର୍ମରେ ନହେଲେ ନଚଳେ ବା ବାଧ୍ୟତାମୂଳକ ବୋଲି କେଉଁଠାରେ କୁହାଯାଇ ନାହିଁ ।



# ପୌତ୍ତଳିକପୂଜା (୩)

ତେବେ ପ୍ରଶ୍ନ ହୋଇପାରେ "ହିନ୍ଦୁ ଭଗବାନଙ୍କୁ ନିରାକାର ଭାବ ନପାରି, ଆକାର ଦେଇ ପୂଜାକଲ, ଭଗବାନ ତ ଏକ, ସେ ଏକେତ ଦେବ ପୁଣି ତାହା ସାଙ୍ଗରେ କେଜାଣି କେତେ ଦେବୀ ଖଞ୍ଜି ଦେଲ କାହିଁକି ? ଏକ ଭଗବାନଙ୍କର ଗୁଣ ବା ଶକ୍ତିକୁ ଏପରି ଭାଗକରି ନାନା ଦେବଦେବୀଙ୍କ ମଧ୍ୟରେ ବାଣ୍ଟିଦେଲେ ଭଗବାନ ଯେ ସର୍ବଶକ୍ତିମାନ ଏକଥା ରହିଲ କେଉଁଠାରେ ?

ହିନ୍ଦୁର ଶ୍ରେଷ୍ଠ ଧର୍ମଗ୍ରନ୍ଥ ବେଦ ଉପନିଷଦରେ ଭଗବାନଙ୍କୁ ବ୍ରହ୍ମ ବୋଲି କୁହାଯାଇଛି । ବ୍ରହ୍ମ ପୁରୁଷ ନୁହନ୍ତି କି ସ୍ତ୍ରୀ ନୁହନ୍ତି । ସମୟ ସମୟରେ ଭଗବାନଙ୍କୁ କେବଳ "ତତ୍" ଅର୍ଥାତ୍ ସେ (That) ବୋଲି କୁହାଯାଇଛି, କାରଣ ତାଙ୍କୁ ଠିକ୍ ବର୍ଣ୍ଣନା କରିବାକୁ ମନୁଷ୍ୟ ଉପଯୁକ୍ତ ଭାଷା ପାଇଲ ନାହିଁ । ଭଗବାନ ଏକ, ଦ୍ୱିତୀୟ କେହି ନାହାନ୍ତି ତାହା ସେ ଭଲକରି ଜାଣେ, କିନ୍ତୁ ସେହି ଭଗବାନଙ୍କର ସୃଷ୍ଟି କରିବା ଶକ୍ତିକୁ ସେ କହେ ବ୍ରହ୍ମା, ପାଳନ କରିବା ଶକ୍ତିକୁ ସେ କହେ ବିଷ୍ଣୁ ଓ ଧ୍ୱଂସ କରିବାର ଶକ୍ତିକୁ କହେ ରୁଦ୍ର । ଏହି ତିନୋଟି ନାମ ସେହି ବ୍ରହ୍ମଙ୍କର ତିନିପ୍ରକାର ଶକ୍ତି ପ୍ରକାଶ କରନ୍ତି । ଏମାନଙ୍କୁ ତେଣୁ ତ୍ରିମୂର୍ତ୍ତି [Trinity]. କୁହାଯାଏ ।

ସାଧାରଣ ଲୋକେ ଗମ୍ଭୀର ଭାବ (abstract ideas) ବୁଝିପାରନ୍ତି ନାହିଁ । ଶକ୍ତିକୁ ମୂର୍ତ୍ତିଦେଲେ ଓ ସେ ମୂର୍ତ୍ତି ଏହା କରନ୍ତି କହିଲେ ଲୋକମାନଙ୍କର ଏକ ଧାରଣା ଆସେ । ତେଣୁ ଭାବ (Abstract)କୁ ମୂର୍ତ୍ତିମାନ କରି (concrete) ସାଧାରଣ ଲୋକଙ୍କ ଆଗରେ ରଖାଯାଇଛି ।

ପୁଣି ନାନା ଲୋକର ନାନା ରୁଚି । ଯେଉଁକଥା ବଡ଼ ମନୁଷ୍ୟ ଯେପରି ବୁଝିବେ, ପିଲାଏ ସେପରି ବୁଝି ପାରିବେନାହିଁ, ବଡ଼ଙ୍କୁ ଯାହା ଭଲ ଲାଗିବ, ପିଲାଙ୍କୁ ତାହା ଭଲ ଲାଗିନପାରେ । ପଣ୍ଡିତ ଲୋକ ଯେଉଁଥିରେ ସନ୍ତୁଷ୍ଟ ହୁଅନ୍ତି, ମୂର୍ଖ କିମ୍ବା ଅଧା ପାଠୁଆଙ୍କୁ ତାହା ଭଲ ଲାଗିନପାରେ ।

ଏକ ବୟସ, ଏକ ଜ୍ଞାନ ଥାଇ ସୁଦ୍ଧା, ରୁଚି ଫରକ ଫରକ ହେବାରୁ ଧର୍ମର ବାଟ ମଧ୍ୟ ଫରକ ଫରକ ହୁଏ । ଲୋକେ ବୁଦ୍ଧି ହିସାବରେ ଭିନ୍ନ ଭିନ୍ନ ସୋପାନ ବା ସ୍ତରରେ ଥାନ୍ତି, ତେଣୁ ହିନ୍ଦୁଧର୍ମ କେବଳ ଏହି ବିଭିନ୍ନ ରୁଚି ଓ ବିଭିନ୍ନ ସ୍ତରର ବୁଦ୍ଧିକୁ ସନ୍ତୋଷ କରିବାର ବ୍ୟବସ୍ଥା କରିଅଛି । ଏକ ପରମ ବ୍ରହ୍ମଙ୍କର ବିଭିନ୍ନ ବିକାଶକୁ (ପ୍ରଳୟ ଶକ୍ତି—ରୁଦ୍ର, ବୃଷ୍ଟି—ଇନ୍ଦ୍ର, ପ୍ରଭୃତି) ନାନାପ୍ରକାର ନାମ ଦିଆ ଯାଇଅଛି ।

ଭାରତ ବର୍ଷ ଗୋଟିଏ ବଡ଼ ଦେଶ, ଗ୍ରେଟ ମହାଦେଶଟିଏ କହିଲେ ଚଳେ । ଗୌରବର୍ଣ୍ଣ ଆର୍ଯ୍ୟମାନେ ତାଙ୍କର ବେଦ ଉପନିଷଦର ଧର୍ମ ପ୍ରଚାର କରିବାକୁ ଯାଇ ଦେଖନ୍ତି ଯେ ଦେଶରେ ନାନାବର୍ଣ୍ଣର ନାନା ଜାତିର ଲୋକେ ରହି ନାନା ଆଚାର ବ୍ୟବହାର ଧରିନେଇଅଛନ୍ତି । ସେମାନଙ୍କର ସଭ୍ୟତା ମଧ୍ୟ ବିଭିନ୍ନ ସ୍ତରରେ ରହିଅଛି । ସେମାନଙ୍କ ମଧ୍ୟରେ ଅନେକ ନିରାକାର ପରମବ୍ରହ୍ମ କଥା ଧାରଣା କରିବାକୁ ଅକ୍ଷମ । ତେଣୁ ସେମାନେ ଗଣଧର୍ମ ବା ସର୍ବସାଧାରଣ ଧର୍ମ ଆଚାରକୁ ଏପରି ଗ୍ରନ୍ଥରେ ପକାଇଲେ ଯେ ସମସ୍ତେ ସେମାନଙ୍କର ମୂଳଆଚାରକୁ ଛାଡ଼ିଲେ ନାହିଁ, ଅଥଚ ନିଜର ରୁଚି ଅନୁସାରେ ଆର୍ଯ୍ୟ ଧର୍ମର ସାର ଗ୍ରହଣ କରିନେଲେ ।

ଗୀତାରେ ଅଛି ଭଗବାନଙ୍କୁ ଯେ ଯେପରି ଡାକେ ବା ପୂଜା କରେ ସେ ତାକୁ ସେପରି ଗ୍ରହଣ କରନ୍ତି ବା ଶୁଣନ୍ତି । ମହାତ୍ମା ତୁଳସୀ ଦାସ ତାଙ୍କୁ ରାମରୂପେ ଡାକିଥିଲେ, ସେ ତାଙ୍କୁ ସେହି ରାମ ରୂପରେ ଦେଖା ଦେଇଥିଲେ । ପରମହଂସ ରାମକୃଷ୍ଣ ତାଙ୍କୁ ମା କାଳୀ ବୋଲି ଡାକୁଥିଲେ ସେ ମା ପରି ତାଙ୍କ ସଙ୍ଗରେ କଥାବାର୍ତ୍ତା କରୁଥିଲେ । ହିନ୍ଦୁ ଧର୍ମ କେବଳ ଏହି ଉଦାର ମହତ୍ ଭାବ ପୋଷଣ କରିଅଛି ଯେ ମନୁଷ୍ୟ ଭଗବାନଙ୍କୁ ଯେପରି ଭାବରେ ଡାକୁ ପଛକେ ସେ ତାକୁ ସେପରି ଭାବରେ ଶୁଣିବେ । **ଏକା ହିନ୍ଦୁ କହେ ନାହିଁ ଯେ ତାର ଧର୍ମଟି ସବୁଠାରୁ ଭଲ । ହିନ୍ଦୁ କହେ ଯେ କୌଣସି ଧର୍ମରେ ବିଶ୍ୱାସ ଥିଲେ ଭଗବାନ ମିଳିପାରିବେ ।** ଏହି ମତରେ ବିଶ୍ୱାସ ରଖି ହିନ୍ଦୁ ଅନ୍ୟ ଧର୍ମରୁ ନିଜ ଧର୍ମକୁ ଲୋକ ନେଇ ଆସିବାକୁ କେବେହେଁ ଯତ୍ନ କରିନାହିଁ । ତେଣୁ ଭାରତ ପରି ଗୋଟିଏ ଗ୍ରେଟ ମହାଦେଶରେ ସେ ବେଦର ଏକଈଶ୍ୱର ଧର୍ମ ପ୍ରଚାର କରିବାକୁ ଯାଇ ବିଭିନ୍ନ ପ୍ରଦେଶର କୁଳ, ବଂଶ, ଜାତି ଆଚାରକୁ ଗୋଡ଼ରେ

ଦଳ ଦେଇ ନାହିଁ; ତେଣୁ ବିଭିନ୍ନ ଦେବ ଦେବୀ ଯେ ଏକ ଈଶ୍ୱର ବା ଭଗବାନ ଙ୍କର ବିଷ୍ଣୁ, ରୁଦ୍ର, ବ୍ରହ୍ମାଙ୍କ ପରି ବିଭିନ୍ନ ବିକାଶ ମାତ୍ର, ଧର୍ମ ସାଧନାରେ ରହି ଯାଇ ଅଛନ୍ତି । "ଏକଂ ସଦ୍ ବିପ୍ରା ବହୁଧା ବଦନ୍ତି" ଭଗବାନ ଏକ, ପଣ୍ଡିତମାନେ ତାଙ୍କୁ ନାନା ପ୍ରକାର ନାମ ଦେଇଅଛନ୍ତି । ଆମେ ତାଙ୍କୁ ଈଶ୍ୱର, ଭଗବାନ, ରାମ, କୃଷ୍ଣ, ବ୍ରହ୍ମା ଏହିପରି ଶତ ଶତ ନାମ ଦେଇ ଡାକୁଁ, ଇଂରେଜ ତାଙ୍କୁ କହନ୍ତି ଗଡ୍, ମୁସଲମାନ କହନ୍ତି ଆଲ୍ଲା । ସେ କଅଣ ଡାକ ଶୁଣୁ ନାହାନ୍ତି ? ସେ ଭାବଗ୍ରାହୀ, ଭାବ ଗ୍ରହଣ କରନ୍ତି, ଅନ୍ତର ବୁଝନ୍ତି, ତେଣୁ ତାଙ୍କୁ ଆମେ କହୁଁ ଅନ୍ତର୍ଯ୍ୟାମୀ ।

ବ୍ରହ୍ମ ବା ଭଗବାନ ଯେତେବେଳେ ପୁରୁଷ ନୁହନ୍ତି କି ସ୍ତ୍ରୀ ନୁହନ୍ତି, ସେତେବେଳେ ତାଙ୍କର ବିକାଶ ସ୍ୱରୂପ ଦେବତାମାନଙ୍କର ସହଧର୍ମିଣୀ ସ୍ୱରୂପ ଦେବୀ କେଉଁଠାରେ କିପରି ରହିଲେ ? ଭଗବାନଙ୍କର ସୃଷ୍ଟି କରିବା, ପାଳିବା ଓ ତାକୁ ଧ୍ୱଂସ କରିଦେବାର ଶକ୍ତି ଅଛି, ଏହା ଆମ୍ଭେମାନେ ଆଗେ କହି ଛୁ । ନିଆଁର ଯେପରି ପୋଡ଼ିଦେବାର ଶକ୍ତି ଅଛି, ସୂର୍ଯ୍ୟଙ୍କର ଯେପରି କିରଣ ଦେବାର ଶକ୍ତି ଅଛି ଓ ତାହା ଯେପରି ନିଆଁ ଓ ସୂର୍ଯ୍ୟଙ୍କ ସହିତ ଅଚ୍ଛେଦ୍ୟ ଭାବରେ ସଂଯୁକ୍ତ, ସେପରି ସୃଷ୍ଟି ବା ଗଢ଼ିବା, ପାଳିବା ପୁଣି ଭାଙ୍ଗିବା ଏହି ଗୁଣ ଭଗବାନଙ୍କ ସହିତ ଅଚ୍ଛେଦ୍ୟଭାବରେ ସଂଯୁକ୍ତ । ଏହି ଗୁଣକୁ ହିନ୍ଦୁ କହେ ଶକ୍ତି, ସାଧାରଣ ଲୋକଙ୍କ ଆଗରେ ଏହି ଶକ୍ତିକୁ ସେ ମୂର୍ତ୍ତି ଦେଇ ଛିଡ଼ା କରିଛି । ବିଷ୍ଣୁ ସୃଷ୍ଟିକୁ ପାଳୁଛନ୍ତି, ଲକ୍ଷ୍ମୀ ହେଲେ ତାଙ୍କର ସହଧର୍ମିଣୀ, ଲକ୍ଷ୍ମୀ ଧନଧାନ୍ୟର ଅଧିଷ୍ଠାତ୍ରୀ ଦେବୀ । ଧନଧାନ୍ୟ ନ ଥିଲେ ବିଷ୍ଣୁ ପାଳିବେ କିପରି ? ରୁଦ୍ର ସଂହାର କରନ୍ତି, କାଳୀ ହେଲେ ତାଙ୍କର ସଂହାରକାରିଣୀ ଶକ୍ତି ।

ସ୍ୱାମୀ ବିବେକାନନ୍ଦ ପିତୁଳା ପୂଜା ଓ ବିଭିନ୍ନ ଦେବଦେବୀଙ୍କ ପୂଜା ସମ୍ବନ୍ଧରେ ଆମେରିକାରେ କହିଥିଲେ— "ଅନୈକ୍ୟ ମଧ୍ୟରେ ଐକ୍ୟ ସ୍ଥାପନ କରିବା ଅର୍ଥାତ୍ ଯେତେ ଭିନ୍ନ ହୋଇ ପରସ୍ପରଠାରୁ ବିକାଶ ପାଉ ପଛକେ ସୃଷ୍ଟିରେ ଲକ୍ଷଲକ୍ଷ କୋଟିକୋଟି ପ୍ରାଣୀଙ୍କର ଉତ୍ପତ୍ତି ସ୍ଥଳ ଏକ; ଏହା ହେଲା ପ୍ରକୃତିର ନିୟମ, ହିନ୍ଦୁ ଏହା ଭଲ ବୁଝିଥିଲା । ଅନ୍ୟ ଧର୍ମମାନେ କେତେଗୁଡ଼ିଏ ଧରାବନ୍ଧା ନିୟମ ବାନ୍ଧି, ମନୁଷ୍ୟ ସମାଜକୁ ତାହା ଗ୍ରହଣ କରିବାକୁ ବାଧ୍ୟ କରନ୍ତି । ସମାଜ ଆଗରେ ଗୋଟିଏ ମାପର କୋଟ

ଥୋଇ ଦେଇ କହନ୍ତି ଏହା ଜ୍ୟାକ, ଜନ, ହେନେରୀ ସମସ୍ତଙ୍କ ଦେହରେ ଖାପ ଖାଇବ । ଯଦି ଖାପ ନ ଖାଏ, ତେବେ ଜନ ହେନେରୀ କୋଟ ଲଗାଇ ନ ପାରି ଲଙ୍ଗଳା ହୋଇ ରହିବେ । ହିନ୍ଦୁ ବହୁଦିନୁ ଜାଣିଅଛି ବ୍ରହ୍ମଙ୍କୁ ସେ ବୁଝି ପାରିବ କେବଳ ଅନ୍ୟର ସାହାଯ୍ୟରେ, ଆକାରକୁ ଆଶ୍ରୟ କରି । ଖ୍ରୀଷ୍ଟିୟାନଙ୍କର କ୍ରଶ + ଓ ମୁସଲମାନଙ୍କର ଦ୍ୱିତୀୟାର ଚନ୍ଦ୍ର ବା ନିସେଣ ସେ ଦଳରେ କେତେଗୁଡିଏ ସୂଚକ ଚିହ୍ନ ମାତ୍ର, ଧର୍ମସମ୍ବନ୍ଧୀୟ ଭାବକୁ ମନରେ ଝୁଲାଇ ରଖିବା ନିମିତ୍ତ କେତେଗୁଡ଼ିଏ ଖିଲା । ଏପରି ଆଶ୍ରୟ ସମସ୍ତଙ୍କର ଆବଶ୍ୟକ ଏହା କେହି କହୁ ନାହିଁ, ତେବେ ଯେଉଁ ମାନଙ୍କର ଏହା ଦରକାର ନାହିଁ ସେମାନେ ଏହାକୁ ଭୁଲ ବୋଲି କହି ପାରିବେ ନାହିଁ । ହିନ୍ଦୁ ଏଥିରେ କେତେବେଳେ ବାଧ୍ୟବାଧକତା କରି ନାହିଁ ।*

ହିନ୍ଦୁ ହୋମ, ଯଜ୍ଞ, ଶ୍ରାଦ୍ଧ କିମ୍ବା ନୂତନ ପ୍ରତିମା ପୂଜା କରିବା ସମୟରେ ପ୍ରଥମେ ଦେବତାଙ୍କୁ ସେ ସ୍ଥାନରୁ ଆସିବାକୁ ପ୍ରାର୍ଥନା କରେ ।

---

* Unity in variety is the plan of Nature and the Hindu has recognised it. Every other religion lays down certain fixed dogmas and thus to force society to adopt them. It places before society only one coat which must fit Jack, John, Henry all alike. If it does not fit John or Henry, he must go without a coat to cover his body. The Hindus have discovered that the absolute can only be realiesed or thought of or stated through the relative and the images. Crosses and crescents are so many symbols --so many pegs to hang the spiritual ideas on It is not that this help is necessary for every one, but those that donot need it have no right to say that it is wrong. Nor it is compulsory in Hindusim.'

From "the Paper read by Swami Vivekananda at the praliament of religions at Chicago, U. S. A. on the 19th September 1893."

ଏହିପରି ପ୍ରାଣ ପ୍ରତିଷ୍ଠା ହେବାପରେ, ସେ ପୂଜା ଆଦି ଅର୍ପଣ କରେ । ହୋମ ଯଜ୍ଞ ଆଦି ସରିଲେ "ସ୍ୱସ୍ଥାନଂ ଗଚ୍ଛ" ଅର୍ଥାତ୍ ନିଜସ୍ଥାନକୁ ଫେରି-ଯାଅ କହି ପୂଜା ଉପକରଣ କିମ୍ବା ପ୍ରତିମା ଆଦି ବିସର୍ଜନ କରେ । ଏଥିରୁ ସ୍ପଷ୍ଟ ଜଣାପଡୁଅଛି ସେ ପିତୁଳା ବା ପ୍ରତିମାକୁ ପୂଜାକରେ ନାହିଁ । ହିନ୍ଦୁ ସ୍ତ୍ରୀ ଲୋକମାନେ ପୂର୍ବେ କରୁଥିଲେ ଏବେ ମଧ୍ୟ ଏପରି କରୁଅଛନ୍ତି । ସେମାନେ ନଈ କିମ୍ବା ପୋଖରୀକୁ ଗାଧୋଇଗଲେ ଗାଧୋଇ ସାରି ମାଟି କିମ୍ବା ବାଲିରେ ଶ୍ରେଷ୍ଠ ଗଦାଟିଏ ଗଢି ଦିଅନ୍ତି । ସେଠାରେ ଫୁଲ ଆଦି ନୈବେଦ୍ୟ ଦେଇ ମୁଣ୍ଡିଆ ମାରି ଘରକୁ ଫେରନ୍ତି, ପୂଜାପରେ ସେହି ମାଟି କିମ୍ବା ବାଲିଗଦାକୁ କେହି କୌଣସି ସମ୍ମାନ ଦେଖାଏ ନାହିଁ । ବାଲୁକେଶ୍ୱର ନାମ ଏହି ପ୍ରଥାରୁ ଉତ୍ପନ୍ନ ହୋଇଅଛି ।

ଥରେ ଜଣେ ପ୍ରଚାରକ ନିଜର ଧର୍ମ ପ୍ରଚାର କରିବାକୁ ଯାଇଁ ଗାଁ ଭିତର ଅଶିକ୍ଷିତ ଲୋକମାନଙ୍କୁ କହିଲେ ଭଗବାନ ସବୁଠାରେ ଅଛନ୍ତି, ତେଣୁ ପିତୁଳା ପୂଜା କରିବା ପାପ, ତେମେ ଦେଉଳରେ କାହିଁକି ପିତୁଳା ରଖିଛ ?" ଜଣେ ଗାଁ ବାଲା ସାଙ୍ଗେ ସାଙ୍ଗେ କହିଲେ "ଆପଣ ଏହିକ୍ଷଣି କହିଲେ ଭଗବାନ ସବୁଠାରେ ଅଛନ୍ତି, ଦେଉଳ ପିତୁଳାରେ ସେ କଅଣ ନାହାନ୍ତି ?" ପ୍ରଚାରକ ଚୁପ ହୋଇ ରହିଲେ ।



# (୪) ପିତୁଳା ପୂଜା ଓ ମହାତ୍ମାଗାନ୍ଧି

ମହାତ୍ମା ଗାନ୍ଧି ଏ ସମ୍ବନ୍ଧରେ ନିମ୍ନଲିଖିତ ମନ୍ତବ୍ୟ ଦେଇଅଛନ୍ତି --
"ପିତୁଳା ପୂଜା କହିଲେ ଯାହା ପ୍ରକୃତ ବୁଝାଯାଏ ତାହା ଅନୁସାରେ ମୁଁ ପିତୁଳା ବା ପ୍ରତିମା ପୂଜକ ଓ ପିତୁଳା ଭଗ୍ନକାରକ (Iconoclast) ପୂଜା ସମ୍ବନ୍ଧରେ ଯେଉଁ ଭାବ ରହିଛି ତାହାକୁ ମୁଁ ମାନେ, ମନୁଷ୍ୟ ସମାଜକୁ ଉନ୍ନତ ଦିଗରେ ନେବାରେ ଏହାର ପ୍ରାଧାନ୍ୟ ଯଥେଷ୍ଟ ଅଧିକ ହୋଇଅଛି । ଆମ ଦେଶରେ ହଜାର ହଜାର ଦେବାଳୟ ଗୃହଆଡ଼େ ରହି ଦେଶକୁ ପବିତ୍ର କରୁଅଛି । ଏ ଗୃହକୁ ରକ୍ଷା କରିବାକୁ ହେଲେ ମୁଁ ମୋର ଜୀବନ ବଳି ଦେଇଦିଅନ୍ତି । ମୁଁ ମୁସଲମାନମାନଙ୍କ ସହିତ ମିଳୁଛି ତାହାର କାରଣ ହେଉଛି ସେମାନେ ମୋର ପିତୁଳା ଓ ମୋର ଦେଉଳ ସମ୍ବନ୍ଧରେ କିଛି ଆପତ୍ତି କରିବେ ନାହିଁ । କିନ୍ତୁ ଲୋକ ଧର୍ମାନ୍ଧ ହୋଇ ଯେତେବେଳେ କହେ ଯେ ସେ ଯେଉଁ ଭାବରେ ଈଶ୍ୱରଙ୍କୁ ପୂଜାକରେ ତାହାଛଡ଼ା ଅନ୍ୟ ଧରଣର ସବୁପ୍ରକାର ପୂଜା ଭୁଲ୍, ସେତେବେଳେ ମୁଁ ତାହା ଗ୍ରହଣ କରିପାରେ ନାହିଁ । ଏ ସମ୍ବନ୍ଧରେ ମୁଁ ଏକ ପ୍ରତିମା ଭଗ୍ନକାରକ (ଅର୍ଥାତ୍ ଏଥିରେ ମୋର ଆଦୌ ବିଶ୍ୱାସ ନାହିଁ) । ଏ ପ୍ରକାର ପିତୁଳା ପୂଜା ବଡ଼ ଭୟଙ୍କର । ସୁନାର କିମ୍ବା ପଥରର ପିତୁଳାରେ ଦେବତାଙ୍କୁ ଦେଖିବା ସେତେ ଖରାପ ନୁହେଁ । ସୁନା କିମ୍ବା ପଥର ପିତୁଳାକୁ ଈଶ୍ୱର ବୋଲି ଭାବିବା କିମ୍ବା ଈଶ୍ୱରଙ୍କ ଶକ୍ତି ତାହା ଦେହରେ ଅଛି ବୋଲି ବିଶ୍ୱାସ କରିବା ଭୁଲ । କିନ୍ତୁ ମନସ୍ଥିର କରିବା ନିମିତ୍ତ ପ୍ରତିମାକୁ ପୂଜାକରିବା ଭଲ । **ସେ ହେଉଅଛି ପିତୁଳା ପୂଜକ ଯେ ପିତୁଳାଠାରେ ଭଗବାନଙ୍କର ଶକ୍ତି ଅଛିବୋଲି ବିଶ୍ୱାସ କରେ, ସେ ପିତୁଳା ପୂଜକ ନୁହେଁ ଯେ ଭଗବାନଙ୍କ ସହିତ ସମ୍ବନ୍ଧ ସ୍ଥାପନ କରିବା ନିମିତ୍ତ ପିତୁଳାର ଆଶ୍ରୟ ନିଏ କେବଳ ।** ବନାରସଠାରେ, ବିଶ୍ୱନାଥ ମନ୍ଦିରରେ ଯେଉଁ ପଥର ରହିଛି ତାହା କାଶୀ ବିଶ୍ୱନାଥ ନିଜେ ନୁହନ୍ତି ବୋଲି ପ୍ରତ୍ୟେକ ହିନ୍ଦୁ ପିଲା ବିଶ୍ୱାସ କରେ ।

କିନ୍ତୁ ସେ ତାହା ସଙ୍ଗେ ସଙ୍ଗେ ଏହା ମଧ୍ୟ ବିଶ୍ୱାସ କରେ ଯେ ବିଶ୍ୱ ବ୍ୟାପୀ ବିଶ୍ୱନାଥ ସେହି ପଥରରେ ମଧ୍ୟ ଅଛନ୍ତି । କଳ୍ପନାର ଏବମ୍ବିଧ ବିକାଶ ବା ଖେଳ ଆପତ୍ତିଜନକ ନୁହେଁ । ଏହା ହିତକାରକ । ମୋର ନିଜ ଗୀତାରେ ମୁଁ ଯେଉଁ ପବିତ୍ରତା ଦେଖି ପାରୁଛି ବହି ଦୋକାନର ସହସ୍ର ପ୍ରକାର ସଂସ୍କରଣର ଗୀତାରେ ମୁଁ ତାହା ଦେଖୁନାହିଁ । ପ୍ରକୃତ ଯୁକ୍ତି କହୁଛି ଗୀତାରେ ଯଦି ପବିତ୍ରତା ଅଛି ତେବେ ମୋ ଗୀତାଟି ଯେପରି ଅନ୍ୟ ଗୀତା ଠିକ୍ ସେହିପରି । ଗୀତାରେ ଯଦି ପବିତ୍ରତା ରହିଛି ମୋର କଳ୍ପନାରେ । କଳ୍ପନାର ଏପରି ଖେଳ ଦ୍ୱାରା ମନୁଷ୍ୟ ବିସ୍ମୟକର ଭାବରେ ଉପକୃତ ହୁଏ, ତାହାର ଜୀବନର ଗତିପଥ ଏହା ଦ୍ୱାରା ବଦଳିଯାଏ । ପ୍ରତିମା ବା ପିତୁଳା ପୂଜା ସମ୍ବନ୍ଧରେ ମୁଁ ଯେଉଁ ପାର୍ଥକ୍ୟ ଦେଖାଇଛି ତାହା ଯଦି ସ୍ୱୀକାର କରି ନ ଯାଏ, ତେବେ ମୋର ଏହା ଧାରଣା ଯେ ମୁହଁରେ ଯେତେ ଗାଳି କଲେ ସୁଦ୍ଧା ଆମେ ସମସ୍ତେ ପିତୁଳା ପୂଜକ ଅଟୁଁ । ବହି, ଦେଉଳ, ଶଙ୍ଖ, ମୂର୍ତ୍ତି ପ୍ରତ୍ୟେକରେ ଭଗବାନ ଅଛନ୍ତି । କିନ୍ତୁ ସେଗୁଡ଼ିକ ଭଗବାନ ନୁହନ୍ତି, ଯେ କହେ ଯେ ସେ ଭଗବାନ, ସେ ଭୁଲ କରେ ।



# ଅଶୌଚ;—ମୃତିକଅା ଓ ଛୁତିକଅା

ହିନ୍ଦୁ ଘରେ କେହି ମରିଗଲେ କେବଳ ସେ ଘରର ଲୋକମାନେ ଯେ କେତ୍ତେ ଦିନ ନିମିତ୍ତ ଅଶୁଦ୍ଧ ହୋଇ ଅସ୍ପର୍ଶ ହୁଅନ୍ତି ତାହା ନୁହେଁ, ମୃତ ଲୋକର କୁଟୁମ୍ବମାନେ ମଧ୍ୟ ସେପରି ହୁଅନ୍ତି । ମୃତ ଲୋକର କୁଟୁମ୍ବମାନେ କେତ୍ତେ ଦିନ ନିମିତ୍ତ ଛିଅର ହୁଅନ୍ତି ନାହିଁ । ଧୋବା ଘରକୁ ତାଙ୍କ ଲୁଗା ମଧ୍ୟ ଯାଏ ନାହିଁ । ୧୦।୧୧ ଦିନପରେ କୁଟୁମ୍ବ ଓ ମାଲଭାଇ ଛିଅର ହୋଇ ଶୁଦ୍ଧ ହେଲେ ଅନ୍ୟମାନଙ୍କୁ ଛୁଇଁବା ଯୋଗ୍ୟ ହୁଅନ୍ତି ।

ହିନ୍ଦୁର ଆଗ୍ରର ଅନ୍ୟ ଧର୍ମର ଲୋକମାନଙ୍କ ଆଗରେ ଖାମ-ଖିଆଲ ଧରଣର ଜଣାପଡ଼େ । ପୃଥିବୀର ଅନ୍ୟ ଅଞ୍ଚଳର ଲୋକମାନେ ଯେତେବେଳେ ବିଜ୍ଞାନ କଅଣ ଜାଣି ନ ଥିଲେ ସେତେବେଳେ ହିନ୍ଦୁ ବିଜ୍ଞାନର ବହୁତ ତତ୍ତ୍ୱ ଆପୃତ୍ତ୍କରି ପାରିଥିଲା, ସେହି ଜ୍ଞାନକୁ ଆଗରେ ରଖି ସେ ତାହାର ଆଗ୍ରର ବାନ୍ଧି ଦେଇ ଯାଇଛି । ତେଣୁ ତାହା ଅନ୍ୟଠାରୁ ଫରକ ।

କେହି ରୋଗରେ ପଡ଼ି ମରିଯାଉଥିଲେ, ସମାଜ ବା କୁଟୁମ୍ବର ଲୋକମାନେ, ରୋଗୀ ପାଖକୁ ଓ ଘରକୁ ବରାବର ଯିବା ଅସିବା କରି ସେବା ଶୁଶ୍ରୂଷା କରନ୍ତି । ତାହା ନ କଲେ ମଧ୍ୟ, ଶବକୁ କୁଟୁମ୍ବର ଲୋକମାନେ ଶ୍ମଶାନକୁ ନେଇ ପୋଡ଼ନ୍ତି । ଶବ ଦୂଷିତ, ରୋଗୀ ମଧ୍ୟ ଦୂଷିତ, ବିଶେଷତଃ ରୋଗରେ ପଡ଼ି ଯେ ମରିଯାଏ, ତାହା ଦେହରେ ନାନା ପ୍ରକାର ଜୀବାଣୁ ବା ବିଷାକ୍ତ ପଦାର୍ଥ ରହିବାକୁଁ ରହିବ । ଏପରି ଲୋକ ପାଖକୁ କୁଟୁମ୍ବର ଲୋକମାନେ ଯିବାଆସିବା କରିବାରୁ ସେମାନଙ୍କ ଦେହରେ ରୋଗୀ ଦେହରେ ଥିବା ଜୀବାଣୁ ରହିବାର ସମ୍ଭାବନା ଥାଏ । ତେଣୁ ରୋଗୀର କୁଟୁମ୍ବ ଲୋକମାନେ ଯେପରି ଅନ୍ୟଲୋକଙ୍କ ସାଙ୍ଗରେ ନ ମିଶିବେ ସେଥି ନିମିତ୍ତ ସେମାନଙ୍କୁ ଅସ୍ପର୍ଶ ରଖାଯାଏ । ୧୦ । ୧୧ ଦିନ ଗଲେ ପ୍ରାକୃତିକ ପ୍ରଭାବ ବା ଜଳ-ବାୟୁ ସୂର୍ଯ୍ୟ କିରଣ

ଦ୍ୱାରା ଜୀବାଣୁ ଗୁଡ଼ିକ ମରିଯାନ୍ତି ବା ଦୁର୍ବଳଯାନ୍ତି । ଧୋବା ଘରେ ଗ୍ରାମର ସମସ୍ତଙ୍କର ଲୁଗା ପଡ଼େ । ଭଣ୍ଡାରୀ ଗ୍ରାମର ସମସ୍ତଙ୍କୁ କ୍ଷୌର କରେ । ସେହି ଧୋବା, ଭଣ୍ଡାରୀ ଓ ଗ୍ରାମର ଅନ୍ୟ ଲୋକମାନେ ଯେପରି ରୋଗ ଜୀବାଣୁ ଦ୍ୱାରା ଆକ୍ରାନ୍ତ ନ ହେବେ ସେଥିନିମିତ୍ତ ମୃତଲୋକର କୁଟୁମ୍ବମାନଙ୍କର ଲୁଗା ୧୦ । ୧୧ ଦିନ ପର୍ଯ୍ୟନ୍ତ ଧୋବା ଘରକୁ ଯାଏ ନାହିଁ କି ଭଣ୍ଡାରୀ ମଧ୍ୟ ଏମାନଙ୍କୁ ସେ ସମୟରେ କ୍ଷୌର କରେ ନାହିଁ । ସଂକ୍ରାମକ ରୋଗ ଘରେ ପଶିଲେ ଅଫିସମାନଙ୍କରେ କାମ କରୁଥିବା ଲୋକମାନଙ୍କୁ କେତେଦିନ ପର୍ଯ୍ୟନ୍ତ ଅଫିସ୍‌କୁ ଆସିବାକୁ ଅନୁମତି ଦିଆଯାଏନାହିଁ । ଏହାକୁ ଇଂରେଜିରେ କ୍ୱାରେଣ୍ଟାଇନ (quarantine) କହନ୍ତି । ଆମର ୧୦ । ୧୧ ଦିନ ଅସ୍ପର୍ଶ ରହିବା ଠିକ୍ ଏହା ଅଟେ । ଜର୍ମ (Germ) ବା ଜୀବାଣୁ କଥା ପାଶ୍ଚାତ୍ୟ ଲୋକେ ଏବେ ଜାଣିଲେ ହିନ୍ଦୁ ଏହା କେତେ ହଜାର ବର୍ଷ ପୂର୍ବେ ଜାଣିଥିଲେ । ତେଣୁ ଅଶୌଚ ସମୟରେ ଭିକ୍ଷା ଦେବା ମଧ୍ୟ ନିଷେଧ ।

କ୍ଷୌର ନକରିବା, ବେଲକଆ ଖାଇବା ପ୍ରଭୃତି ଦ୍ୱାରା ଦୁଇଟି କଥା ଏକ ସଙ୍ଗରେ ସାଧିତ ହୁଏ । ଏହାଦ୍ୱାରା ମଲାଲୋକ ପ୍ରତି ଶୋଚନା ରୂପକ ସମ୍ମାନ ଦେଖାଯାଏ ଓ ଜୀବାଣୁ ଯେପରି ସଂକ୍ରମିତ ନ ହେବ ତାହାର ମଧ୍ୟ ବନ୍ଦୋବସ୍ତ ହୁଏ । ସାଧାରଣ ସମୟରେ ଯେପରି ଖିଆଯାଏ ସେପରି ଖାଇଲେ ଜୀର୍ଣ୍ଣ ହୋଇନପାରେ, କାରଣ ମନ ଖରାପ ଥିଲେ, ଭୋକ ଶୋଷ ହେଉନଥାଏ ନାହିଁ । ସମସ୍ତ ସମୟରେ ବନ୍ଦ ହୋଇଯାଏ । ଏଥି ନିମିତ୍ତ ମଲାଲୋକ ଘରେ କେତୁଦିନ ନିମିତ୍ତ ବର୍କ୍ତେ ଲେଖାଏଁ ଖାଇବାର ବନ୍ଦୋବସ୍ତ ଦିଆଯାଇଛି । ଏ ଖାଇବା ମଧ୍ୟ ସମ୍ପୂର୍ଣ୍ଣ ବିଜ୍ଞାନାନୁମୋଦିତ । ଏଥିରେ ମସଲା, ତେଲ ପ୍ରଭୃତି ପଡ଼େ ନାହିଁ । ପରିବାରୁ ଗୋଟାପ ଛଡ଼ା ଯାଏନାହିଁ, ଅଧିକନ୍ତୁ ହବିଷ୍ୟର ବିଧି ଏଥିରେ ପାଳନ କରାଯାଏ । ହବିଷ୍ୟାନ୍ନ ଆଦର୍ଶ ଖାଦ୍ୟ— ଏହା ଏକାଳର ଖାଦ୍ୟ-ବିଜ୍ଞାନ ସମ୍ପୂର୍ଣ୍ଣ ଅନୁମୋଦନ କରୁଅଛି । ଏପରି ଖାଇଲେ, ଦେହରେ ରୋଗ ଆକ୍ରମଣ ବା ପଶିବାର ସମ୍ଭାବନା ବହୁତ କମ୍ ହୋଇଯାଏ ।

ମଲା ଲୋକମାନେ ନିମ୍ବପତ୍ର ଖାଆନ୍ତି । ମଲାଲୋକ ଘରୁ ମଶାଣିକୁ ଗଲାବେଳେ ତାହାର ପଛେ ପଛେ ଗୋବର ପାଣି ଛିଞ୍ଚାଯାଏ । ଏହା ସେହି ଜୀବାଣୁକୁ ମାରିବା ନିମିତ୍ତ ହୋଇଥାଏ ।

ଛୁଡ଼କଥା (ସୂତିକା — ଘରେ ପିଲାଟିଏ ଜନ୍ମହେଲେ ପ୍ରସୂତିପାଖକୁ କୁଟୁମ୍ବର ଲୋକେ ଯିବା ଆସିବା କରଥାନ୍ତି । ଯେଉଁମାନେ ପ୍ରସୂତି ସାଙ୍ଗରେ ଲାଗିଥାନ୍ତି, ସେମାନେ ଅପରିଷ୍କାର ହୋଇ ପଡ଼ନ୍ତି । ପ୍ରସୂତି ପାଖକୁ ବହୁତ ଲୋକ ମଧ୍ୟ ଆସିବା ଭଲ ନୁହେଁ । ଏହା ମା ଓ ପିଲା ଉଭୟଙ୍କ ପ୍ରତି ଭଲ ନୁହେଁ । ତେଣୁ ଏନ୍ତୁଡ଼ଶାଳକୁ ଅଳ୍ପ କିଛିଦିନ ନିମିତ୍ତ ଅସ୍ପର୍ଶ ରଖାଯାଏ ।

ନାଲିରଙ୍ଗର ଲୁଗା ପିନ୍ଧି ଏନ୍ତୁଡ଼ଶାଳକୁ କେହି ଯାଆନ୍ତି ନାହିଁ । କାରଣ କଅଣ ? କୁସଂସ୍କାର ! ! ଯେତେ ପ୍ରକାର ରଙ୍ଗ ଅଛି ତାହା ମଧ୍ୟରେ ନାଲି ରଙ୍ଗ ଆଖି ନିମିତ୍ତ ଭଲ ନୁହେଁ । ପିଲାଟିଏ ଜନ୍ମ ହୋଇଛି, ସେ ନିତାନ୍ତ ଦୁର୍ବଳ । ତାହାର ଆଖି ମଧ୍ୟ ଦୁର୍ବଳ । ସେତେବେଳେ ନାଲିରଙ୍ଗ ତାହାର ଆଖିରେ ପଡ଼ିବା ଆଦୌ ଉଚିତ ନୁହେଁ ।

———

# ଶବଦାହ

ଅନ୍ୟ ଧର୍ମର ଲୋକମାନେ ମଲା ଲୋକକୁ କବର ବା ଭୂମିତଳେ ପୋତି ଦିଅନ୍ତି, ସମ୍ମାନ ଦେଖାଇବା ନିମିତ୍ତ କଫିନ୍ ବା ବାକ୍ସ ମଧ୍ୟରେ ବନ୍ଦ କରନ୍ତି, ସେହି ବ୍ୟକ୍ତିକୁ କେତେପ୍ରକାର ସଜାନ୍ତି, ସମୟ ସମୟରେ ବାକ୍ସ ମଧ୍ୟରେ ମଲାଲୋକ ବ୍ୟବହାର କରିପାରିବ ବୋଲି ନାନା ପ୍ରକାର ଜିନିଷ ମଧ୍ୟ ରଖି ଦିଅନ୍ତି । କିନ୍ତୁ ହିନ୍ଦୁ କରେ କଅଣ ? ମଲା ମାତ୍ରକେ ସେ ଶବକୁ ଘରୁ ବାହାର କରିଦିଏ, ସମ୍ମାନ ଦେଖାଇବା ଦୂରେ ଥାଉ, ସାଙ୍ଗେ ସାଙ୍ଗେ ନେଇ ପୋଡ଼ି ଦିଏ । ଜୀବନ ଥିବା ସମୟରେ ଯେ ଥିଲା ପ୍ରିୟତମ, ମଲା ମାତ୍ରକେ ସେ ହେଲା ବାଘ, ସାପଠାରୁ ଆହୁରି ଅଧିକ ଭୟଙ୍କର, ତାକୁ ସାଙ୍ଗେ ସାଙ୍ଗେ ଦୂର ନ କଲେ, ତାକୁ ନ ପୋଡ଼ିଲେ ରକ୍ଷା ନାହିଁ । ହିନ୍ଦୁ ଯେପରି ନିର୍ଦ୍ଦୟ ସେପରି ନିର୍ବୋଧ ! ! !

ହିନ୍ଦୁ ନିର୍ବୋଧ କି ପଣ୍ଡିତ ଦେଖାଯାଉ ।

ବିଜ୍ଞାନ ଏବେ ବାହାର କରୁଛି ଯେ ନାନା ପ୍ରକାର ରୋଗ ଜର୍ମ ବା ଜୀବାଣୁ ଦ୍ୱାରା ଆରମ୍ଭ ହୁଏ । ଏପରି କେତେ ଜୀବାଣୁ ଅଛନ୍ତି ଯେଉଁମାନେ ମାଟିତଳେ ସୁଦ୍ଧା ବର୍ଷ ବର୍ଷ ଏପରିକି ୨୦।୨୧ ବର୍ଷ ରହି ପାରନ୍ତି । ଜର୍ମ ଦ୍ୱାରା ନ ମଲେ ସୁଦ୍ଧା, ମଲା ପରେ ଶବ ପଚିବାକୁ ଆରମ୍ଭ କରେ । ଜର୍ମ ନ ଥିଲେ ନୂଆ ଜର୍ମ ଆସି ଶବ ମଧ୍ୟରେ ରହିବାକୁ ଆରମ୍ଭ କରେ । ଆମର ଏ ଦେଶର ଜଳବାୟୁ ଗରମ, ଏ ଦେଶରେ ଜିନିଷ ଯେତେ ଚଞ୍ଚଳ ସଢ଼ି ବା ପଚିବାକୁ ଆରମ୍ଭ କରେ, ଥଣ୍ଡା ଜଳବାୟୁରେ ସେତେ ଚଞ୍ଚଳ ହୁଏନାହିଁ ।

ଯେତେବେଳେ ଜଣେ ମରିଗଲା, ଶବ ହେଲା ଏକ ବିଷାକ୍ତ ପଦାର୍ଥ, ଘରକୁ, କୁଟୁମ୍ବକୁ, ଗ୍ରାମକୁ ଏହା ଦୂଷିତ କରିଦେବ, ମଲାପରେ ଏହାକୁ ଯେତେ ଚଞ୍ଚଳ ଘରୁ ବାହାର କରିବ ସେତେ ଚଞ୍ଚଳ ସମାଜର ଓ ମଲା ଲୋକଙ୍କ ଆତ୍ମୀୟଙ୍କର ମଙ୍ଗଳ । ସେଥିପାଇଁ ଆମର ବିଧି ଅଛି "ବାସିମଡ଼ା"

କରଦେବା ମନ୍ଦ ଲୋକ ପ୍ରତି ଖଗାପ । ଯେତେ ଚଞ୍ଚଳ ଶବ ଘରୁ ଶ୍ମଶାନକୁ ଯାଏ ଲୋକଙ୍କ ପକ୍ଷରେ ତାହା ତେତିକ ଭଲ । ବିଜ୍ଞାନର ସ୍ୱାସ୍ଥ୍ୟରକ୍ଷା ଦୃଷ୍ଟିରୁ ଏ ପ୍ରଥାଟି ବଡ଼ ସୁନ୍ଦର, ପୋଡ଼ି ଦେବା ଦ୍ୱାରା ସମସ୍ତ ପ୍ରକାର ଜର୍ମ ମର ଯାଆନ୍ତି । ପୋତିବାରେ ବା କବର ଦେବାରେ ସେପରି ସମ୍ପୂର୍ଣ୍ଣ ଭାବରେ ହୁଏ ନାହିଁ । କବର ଖୁବ ଗଭୀରଆ ନହେଲେ କୁକୁର ବିଲୁଆ ଶବକୁ ଖୋଳି ଉପରକୁ ଆଣି ଶବର ଟୁକୁରା ଟୁକୁରା ଏଣେ ତେଣେ ପକାନ୍ତି; ଏହା ସମାଜର ସ୍ୱାସ୍ଥ୍ୟ ପ୍ରତି କପର ସାଙ୍ଘାତିକ ଅନୁମାନ କରାଯାଇ ପାରିବ । ଥରେ ଠାଏ ଏପରି ଭାବରେ ଏକ ରୋଗ ବ୍ୟାପିଲା ଯେ ବହୁତ ଲୋକ ମଲେ । ଯେଉଁମାନଙ୍କର କବର ପ୍ରଥା ଅଛି ସେମାନଙ୍କର କବର ଯାଗାରେ ପ୍ରତିଦିନ ଏତେଲୋକ ପୋତା ହେଲେ ଯେ ସବା ଶେଷରେ ଶବ ପୋତିବାକୁ ଯାଗା ମିଳିଲା ନାହିଁ । ସେମାନେ ବାଧ୍ୟ ହୋଇ ତା ଉପରେ ତା ଉପରେ ଶବ ପୋତିଲେ । ଫଳ ହେଲା କୁକୁର ବିଲୁଆ ଶବର ଟୁକୁରା ନେଇ ଗୃହଆଡ଼େ ବିସ୍ତାଇଲେ । ସେ ସ୍ଥାନରେ ହିନ୍ଦୁମାନଙ୍କ ସଂଖ୍ୟା ବେଶି, ହିନ୍ଦୁ ମଧ୍ୟ ବେଶି ମରିଥିଲେ, କିନ୍ତୁ ତାଙ୍କର ଏ ସମ୍ବନ୍ଧରେ କୌଣସି ଅସୁବିଧା ହୋଇନଥିଲା । ଇଉରୋପର ଲୋକେ ହିନ୍ଦୁର ଶବ ଦାହକୁ ଦିନେ ହସି ଥଟ୍ଟା କରୁଥିଲେ । ଆମେରିକାର ଜଣେ ଲୋକ ଶବଦାହ ଦେଖି ହିନ୍ଦୁକୁ ଛୁଗୁଲେଇ ଲେଖିଛନ୍ତି "You are never so dead as when you die in India." ଅର୍ଥାତ୍ ଭାରତରେ ଲୋକ ମଲେ ତାହାର ଯେପରି ଚିହ୍ନ ଭିନ୍ନ ରହେନ୍ତି ନାହିଁ ସେପରି ଆଉ କେଉଁଠି ନାହିଁ । ଜର୍ମ କଥା ଏବେ ସେମାନେ ଜାଣିଲେ । ସେହିଦିନଠାରୁ ଆଉ ଏପରି ଥଟ୍ଟାଟାହୁଲି ହେଉ ନାହିଁ । ବରଂ ଶବଦାହ ପ୍ରଥା ସେମାନେ ଆସ୍ତେ ଆସ୍ତେ ଗ୍ରହଣ କରି ଗଲେଣି ।

ପୃଥିବୀପ୍ରସିଦ୍ଧ ଇଂରେଜ ଦାର୍ଶନିକ ପଣ୍ଡିତ ଓ ନାଟକ ଲେଖକ ଜର୍ଜ ବର୍ଣ୍ଣାର୍ଡ ଶ (George Bernerd Shaw) ଙ୍କର ମୃତଦେହ ସେ ଦିନ (୬–୧୦–୫୦) ତାଙ୍କ ପୂର୍ବକଳ୍ପିତ ଇଚ୍ଛାନୁସାରେ ଖ୍ରୀଷ୍ଟିୟାନ ବିଧିରେ କବର ଦିଆ ନ ଯାଇ (Golders Green Crematoriumod)ରେ ପୋଡ଼ାହେଲା । ( London. 7. 11. 50. P. T. I. R. ) ତାଙ୍କ ସ୍ତ୍ରୀଙ୍କର ଶବ ଆଗରୁ ଏହିଠାରେ ପୋଡ଼ା ହୋଇଥିଲା ।

———

# ହିନ୍ଦୁର ଅବତାର-ବାଦ

ହିନ୍ଦୁ ବିଶ୍ୱାସ କରେ ଧର୍ମ ଓ ସମାଜରେ ଯେତେବେଳେ ବିପ୍ଳବ ଦେଖାଯାଏ, ସେତେବେଳେ ଭଗବାନ ଅବତାର ଗ୍ରହଣ କରି ଅଧର୍ମକୁ ନାଶ କରନ୍ତି ଓ ସାଧୁମାନଙ୍କୁ ରକ୍ଷା କରନ୍ତି । ଗୀତାରେ ଏହା ସ୍ପଷ୍ଟ ଭାବରେ ଲେଖାଯାଇଛି । ଶ୍ରୀ ପରଶୁରାମ, ଶ୍ରୀ ରାମଚନ୍ଦ୍ର, ଶ୍ରୀକୃଷ୍ଣ ପ୍ରଭୃତିଙ୍କୁ ଅବତାର ବୋଲି ଧରାଯାଇପାରେ, କିନ୍ତୁ ଭଗବାନ ମାଛ, କଇଁଛ, ବରାହ ସିଂହ ରୂପ ଧରି କିପରି ଅବତାର ହେଲେ ଓ ମନୁଷ୍ୟ ତାହା କିପରି ଜାଣିଲା ବୁଝି ହୁଏନାହିଁ । ଅହିନ୍ଦୁ କହନ୍ତି ହିନ୍ଦୁ କାଠ ପଥରକୁ ଦିଅଁ ବୋଲି କହେ । ମାଛ, କଇଁଛ ଓ ଅନ୍ୟାନ୍ୟ ପଶୁ କାଠ ପଥରଠାରୁ ବଡ଼ । ସେଥିରେ ଦିଅଁ ଦେଖିବା ମୋଟାବୁଦ୍ଧିଆ ଜଙ୍ଗଲରେ ବାସ କରୁଥିବା ହିନ୍ଦୁର ଶାସ୍ତ୍ରକାର-ମାନଙ୍କ ପକ୍ଷରେ ବିଚିତ୍ର ନୁହେଁ । ଜଙ୍ଗଲରେ ରହି ସେ ଯାହାକୁ ଗୋଟାଏ ଖୁବ୍ ବଡ଼ ବୋଲି ଦେଖିଲା, ଭୟରେ ସେ ତାହାକୁ ପୂଜା କଲା । କେଉଁ କାଳରେ ତାହାର ଜଙ୍ଗଲି ପୂର୍ବପୁରୁଷ ଯାହାକୁ ପୂଜା କରୁଥିଲେ, ଏହି ବିଜ୍ଞାନ ଯୁଗରେ ରହି ମଧ୍ୟ ହିନ୍ଦୁ ତାହାର ପୂର୍ବପୁରୁଷଙ୍କ ମୂର୍ଖାମି ଛାଡି ପାରୁନାହିଁ ଇତ୍ୟାଦି ।

ଏ ଯୁଗର ବିଜ୍ଞାନ ଯାହା ଏବେ ଆସ୍ତେ ଆସ୍ତେ ବାହାର କରୁଛି, ହିନ୍ଦୁ ଶାସ୍ତ୍ରକାର ବଣ ଜଙ୍ଗଲରେ ରହି ତାହା କେତେ ହଜାର ବର୍ଷ ପୂର୍ବେ ଜାଣିଥିଲେ । ଇଂରେଜ ଗବେଷକ ପଣ୍ଡିତ ଚାର୍ଲସ ଡାରଉ୍ଇନ (Charles Darwin : 1809—1882) ୧୮୫୯ ଖ୍ରୀଷ୍ଟାବ୍ଦରେ ତାଙ୍କର ସୁପ୍ରସିଦ୍ଧ Origin of Species ଗ୍ରନ୍ଥ ପ୍ରକାଶ କଲେ; ୧୮୭୧ ଖ୍ରୀଷ୍ଟାବ୍ଦରେ ତାଙ୍କର The Descent of Man ଗ୍ରନ୍ଥ ବାହାରିଲା । ଏହି ଗ୍ରନ୍ଥ ଦୁଇଟି ସେ ସମୟରେ ପାଶ୍ଚାତ୍ୟ-ଜଗତ ପ୍ରଚଳିତ ସୃଷ୍ଟି ସମ୍ବନ୍ଧୀୟ ମନୁଷ୍ୟର ଚିନ୍ତାଧାରା ବଦଳାଇ ଦେଲା । ତାଙ୍କ ମତ ବର୍ତ୍ତମାନ ସର୍ବବାଦୀସମ୍ମତ ହୋଇଯାଇଛି । ତାଙ୍କ ମତ ଅନୁସାରେ ପୃଥିବୀରେ ମନୁଷ୍ୟ ଆଗ ଜନ୍ମ

ହୋଇ ନଥିଲା । ସର୍ବପ୍ରଥମ ଜୀବସୃଷ୍ଟି ପାଣିରେ । ଏହି ଜଳଚର ଜୀବ ଆସ୍ତେ ଆସ୍ତେ କଠିନ ଭୂଇଁକୁ ଆସିଲେ ( ଉଭୟଚର ) । ପରେ ଜନ୍ମ ହେଲେ ପକ୍ଷୀ ଓ ପଶୁ, ପଶୁ ପରେ ମାଙ୍କଡ଼, ମାଙ୍କଡ଼ ପରେ ମନୁଷ୍ୟ ଜନ୍ମ ହୋଇଛି । ପ୍ରଥମେ ଯେପରି ଜନ୍ମ ହୋଇଥିଲା ବର୍ତ୍ତମାନ ସେ ସେପରି ନ ହୋଇ ବହୁତ ବଦଳି ଯାଇଛି ।

ଏହା ମୁହଁର କଥା କଳ୍ପନା ନା ଏହାର କିଛି ପ୍ରମାଣ ଅଛି ? ଅକାଟ୍ୟ ପ୍ରମାଣ ଅଛି । ଖୁବ୍ ସଂକ୍ଷେପରେ ତାହା ଏହି ଯେ ଯେଉଁଠାରେ ନଇପଠୁ ପଡ଼ ପଡ଼ ସ୍ତରୀଭୂତ ପଥର ଅଛି ସେଠାରେ ପ୍ରଥମ ସ୍ତରରେ କୌଣସି ଜୀବର ଫସିଲ (Fossil) ବା ପ୍ରସ୍ତରୀଭୂତ କଙ୍କାଳ ମିଳୁନାହିଁ । ଉପର ସ୍ତରରେ ଆସ୍ତେ ଆସ୍ତେ ଯଥାକ୍ରମେ ଜଳଚର, ଉଭୟଚର, ସ୍ଥଳଚର ପଶୁ ତା ଉପରେ ମଙ୍କଡ଼ା ଓ ସବାଉପରେ ମନୁଷ୍ୟର କଙ୍କାଳ ମିଳୁଛି । ଏହାହିଁ ହେଲା ପ୍ରାଣୀ ଜଗତର କ୍ରମବିକାଶ । ତେଣୁ ଏ ଯୁଗର ମନୁଷ୍ୟର ପୂର୍ବ-ପୁରୁଷ ଲକ୍ଷ ଲକ୍ଷ ବର୍ଷ ତଳେ ଥିଲା ମାଛ, ମାଛର ପୂର୍ବପୁରୁଷ ସେହିପରି ଲକ୍ଷ ଲକ୍ଷ ବର୍ଷ ତଳେ ଥିବା ପାଣିମଧ୍ୟସ୍ଥ ଶିଉଳ ଜାତୀୟ ଅତି ଛୋଟ ଛୋଟ (Algae) । ବୃକ୍ଷ ଲତା ଗୁଳ୍ମରେ ପ୍ରାଣ ଅଛି, ଶିଉଳରେ ପ୍ରାଣ ଅଛି । କିନ୍ତୁ ମସ୍ତିଷ୍କଯୁକ୍ତ ପ୍ରାଣ ପ୍ରଥମେ ଦେଖାଗଲା ଜଳଚର ପ୍ରାଣୀ ମାଛଠାରେ । ମସ୍ତିଷ୍କ ହେଉଛି ଜ୍ଞାନର ଆଧାର । ପ୍ରଳୟ ସମୟରେ ଏହି ମସ୍ତିଷ୍କ ଯୁକ୍ତ ପ୍ରାଣୀମାନଙ୍କୁ ଯେଉଁ ଦୈବୀଶକ୍ତି ରକ୍ଷାକଲା ତାହାକୁ ହିନ୍ଦୁ ମତ୍ସ୍ୟ ଅବତାର କହୁଅଛି । ଜୀବର କ୍ରମବିକାଶ (Evolution)ରେ ମସ୍ତିଷ୍କ ବା ବୁଦ୍ଧି ବା ଜ୍ଞାନର କ୍ରମବିକାଶ ହେଉଅଛି ସର୍ବପ୍ରଧାନ । ସେ ଜ୍ଞାନକୁ ବେଦ (ଭଗବାନ) ବା ଦୈବୀଶକ୍ତି ରକ୍ଷାକରି ସେଥିରୁ କ୍ରମେ କ୍ରମେ ଏ ଯୁଗର ମନୁଷ୍ୟକୁ ବାହାର କରିଅଛନ୍ତି ।

[୨] କୂର୍ମ ଅବତାର—ମାଛ କ୍ରମେ କ୍ରମେ ସ୍ଥଳକୁ ଆସି (ବେଙ୍ଗ ଆଦି) ସ୍ଥଳଚର ଜୀବର ପ୍ରଥମ ସୋପାନ ପକାଇଥିଲା । ଏହି ସମୟରେ ବା ପୃଥିବୀର ଏହି ଯୁଗରେ ସ୍ଥଳଚର ପ୍ରାଣୀ ସୃଷ୍ଟି ହୋଇଥିଲେ । ପୃଥିବୀର ସ୍ଥଳଭାଗ ଏପର୍ଯ୍ୟନ୍ତ ଦୃଢ଼ ହୋଇ ନଥିଲା । ନାନା ପ୍ରକାର ଖଣ୍ଡପ୍ରଳୟ ଲାଗି ରହିଥିଲା । ଯେଉଁ ଦୈବୀଶକ୍ତିଦ୍ୱାରା ଏହି ନୂତନ ସୃଷ୍ଟ ଜୀବମାନେ

ରହିଗଲେ ଓ ଭବିଷ୍ୟତ ମନୁଷ୍ୟର ଉତ୍‌ଥାନ ଭିତ୍ତିକୁ ଦୃଢ଼ କରିଦେଲେ ତାହାକୁ ହିନ୍ଦୁ କୂର୍ମ ଅବତାର ବୋଲି ମାନନ୍ତି ।

(୩) ବରାହ—ଏହାପରେ ଲକ୍ଷ ଲକ୍ଷ ବର୍ଷପରେ ଯେତେବେଳେ ସ୍ଥଳଭାଗରେ ବଡ଼ ବଡ଼ ପ୍ରାଣୀ ସୃଷ୍ଟି ହୋଇଗଲେ, ଜୀବମାନଙ୍କର ମେରୁଦଣ୍ଡ ବାହାରିଲା, ପୃଥିବୀରେ ପୁଣି ଏକ ବିପର୍ଯ୍ୟୟ ଘଟିଲା । ଦୈବଶକ୍ତି ପୁଣି ବରାହରୂପ ଧାରଣ କରି ପୃଥିବୀସ୍ଥ ପ୍ରାଣୀମାନଙ୍କୁ ରକ୍ଷା କରିଥିଲେ ।

(୪) ନରସିଂହ—ଲକ୍ଷ ଲକ୍ଷ ବର୍ଷପରେ ଅଧା ପଶୁ ଅଧା ମନୁଷ୍ୟ ଆକାର ପ୍ରାଣୀ ଜନ୍ମ ହେଲେ । ସେମାନେ ବଡ଼ ଉତ୍ପାତ କଲେ, ହିରଣ୍ୟ-କଶିପୁ ଏମାନଙ୍କର ନେତା ଥିଲା । ଭଗବାନ ନରସିଂହ ଆକାର ଧରି ସେହି ନରସିଂହ ରୂପଧାରୀ ହିରଣ୍ୟକଶିପୁକୁ ମାରିଦେଲେ । ଏହାଦ୍ୱାରା ଅନ୍ୟମାନେ ରକ୍ଷା ପାଇଗଲେ ।

(୫) ବାମନ—ଲକ୍ଷ ଲକ୍ଷ ବର୍ଷ ବିତିଗଲା, ମନୁଷ୍ୟ ଦେହରୁ ତାହାର ପଶୁ ଆକାର ଲୁପ୍ତ ହୋଇଗଲା, କିନ୍ତୁ ସେ ଏ ଯୁଗର ମନୁଷ୍ୟ ପରି ନଥିଲା, ତାହାର ଆକାର ମାଙ୍କଡ଼ପରି ଛୋଟ ଥିଲା । ବଳି ନାମକ ଜଣେ ଲୋକ ନିଜେ ପ୍ରତାପଶାଳୀ ହୋଇ ପୃଥିବୀ ଜୟ କରି ବହୁ ଦେଶର ସ୍ୱାଧୀନତା ଅପହରଣ କଲା । ବଳି ନିଜେ ହୃଦୟବାନ ଲୋକ ଥିଲେ କିଅଣ ହେବ ସାଧାରଣ ଲୋକେ ଜଣକର ଏକଚ୍ଛତ୍ର ଆଧିପତ୍ୟ ସମ୍ଭାଳି ପାରିଲେ ନାହିଁ । ଭଗବାନ ବାମନରୂପେ ଜନ୍ମ ହୋଇ ନିଜର ବିଚକ୍ଷଣ ଯୁକ୍ତି-ବଳରେ ବଳି ଭଳିଆ ସମ୍ରାଟର ମନ ଏପରି ବଦଳାଇଦେଲେ ଯେ ସେ ଅକୁଣ୍ଠିତ ଚିତ୍ତରେ ବିଜିତ ରାଜ୍ୟ ଗୁଡ଼ିକୁ ଅପହୃତ ସ୍ୱାଧୀନତା ଫେରାଇ ଦେଲା ।

(୬ ପରଶୁରାମ—ଲକ୍ଷ ଲକ୍ଷ ବର୍ଷ ପୁଣି ଗଡ଼ିଗଲା । ମନୁଷ୍ୟ ସେତେବେଳକୁ ଧାତୁ ଜିନିଷର ବ୍ୟବହାର ଜାଣିଲାଣି । କୁରାଢ଼ି କଟୁରି ଧରି ସେ ଜଙ୍ଗଲ କାଟି ପାରୁଥିଲା, କୃଷି କରି ଚଳୁଥିଲା । କିନ୍ତୁ ସେତେ-ବେଳକୁ ବଳ ଯାହାର ମୁଲକ ତାହାର ଥିଲା । ବାହୁ ବଳ ଯାହାର ଅଧିକ ଥିଲା ସେ ଅନ୍ୟକୁ ଦବାଇ ଦେଇ ତାହାର ଯତ୍ନ ଅର୍ଜିତ ଧନ ଅପହରଣ କରୁଥିଲା । ଶାନ୍ତଶିଷ୍ଟ ଲୋକେ ଶାନ୍ତିରେ ରହିପାରୁନଥିଲେ । ଭଗବାନ

ଓଣ୍ଟୁ ପୃଥିବୀରେ ଜନ୍ମ ଧରି ଏହି ଅତ୍ୟାଗୃସ୍ତ ସମ୍ପ୍ରଦାୟର ମୂଳପୋଛ କରି ଦେଇଥିଲେ ।

(୭) ରାମ—ପରଶୁରାମ ପୃଥିବୀରେ ଶାନ୍ତି ସ୍ଥାପନ କରି ଦେଇଗଲେ, ତେଣୁ ସାହିତ୍ୟ, ବିଜ୍ଞାନ ଶିଳ୍ପରେ ମନୁଷ୍ୟ ସମାଜ ଅଗ୍ରସର ହେଲା । ଉତ୍ତର ଭାରତରେ ଆର୍ଯ୍ୟମାନେ ନାନା ବିଗରେ ଉନ୍ନତି କରି ଏପରି ନୀତିଶୀଳ ଜୀବନ ଯାପନ କରୁଥିଲେ ଯେ ତାହା ଏ ପର୍ଯ୍ୟନ୍ତ ସମଗ୍ର ମନୁଷ୍ୟ ସମାଜର ଆଦର୍ଶ ହୋଇରହିଅଛି । ରାମ, ଲକ୍ଷ୍ମଣ, ଭରତ ଶତ୍ରୁଘ୍ନ ଓ ସୀତା ଚରିତ୍ର ପୃଥିବୀ ସାହିତ୍ୟରେ ଅତୁଳନୀୟ । ଦକ୍ଷିଣ ଭାରତ ଲୋକ ଏତେ ସଭ୍ୟ କିମ୍ବା ନୀତିଶୀଳ ହୋଇ ନଥିଲେ । ଲଙ୍କାର ରାଜା ରାବଣ ଓ ତାହାର ପ୍ରଜାମାନେ ଯାନ୍ତ୍ରିକ ସଭ୍ୟତାରେ ଅଭାବନୀୟ ଉନ୍ନତି କରି ଭୋଗ ବିଳାସ ପରାୟଣ ହୋଇ ଅତ୍ୟାଗୃସ୍ତ ହୋଇ ପଡ଼ିଥିଲେ । ରାମଚନ୍ଦ୍ର ଦକ୍ଷିଣ ଭାରତ ଲୋକଙ୍କୁ ଯୁଦ୍ଧବିଦ୍ୟା ଶିଖାଇ ରାବଣର ଯାନ୍ତ୍ରିକ ସଭ୍ୟତା ଧ୍ୱଂସ କରିଦେଲେ । ସେ ପୃଥିବୀକୁ ଦେଖାଇ ଦେଲେ ଯାନ୍ତ୍ରିକ ସଭ୍ୟତାରେ ମନୁଷ୍ୟ ବିଳାସୀ ହୋଇ ତାହାର ମନୁଷ୍ୟତ୍ୱ ହରାଏ । ବିଧି ନିର୍ଦ୍ଦିଷ୍ଟ ହାତ କାମରେ ଲାଗିରହି ନୀତିମାନ୍ ହେଲେ ସେ ତାହାର ଅନ୍ତର୍ନିହିତ ଦେବତ୍ୱ ପାଇପାରେ । ମନୁଷ୍ୟର ମନୁଷ୍ୟତ୍ୱ ବିକାଶ ନିମିତ୍ତ ସମାଜ କିପରି ଆବଶ୍ୟକ ରାମଚନ୍ଦ୍ରଙ୍କର ଜୀବନରେ ଏହା ପ୍ରତିପାଦିତ ହୋଇଅଛି । ସମାଜର ହିତ ନିମିତ୍ତ ସେ ସତୀ ସୀତାଙ୍କୁ ଅନ୍ତଃସତ୍ତ୍ୱା ଅବସ୍ଥାରେ ନିର୍ବାସିତା କରିଥିଲେ । ସମାଜର ହିତସାଧନ ପ୍ରକୃତ ଧର୍ମ ସାଧନ ବୋଲି ସେତେବେଳକୁ ବିବେଚିତ ହେଉଥିଲା ।

(୮) ଶ୍ରୀକୃଷ୍ଣ—ଶ୍ରୀରାମଚନ୍ଦ୍ର ଯାନ୍ତ୍ରିକ ସଭ୍ୟତା ଭାଙ୍ଗି ଦେଇଗଲେ । ସମାଜ ପୁଣି ବିଧି ନିର୍ଦ୍ଦିଷ୍ଟ ସରଳ ଜୀବନ ଯାପନ କଲା । ଏହିପରି କେତେ ହଜାର ବର୍ଷ ଚାଲିଗଲା । ସମାଜରେ ଆସ୍ତେ ଆସ୍ତେ ଜଟିଳତା ପଶିଲା । ପୁଣି ଯନ୍ତ୍ର ସବୁ ଉଦ୍ଭାବିତ ହେଲା । ଯନ୍ତ୍ର ବଳରେ ଲୋକେ ଅତ୍ୟାଗୃସ୍ତ ହୋଇ ଉଠିଲେ । କୌରବ ଓ ପାଣ୍ଡବ ନାମକ ଦୁଇଦଳ କ୍ଷତ୍ରିୟ ବା ଯୁଦ୍ଧଜୀବୀ ଜାତିଙ୍କ ହାତରେ ଅତ୍ୟଧିକ କ୍ଷମତା ରହି ଯାଇଥିଲା । ବର୍ତ୍ତମାନ ଯୁଗରେ ଯେପରି ମାରଣାସ୍ତ୍ର ସବୁ ବାହାରି ଦୁର୍ବଳ ଜାତିମାନଙ୍କୁ ବଳୁଆ ଜାତିମାନଙ୍କ ହାତ ଛୋଟହସ୍ତ କରାଉଅଛି, ଠିକ ସେହିପରି ମାରଣାସ୍ତ୍ର ଏହି ଦୁଇ ଦଳଙ୍କ ହାତରେ ଥିଲା । କର୍ଣ୍ଣାର୍ଜ୍ଜୁନଙ୍କ ଭୀଷଣ ରଣ କୌଶଳ ଏହାର ସତ୍ୟତା ପ୍ରତି

ପାଦନ କରୁଅଛନ୍ତି । ଶ୍ରୀକୃଷ୍ଣ ଏହି ଦୁଇଦଳଙ୍କ ମଧ୍ୟରୁ ଯେଉଁ ଦଳ ଅଧିକତର ଧାର୍ମିକ ବୋଲି ମନେକଲେ ସେହିଦଳ (ପାଣ୍ଡବ) ର ପକ୍ଷ ନେଲେ । ଯୁଦ୍ଧ ହେଲା, ଏକଦଳ ସମ୍ପୂର୍ଣ୍ଣ ଭାବରେ ମୂଳପୋଛ ହୋଇଗଲେ । ସେମାନଙ୍କ ପାଖରେ ଥିବା ମାରଣାସ୍ତ୍ର ମଧ୍ୟ ତାଙ୍କ ସଙ୍ଗେ ସଙ୍ଗେ ମୂଳପୋଛ ହେଲା । ବିଜେତା ପାଣ୍ଡବମାନଙ୍କୁ ବନ୍ଧୁ ସ୍ୱରୂପ ବୁଝାଇଦେଲେ ମାରଣାସ୍ତ୍ର (ପାଶୁପତ ଗାଣ୍ଡୀବ ଆଦି) ପାଖରେ ରଖିବା କେବଳ ଯେ ଅନାବଶ୍ୟକ ତାହା ନୁହେଁ, ମହାପାପ ମଧ୍ୟ । ତେଣୁ ପାଣ୍ଡବମାନେ ସେ ସମସ୍ତଙ୍କୁ ସମୁଦ୍ରରେ ବୁଡ଼ାଇ ଦେଲେ । ତାଙ୍କ ବଂଶର ଲୋକେ (ଯଦୁବଂଶ) ମଧ୍ୟ ଅତ୍ୟାଚାରୀ ହୋଇ ଉଠି ଥିଲେ । କୌଶଳ କରି ସେମାନଙ୍କୁ ଆପଣା ଆପଣା ଭିତରେ କଳଗୋଳ ଦ୍ୱାରା ମରାଇ ଦେଲେ । ପୃଥିବୀକୁ ଶାନ୍ତି ଆସିଲା । ଯୁଧିଷ୍ଠିରଙ୍କ ପରି ଧର୍ମାତ୍ମା ଲୋକ ସମଗ୍ର ଭାରତରେ (ମହାଭାରତରେ) ଧର୍ମ ରାଜ୍ୟ ସ୍ଥାପନ କଲେ ।

ଭାରତ ସବୁବେଳେ ଉତ୍ତର ପଶ୍ଚିମ ଦିଗରୁ ଆକ୍ରମିତ ହେଉଥିଲା । ଆଫଗାନିସ୍ଥାନର କାନ୍ଦାହାର (ଗାନ୍ଧାର) ରୁ ଗାନ୍ଧାରୀ ଆସିଥିଲେ । ଶକୁନି ଥିଲେ ସେହି ଦେଶର ଲୋକ । ତାଙ୍କର କୁମନ୍ତ୍ରଣାରେ ଦୁର୍ଯ୍ୟୋଧନ ଯୁଧିଷ୍ଠିରଙ୍କଠାରୁ ରାଜ୍ୟ ଛଡ଼ାଇ ନେଇଥିଲା । ଶ୍ରୀକୃଷ୍ଣଙ୍କର ବିଚକ୍ଷଣ ପରା-ମର୍ଶ ଓ କୌଶଳ ପୂର୍ଣ୍ଣ ସାହାଯ୍ୟ ପାଇନଥିଲେ ସେ ଅପହୃତ ରାଜ୍ୟ ଫେରି ପାଇ ନଥାନ୍ତେ । ଶ୍ରୀକୃଷ୍ଣ କେବଳ ବୁଝିଥିଲେ ଯେ ଭାରତରେ ଖଣ୍ଡରାଜ୍ୟ ଯେତେଦିନ ଯାଏ ଥିବ ସେତେଦିନ ପର୍ଯ୍ୟନ୍ତ ଭାରତ ଦୁର୍ବଳ ହୋଇ ରହି-ଥିବ ଓ ବହିରାକ୍ରମଣରୁ ନିଜକୁ ରକ୍ଷା କରି ପାରିବ ନାହିଁ । ସେ ଜଣେ ଧାର୍ମିକ ଲୋକ ଖୋଜୁଥିଲେ; ପାଇଲେ ଯୁଧିଷ୍ଠିରଙ୍କୁ । ଖଣ୍ଡରାଜ୍ୟର ରାଜା ମାନଙ୍କୁ ଏକଚ୍ଛତ୍ର ଅଧୀନରେ ରଖିପାରିଥିଲେ ପାଣ୍ଡବ ପାଞ୍ଚଭାଇମାନେ । ମହା-ଭାରତ ସୃଷ୍ଟି ହେଲା, ମହାଭାରତର ହସ୍ତିନାପୁର ହେଲା ରାଜଧାନୀ । ଯୁଧିଷ୍ଠିର ହେଲେ ମହାଭାରତର ଏକଚ୍ଛତ୍ର ସମ୍ରାଟ । ରାଜନୀତି କ୍ଷେତ୍ରରେ ଶ୍ରୀକୃଷ୍ଣ ଏହି ଆଦର୍ଶ ଦେଖାଇ ଦେଇ ଚାଲିଗଲେ ।

ଶ୍ରୀକୃଷ୍ଣ ପୁଣି ଦେଖିଲେ ମହାଭାରତରେ କେବଳ ଆର୍ଯ୍ୟ (ଗୋରା) ରହି ନାହାନ୍ତି । ଦକ୍ଷିଣ ଭାରତରେ ଦ୍ରାବିଡ଼ [କଳା] ଅଛନ୍ତି । ମହାଭାରତ ସମ୍ଭବ କେବଳ ଏହି ଦୁଇ ବିଭିନ୍ନ ଜାତିର ସହଯୋଗରେ । ବଳରାମ ଥିଲେ ତାଙ୍କ ବଡ଼ଭାଇ, କିନ୍ତୁ ସେ ସହୋଦର ଭାଇ ନଥିଲେ । ବଳରାମ ଥିଲେ

ଗୋରା, କୃଷ୍ଣ ଥିଲେ କଳା । ଭିନ୍ନ ମା'ଠାରୁ ଜନ୍ମହୋଇ ସୁଦ୍ଧା ଉଭୟଙ୍କ ମଧ୍ୟରେ ରାମ ଲକ୍ଷ୍ମଣଙ୍କ ପରି ଅତୁଳନୀୟ ସ୍ନେହ ରହିଥିଲା । ଶ୍ରୀକୃଷ୍ଣ ଦକ୍ଷିଣ ଭାରତର ରାଜକନ୍ୟା ଜାମ୍ବବତୀଙ୍କୁ ମଧ୍ୟ ବାହା ହୋଇଥିଲେ । ତାଙ୍କ ଜୀବନରେ ସେ ଏହି ଆଦର୍ଶ ଦେଖାଇ ଦେଇ ଯାଇଛନ୍ତି ଯେ ମହାଭାରତରେ କଳା ଗୋରା ଦୁଇ ଭିନ୍ନ ଜାତିର ଲୋକ ଭିନ୍ନ ଶ୍ରେଣୀରେ ଜନ୍ମ ହୋଇ ସୁଦ୍ଧା ରାମ (ବଳ) କୃଷ୍ଣଙ୍କ ପରି ପରସ୍ପର ସହଯୋଗରେ ଚଳିବେ । ଶ୍ରୀକୃଷ୍ଣ କେବଳ ଏତିକି ଦେଖାଇ ଦେଇ ଯାଇ ନାହାନ୍ତି; ନାନା ଦିଗରେ ନାନା ଆଦର୍ଶ ଦେଖାଇ ଦେଇ ଯାଇଥିବାରୁ ହିନ୍ଦୁ ତାହାଙ୍କୁ ତାହାର ସର୍ବଶ୍ରେଷ୍ଠ ଅବତାର ବୋଲି ଧରି ନେଇଛି । [ସବିଶେଷ ଆଲୋଚନା ୨ୟ ଭାଗରେ ରହିଅଛି] ।

[୯] ବୁଦ୍ଧ—ପ୍ରାୟ ଅଢେଇ ହଜାର ବର୍ଷ ପୂର୍ବେ ବୁଦ୍ଧଙ୍କର ଆବିର୍ଭାବ ହୋଇଥିଲା । ସେତେବେଳେ ଉତ୍ତର ଭାରତରେ ପଶୁବଧ ଅବାଧ ଭାବରେ ଚାଲିଥିଲା । ବୁଦ୍ଧ ଏହା ଦେଖି ସମ୍ଭାଳି ହୋଇ ରହିପାରିଲେ ନାହିଁ, ଅହିଂସା ପରମ ଧର୍ମ ପ୍ରଚାର କରିବା ଏହି ଅବତାରର ବିଶେଷତ୍ୱ ଥିଲା । ସେ ତାଙ୍କ ଜୀବଦ୍ଦଶାରେ ଏହି ଦୁର୍ନୀତି ଲୋପକରି ପାରିଥିଲେ ।

[୧୦] କଳ୍କି-ଅବତାର ଭବିଷ୍ୟତ ଗର୍ଭରେ ରହିଅଛି । ପୃଥିବୀର ରାଜନୀତି ଯେଉଁ ଦିଗକୁ ଗତି କରୁଅଛି ସେଥିରୁ ଲୋକେ ଅନୁମାନ କଲେଣି ପୁଣି ଏକ ମହାଯୁଦ୍ଧ ହେଲେ ମନୁଷ୍ୟ ସମାଜ ଲୁପ୍ତ ହୋଇଯିବ । ମନୁଷ୍ୟ ସମାଜଲୁପ୍ତ ହେବ ନାହିଁ । ଭଗବାନ ଅବତାର ଗ୍ରହଣ କରିବେ । ଶ୍ରୀକୃଷ୍ଣଙ୍କ ପରି ପୁଣି ଏକ ମହାମାନବ ଜନ୍ମ ହେବେ, ମାରଣାସ୍ତ୍ରମାନଙ୍କୁ ଲୋପ କରିବେ । ମହାଭାରତ ଯୁଦ୍ଧପରେ ଶାନ୍ତି ଫେରି ଆସିଲା ପରି, ଭବିଷ୍ୟତରେ ଜଳ ଜଳ ହୋଇ ଦେଖାଯାଉଥିବା ମହାବିଶ୍ୱ ଯୁଦ୍ଧ ପରେ ଭଗବାନ ମହାମାନବ ରୂପ ଧରି ଶାନ୍ତି ସ୍ଥାପନ କରିଦେଇ ଯିବେ ।

ପ୍ରଶ୍ନ ହୋଇପାରେ ଭଗବାନ କାହିଁକି କେବଳ ଭାରତ ବର୍ଷରେ ଜନ୍ମ ହେଉଥିଲେ, ସାରା ଦୁନିଆରେ ତ ବହୁକୋଟି ଲୋକ ରହିଛନ୍ତି, ସେଠାରେ କଅଣ ପାପ ଦୁରାଚାର ନଥିଲା ? ସେଠାକୁ କାହିଁ ଭଗବାନ ଅବତାର ସ୍ୱରୂପ ଯାଇ ନାହାନ୍ତି ।

ହିନ୍ଦୁମାନେ କେବେହେଁ କହି ନାହିଁ ଯେ ଅବତାର କେବଳ ଭାରତକୁ ଆସିଥିଲେ । ସ୍ୱାମୀ ବିବେକାନନ୍ଦ ତାଙ୍କର ବକ୍ତୃତାରେ ଆମେରିକା ଚିକାଗୋଠାରେ କହିଥିଲେ "Every religion is only evolving a God out of the material man and the same God is the inspirer of all of them. Why then are there so many contradictions They are only apparent, says the Hindu. The contradictions come from the same truth, adapting itself to the varying circumstances of different natures. It is the same light coming through the glasses of different colours. And these little variations are necessary for purposes of adaptation. But in the heart of everything the same truth reigns. The Lord has declared to the Hindu in His incarnation as Krishna, "I am in every religion as the thread through a string of pearls. When ever thou seest extraordinary holiness and extraordinary power of raising and purifying humanity, know thou that I am there." And what has been the result.? I challenge the world to find throughout the whole system of Sanscrit Phylosophy any such expression as that the Hindu alone will be saved and not others. Says Vyas, "We find perfect men even beyond the pale of our cast and creed." How, then, can the Hindu whose whole fabric of thought centres in God believe in Buddhism which If Agnostic or in Janism which Is atheistic ?"

ଅର୍ଥାତ୍ "ଜଡ଼ମୟ ମନୁଷ୍ୟ ଦେହରୁ ଆସ୍ତେ ଆସ୍ତେ ଦେବଭାବ ବାହାର କରି ଆଣିବା ପ୍ରତ୍ୟେକ ଧର୍ମର ଉଦ୍ଦେଶ୍ୟ । ପ୍ରତ୍ୟେକ ଧର୍ମ ସେହି ଏକ ଭଗବାନଙ୍କ ଦ୍ୱାରା ଅନୁପ୍ରାଣିତ । ତେବେ କାହିଁକି ଏତେ ଗୁଡ଼ିଏ ପରସ୍ପର ବିରୋଧୀ ମତ ପ୍ରଚଳିତ । ହିନ୍ଦୁ କହେ ବିରୋଧଟା ଖାଲି ବାହାରକୁ ସେପରି ଦେଖାଯାଏ । ଅବସ୍ଥା ବିଭିନ୍ନ, ପ୍ରକୃତି ବିଭିନ୍ନ, ବିଭିନ୍ନ ଅବସ୍ଥା ଓ ବିଭିନ୍ନ ପ୍ରକୃତି ନିମିତ୍ତ ଉପଯୋଗୀ କରିବାକୁ ସତ୍ୟ ବିଭିନ୍ନ ରୂପରେ ପ୍ରକାଶ ପାଏ ।

ତେଣୁ ତାହା ବାହାରକୁ ପରସ୍ପର ବିରୋଧୀ ବୋଲି ଜଣାପଡ଼େ । ଆଲୁଅ ଏକ କିନ୍ତୁ ତାହା ବିଭିନ୍ନ ରଙ୍ଗର କାଚ ମଧ୍ୟରେ ଆସିଲେ ବିଭିନ୍ନ ଜଣାପଡ଼େ । ଅବସ୍ଥାନୁବର୍ତ୍ତୀ କରିବା ନିମିତ୍ତ ଏପରି ଟିକିଏ ଟିକିଏ ବିଭିନ୍ନତା ଆବଶ୍ୟକ । କିନ୍ତୁ ସେହି ପରମ ସତ୍ୟ ପ୍ରତ୍ୟେକର ଅନ୍ତରରେ ବିରାଜମାନ । ଭଗବାନ ଶ୍ରୀକୃଷ୍ଣ ଅବତାରରେ ହିନ୍ଦୁକୁ କହିଛନ୍ତି "ମୁକ୍ତାମାଳାରେ ଯେପରି ସୂତା ରହିଅଛି, ମୁଁ ସେହିପରି ପ୍ରତ୍ୟେକ ଧର୍ମରେ ଅଛି । ଯେତେବେଳେ ଯେଉଁ ସ୍ଥାନରେ ଅସାଧାରଣ ପବିତ୍ରତା କିମ୍ବା ମନୁଷ୍ୟକୁ ଦେବଭାବାପନ୍ନ କରିବାରେ ଅସାଧାରଣ ଶକ୍ତି ଦେଖିବ, ସେତେବେଳେ ଜାଣିବ ମୁଁ ସେଠାରେ ଅଛି ।" ଏହି ଶିକ୍ଷାର ଫଳ କଣ ହୋଇଅଛି ? ମୁଁ ସମଗ୍ର ପୃଥିବୀକୁ ଆହ୍ୱାନ କରୁଅଛି ମତେ ଦେଖାଇ ଦିଅ ସଂସ୍କୃତ ଦର୍ଶନ ବା ଧର୍ମ ଶାସ୍ତ୍ରରେ କେଉଁଠି ଏପରି ଲେଖାଅଛି ଯେ କେବଳ ହିନ୍ଦୁ ମୁକ୍ତି ପାଇବ, ଅନ୍ୟମାନେ ପାଇବେ ନାହିଁ । ବ୍ୟାସ କହି ଅଛନ୍ତି "ଆମ ଜାତି ଓ ଧର୍ମ ଗ୍ରହଣ କରିନଥିବା ଲୋକମାନଙ୍କ ମଧ୍ୟରେ ମଧ୍ୟ ଶୁଦ୍ଧାତ୍ମା ଲୋକ ରହି ଅଛନ୍ତି ଆଉ ଗୋଟିଏ କଥା । ବୌଦ୍ଧଧର୍ମ କହେ ମନୁଷ୍ୟର ଏପରି ଶକ୍ତି ନାହିଁ ଯାହାଦ୍ୱାରା ସେ ଈଶ୍ୱର ଅଛନ୍ତି ବୋଲି ଜାଣି ପାରିବ, ଜୈନଧର୍ମ ନାସ୍ତିକ ହିନ୍ଦୁ ବିଶ୍ୱାସ କରେ ସେ ଈଶ୍ୱରଙ୍କ ଜାଣିପାରିବ, ପାଇପାରିବେ । ବିଶ୍ୱାସ ଏପରି ବିଭିନ୍ନ ହେଲେ ସୁଦ୍ଧା ହିନ୍ଦୁ ସେ ଧର୍ମ ମାନଙ୍କୁ ମଧ୍ୟ ବିଶ୍ୱାସ କରେ ।

ହିନ୍ଦୁ ବିଶ୍ୱାସ କରେ କଳି ଯୁଗରେ ଶେଷ ଅବତାର ହେବେ କଳ୍କି । ତାହାପରେ ଯେ ଆଉ ଅବତାର ନ ଆସିବେ ସେ କହେ ନାହିଁ । ଅନ୍ୟ ଦେଶମାନଙ୍କରେ ଯେ ଅବତାର ସ୍ୱରୂପ ଧର୍ମାତ୍ମାଲୋକ ଜନ୍ମି ନାହାନ୍ତି ସେ ମଧ୍ୟ କହୁ ନାହିଁ ।

ଅନ୍ୟ ଧର୍ମ ଶାସ୍ତ୍ର ଅନୁସାରେ ପୃଥିବୀର ବୟସ ୬।୭ ହଜାର ବର୍ଷ, କିନ୍ତୁ ହିନ୍ଦୁ ଏକା ଜାଣିଥିଲା ପୃଥିବୀର ବୟସ ଲକ୍ଷ ଲକ୍ଷ ତ ନୁହେଁ; କେତେ କୋଟି ବର୍ଷ ।

ପାଶ୍ଚାତ୍ୟ ବୈଜ୍ଞାନିକମାନେ ଏବେ ଠିକ୍ କରୁଅଛନ୍ତି ଯେ ପୃଥିବୀର ବୟସ ୧୬୦ କୋଟି ବର୍ଷ । କିନ୍ତୁ ହିନ୍ଦୁ ମତ ଅନୁସାରେ ଏହା ୧୯୭ କୋଟି ୨୯ ଲକ୍ଷ ୪୯ ହଜାର ବର୍ଷ । ଏହି ଅକଳନୀୟ କାଳ ମଧ୍ୟରେ ସୃଷ୍ଟି କିପରି

ବା ମନୁଷ୍ୟର ସଭ୍ୟତା କହ କେତେଥର ଉଠିଲାଣି, ଉଭେଇଲାଣି, ପୁଣି ଉଠିଲାଣି । ସୃଷ୍ଟି, ସ୍ଥିତି, ପ୍ରଳୟ—ସୃଷ୍ଟି, ସ୍ଥିତି, ପ୍ରଳୟ—ପୁଣି ସୃଷ୍ଟି ସ୍ଥିତି, ପ୍ରଳୟ କାଳ ପରମ୍ପରା କ୍ରମେ ଚାଲି ଆସିଛି । ଏହା କେବଳ ହିନ୍ଦୁ ଜାଣିଥିଲା । ତାହାର ଅବତାରବାଦ ଏହି ଅତୁଳନୀୟ ଜ୍ଞାନର ଅଭିବ୍ୟକ୍ତି ।

ଏ ସମ୍ବନ୍ଧରେ ଆମ୍ଭମାନଙ୍କର ମନେରଖିବା ଉଚିତ ଯେ ପୃଥିବୀରେ ବର୍ତ୍ତମାନ ସ୍ଥଳଭାଗର ଯେପରି ଅବସ୍ଥାନ ଅଛି, ଲକ୍ଷ ଲକ୍ଷ ବର୍ଷ ପୂର୍ବେ ସେପରି ନ ଥିଲା । ଆଜି ଯେଉଁଠାରେ ପୃଥିବୀର ସର୍ବୋଚ୍ଚ ପର୍ବତ ହିମାଳୟ ଛିଡ଼ା ହୋଇଛି, ଦିନେ ତାହା ଅତଳ ସାଗର ଗର୍ଭ ଥିଲା ।



# ଅନ୍ୟାନ୍ୟ ପ୍ରାଚୀନ ସଭ୍ୟତା ଲୁପ୍ତ- ବଞ୍ଚିଛି କେବଳ ହିନ୍ଦୁ ସଭ୍ୟତା

ଚୀନ, ଇରାକ ବା ମେସୋପଟେମିଆ, ଇଜିପ୍ଟ ବା ମିଶର ଗ୍ରୀସ୍ ରୋମ, କାର୍ଥେଜର ପୁରାକାଳର ଲୋକମାନେ ସଭ୍ୟ ଥିଲେ ଅର୍ଥାତ୍ ବଣ ଜଙ୍ଗଲରେ ମନୁଷ୍ୟ ରହିଲେ ଯେପରି କେବଳ ଖାଇପିଇ ଚଳେ ଏବଂ ଦୁନିଆର ଓ ପ୍ରକୃତିର କଥା ଜାଣି ପାରେ ନାହିଁ, ସେପରି ସେମାନେ ରହି ନ ଥିଲେ । ମନୁଷ୍ୟ ସ୍ୱରୂପ ବୁଦ୍ଧି ଖର୍ଚ୍ଚ କରି ନାନାପ୍ରକାର କଥା ଜାଣି- ଥିଲେ । ସାହିତ୍ୟ, ବିଜ୍ଞାନ, ଶିଳ୍ପର ଉନ୍ନତି କରିଥିଲେ । ଏମାନଙ୍କର ସଭ୍ୟତା ପରସ୍ପରଠାରୁ ବିଭିନ୍ନ ଥିଲା । ପ୍ରତ୍ୟେକଙ୍କ ଜୀବନଧାରଣ ପ୍ରଣାଳୀ ଅନ୍ୟଠାରୁ ଫରକ ଥିଲା । ବର୍ତ୍ତମାନ ସେ ସଭ୍ୟତାର ଚିହ୍ନ ନାହିଁ । ତାହା ରହିଅଛି କେବଳ କାଗଜ ପତ୍ରରେ, ଇତିହାସରେ, ଅର୍ଥାତ୍ ଉପରୋକ୍ତ ଦେଶମାନଙ୍କରେ ଲୋକମାନେ ବର୍ତ୍ତମାନ ଯେପରି ଚଳୁଅଛନ୍ତି ପୁରାକାଳରେ ସେମାନଙ୍କର ପୂର୍ବପୁରୁଷ ସଭ୍ୟ ହୋଇଥିବା ସମୟରେ ଯେପରି ଚଳୁଥିଲେ ତାହାଠାରୁ ସମ୍ପୂର୍ଣ୍ଣ ଭିନ୍ନ । ସେମାନଙ୍କର ଏ କାଳର ଚାଲିଚଳନ ଦେଖି ଓ ଇତିହାସ ନ ପଢି କେହି ଅନୁମାନ କରିପାରିବ ନାହିଁ ଯେ ଇତିହାସ ଉଲ୍ଲିଖିତ ଚୀନା, ଇରାକୀ କିମ୍ବା ମିଶରୀ ଲୋକ ଏକାଳର ଚୀନା, ଇରାକୀ, କିମ୍ବା ମିଶରୀ ଲୋକଙ୍କର ପୂର୍ବପୁରୁଷ ଥିଲେ ।

ଭାରତର ସଭ୍ୟତା ଏ ସମସ୍ତ ଦେଶର ସଭ୍ୟତାଠାରୁ ଭିନ୍ନ । ସେ ସବୁ ନଷ୍ଟ ହୋଇଗଲାଣି । ସେ ସବୁ ଯେତେବେଳେ ଆରମ୍ଭ ହେଉଥିଲେ ଅର୍ଥାତ୍ ଶିଶୁ ଥିଲେ ସେତେବେଳକୁ ଭାରତ ସଭ୍ୟତା ଯୌବନ ଡେଇଁ ଯାଇଥିଲା । ନୂଆ ସଭ୍ୟତା ଆରମ୍ଭ ହେଲାଣି । ଭାରତର ସେହି ପ୍ରାଚୀନ ସଭ୍ୟତା ସେପରି ରହିଛି, ଅର୍ଥାତ ଶାସ୍ତ୍ର ପୁରାଣ ଉଲ୍ଲିଖିତ ଭାରତବାସୀ ପୂର୍ବେ ଯେପରି ଜୀବନ ଯାପନ କରୁଥିଲେ ବର୍ତ୍ତମାନ ମଧ୍ୟ ସେପରି କରୁ- ଅଛନ୍ତି । ସେହି ଜାତି ପ୍ରଥା ରହିଛି, ସେହି କ୍ରିୟା କାଣ୍ଡ ଚାଲିଛି । ସମାଜର ଅଧିକାଂଶ ଆଚାର ଚାଲିଚଳନ ଶାସ୍ତ୍ର ଉଲ୍ଲିଖିତ ପନ୍ଥା ଧରି ଚାଲିଛି ।

ଆମେରିକାର ଜଣେ ଲୋକ ହିନ୍ଦୁର ପୁରାଣ ପ୍ରଭୃତି ପଢ଼ି ହିନ୍ଦୁ ଜୀବନ ସମ୍ବନ୍ଧରେ ସେଠାରେ ରହି ଯେଉଁ ଧାରଣା ବା ମାନସିକ ଚିତ୍ର କରିବେ, ସେ ଯଦି ଭାରତକୁ ଆସନ୍ତି, ଭାରତୀୟ ହିନ୍ଦୁର ଜୀବନ ଯାପନପ୍ରଣାଳୀ ପ୍ରାୟ ସେହିପରି ଦେଖିବେ; କିନ୍ତୁ ଚୀନ, ମିଶର, ଇଜିପ୍ଟର ଇତିହାସ ପଢ଼ି ସେ ଦେଶମାନଙ୍କରେ ପୂର୍ବକାଳ ଜୀବନଯାପନ ପ୍ରଣାଳୀର କୌଣସି ଚିହ୍ନ ଦେଖିବେ ନାହିଁ ।

ଭାରତର ସଭ୍ୟତା ଯେପରି ହଜାର ହଜାର ବର୍ଷ ବଞ୍ଚିଛି ସେପରି କୌଣସି ପ୍ରାଚୀନ ସଭ୍ୟତା ବଞ୍ଚି ପାରି ନାହିଁ । ଭାରତୀୟ ସଭ୍ୟତା ଉପରେ ଯେତେ ମାଡ଼ ବସିଛି, ଯେତେ ଆକ୍ରମଣ ହୋଇଛି, ଅନ୍ୟ କୌଣସି ସଭ୍ୟତା ଉପରେ ତାହା ହୋଇ ନାହିଁ ; ଶତାଂଶର ଅଂଶେ ସୁଦ୍ଧା ହୋଇ ନାହିଁ । ଏକାମାତ୍ରକେ ଅନ୍ୟ ସଭ୍ୟତା ଭୁଷୁଡ଼ି ପଡ଼ିଛି ।

* ନିରପେକ୍ଷ ଇଂରେଜ ଲେଖକ ମହାମତି ଟଡ୍ (Todd) ତାଙ୍କର Annals Mewar, Chap 5ରେ ଲେଖିଅଛନ୍ତି "ଅସାଧାରଣ ଚରିତ୍ର ବଳ ବିଶିଷ୍ଟ ରାଜପୁତ ଜାତି ଛଡ଼ା ପୃଥିବୀର ଆଉ କେଉଁ ଜାତି ଶତ ଶତ ବର୍ଷ ବ୍ୟାପୀ ଅତ୍ୟାଚାର ଓ ଆକ୍ରମଣର ସମ୍ମୁଖୀନ ହୋଇ ସୁଦ୍ଧା ନିଜର

---

* What nation on earth would have maintained semblance of civilisation, the spirit of the customs of their fore-fathers, during so many centuries of over-whelming oppression, but one of such singular charac-ters as the Rajputs x x How did the Britons sink under the Romans and in vain strove to save their groves, their Druids, or the altars of Bal from destruc-tion !!! To the saxons they alike succumbeb; this hete-rogenous, to the Normans. Empire was lost or gained by a singe battle and the laws and religion of the conquered merged in those of the conqueror. Contrast with these the Rajputs, not an iota of their religion and customs have they lost, though many an acre of land (Annals of Mewar, Chapter. V. Todd. )

ସଭ୍ୟତା ଓ ପୂର୍ବ ପୁରୁଷମାନଙ୍କର ଆଚାର ଗୃହଚଳନ ଅକ୍ଷୁଣ୍ଣ ରଖି ଅଛି ? ପୁରାକାଳର ବ୍ରିଟେନର ଲୋକମାନେ କେଉଁ ଟଳ ରୋମାନମାନଙ୍କର ଅଧୀନତା ସ୍ୱୀକାର କରିଗଲେ ? ସେମାନେ ତାଙ୍କର ଧର୍ମ ଉପବନ, ତାଙ୍କର ଓକ୍ ଇଉ ପ୍ରଦେଶ୍ୱତ ଏବଂ "ବଳ" ଦେବତାଙ୍କ ସିଂହାସନ ରକ୍ଷା କରିବା ନିମିତ୍ତ ଯେଉଁ ଚେଷ୍ଟା କରିଥିଲେ ସେ ସମସ୍ତ ବୃଥା ହୋଇ ଯାଇଥିଲା । ପରେ ସାକ୍ସନ ଜାତି ନିକଟରେ ସେମାନେ ଏପରି ପରାସ୍ତ ହୋଇଥିଲେ । ସେହି ମିଶ୍ର ଜାତି ପୁଣି ନର୍ମାନମାନଙ୍କ ଦ୍ୱାରା ପରାସ୍ତ ହେଲା । ଗୋଟିଏ ଗୋଟିଏ ଯୁଦ୍ଧରେ ରାଜ୍ୟ ଧ୍ୱଂସ ବା ପ୍ରତିଷ୍ଠିତ ହେଲା, ବିଜିତ ଜାତିର ଧର୍ମ ଓ ବ୍ୟବହାର ବିଜେତା ଜାତିର ଧର୍ମ ଓ ବ୍ୟବହାରରେ ବିଲୀନ ହୋଇଗଲା । ଇଂରେଜ ଜାତିର ପୂର୍ବପୁରୁଷ ରାଜପୁତମାନଙ୍କଠାରୁ କିପରି ଭିନ୍ନ ? ଯଦି ରାଜପୁତମାନେ ବହୁରାଜ୍ୟ ହରାଇ ଅଛନ୍ତି, ସେମାନଙ୍କର ଧର୍ମ ଓ ଆଶ୍ରମର ଏକ ବିନ୍ଦୁ ସୁଦ୍ଧା ହରାଇ ନାହାନ୍ତି ।"

ଆମୂଳଚୂଳ ପୃଥିବୀର ଇତିହାସ ପଢି କେଉଁଠାରେ ହେଲେ ଦେଖିବ ନାହିଁ ହଜାର ବର୍ଷ ସ୍ୱାଧୀନତା ହରାଇ ହିନ୍ଦୁ ଛଡ଼ା ଅନ୍ୟ କୌଣସି ଜାତି ତାହାର ଧର୍ମ,ଆଶ୍ରମ ବ୍ୟବହାର ଠିକ ରଖିଅଛି । ଇଂରେଜ କବି ଟେନିସନଙ୍କ ଭାଷାରେ ହିନ୍ଦୁ ସଭ୍ୟତା କହୁଥାରେ—"Men may come and men may go but I go on for ever" ଅର୍ଥାତ୍ ମନୁଷ୍ୟ ଆସୁଛି, ମନୁଷ୍ୟ ଯାଉଛି ମୁଁ ଚିରକାଳ ରହୁଛି ।

ତା ୧୧।୧୨।୫୦ ଉତ୍କଳ ବିଶ୍ୱବିଦ୍ୟାଳୟର କନଭୋକେସନରେ ବକ୍ତୃତା ଦେଇ ଓଡ଼ିଶାର ମହାମାନ୍ୟ ଗଭର୍ଣ୍ଣର ଅସଫ ଅଲି ଅନ୍ୟାନ୍ୟ କଥା ମଧ୍ୟରେ ଯାହା କହିଥିଲେ ତାହା ଏଠାରେ ଉଦ୍ଧାର କରି ଏହି ପୁସ୍ତିକାର ପ୍ରଥମ ଭାଗ ଆମ୍ଭେମାନେ ସମାପନ କରିବୁ । "ଅତୀତକୁ ଅନାଇଲେ ଆମେ ଦେଖୁ ଯେ ଯେଉଁମାନେ ପୁରାକାଳରେ ଏହି ଶ୍ରେଷ୍ଠ ମହା ଦେଶଟିରେ ରହୁଥିଲେ, ସେମାନେ ଜୀବନର କେତେକ ବାସ୍ତବ ଘଟଣାକୁ ଆୟତ୍ତ କରିଥିଲେ । ସେକାଳ ପ୍ରଚଳିତ ଶକ୍ତିକୁ ସମ୍ଭାଳି ନେବାପାଇଁ ସେମାନେ ତାଙ୍କର ସମାଜ ଗଢ଼ିଦେଇ ଯାଇଥିଲେ । କେତେ ହଜାର ବର୍ଷ ବିତିଯାଇଛି । ବହୁତ ଭାଷା ମରା ହୋଇ ଯାଇଥିଲେ ସୁଦ୍ଧା ଓ ଶାସ୍ତ୍ର ଲୁପ୍ତ

ହେବାର ସମ୍ଭାବନା ଥିଲେ ମଧ୍ୟ ଏହା ଏ ପର୍ଯ୍ୟନ୍ତ ମୁଣ୍ଡ ଟେକ ରହି ପାରିଛି । ପୃଥିବୀର ଅନ୍ୟତ୍ର ଏବଂବିଧ ସଂଗଠନ ଭୁଶୁଡ଼ି ପଡ଼ିଛି ।"

If We look back we find that those Who lived in this sub-continent in the further past, had a grasp of certain realites of life. They built up a certain structure of society against the challenge of their day, which, inspite of a few thousand years of wear and tear, inspite of being in a state of rapid decay, has survived similar structures in other parts of the world.

H. E. Asaf Ali

Governor of Orissa

(At the Convocation of Utkal University, 11. 12. 50.)

———

# ଶିବ ଓ ଶିବରାତ୍ରି

ହିନ୍ଦୁ ଯେଉଁ ଦେବତାମାନଙ୍କୁ ପୂଜାକରେ, ସେମାନଙ୍କ ମଧ୍ୟରେ ଅନେକଙ୍କର କଳ୍ପିତ ରୂପ, ଗୁଣ ଓ ଆଚରଣ ଅସ୍ୱାଭାବିକ, ବରଂ ଅମାନୁଷିକ । ଦେବତା ମନୁଷ୍ୟ ନୁହନ୍ତି; ସେମାନଙ୍କର ରୂପ ଯେ ଠିକ୍ ମନୁଷ୍ୟ ପରି ହେବ, ଏହା ଆଶା କରାଯାଇ ନ ପାରେ । ପୂଜକକୁ ଯେଉଁ ଭାବ ଶିକ୍ଷାଦେବା ନିମନ୍ତେ ଚତୁର କରାଯାଇଅଛି, ପୂଜ୍ୟଙ୍କୁ ଭାବ ଅନୁରୂପ ରୂପ, ଗୁଣ ଓ ଆଚରଣରେ ମଣ୍ଡନ କରାଯାଇଅଛି ବୋଲି ଜଣାପଡ଼ୁଛି । ଶିବଙ୍କ କଥା ଧରାଯାଉ । ତାଙ୍କର ତିନୋଟି ଆଖି, ମୁଣ୍ଡରେ ଗଙ୍ଗା ଓ ଚନ୍ଦ୍ର, ଦେହରେ ସର୍ପମାଳା, କଣ୍ଠ ନୀଳ କାରଣ ସେଠାରେ ଗରଳ ଅଛି, ପରିଧାନ ଖଣ୍ଡେ ବାଘଚମ, ବାସସ୍ଥାନ ଶ୍ମଶାନ, ଲେପନ ଭସ୍ମ ବା ପାଉଁଶ, ବାହନ ବୃଷଭ ଇତ୍ୟାଦି । ସେ ମଦନକୁ ଦହନ କରିଥିଲେ । ପରେ ରତି ଦେବୀଙ୍କ କାତର ବିଳାପ ଶୁଣି ତାଙ୍କୁ ଜୀଆଇ ଦେଇଥିଲେ । ଗରଳକୁ କେହି ସମ୍ଭାଳିପାରିଲେ ନାହିଁ । ସେ କେବଳ ତୋଳିଦେଇ ନିଜ ଦେହ ମଧ୍ୟରେ ରଖିପାରିଥିଲେ ଇତ୍ୟାଦି । ମନୁ ଲେଖିଛନ୍ତି—"ନ ମାଂସଭକ୍ଷଣେ ଦୋଷୋ ନ ମଦ୍ୟେ ନ ଚ ମୈଥୁନେ; ପ୍ରବୃତ୍ତିରେଷା ଭୂତାନାଂ ନିବୃତ୍ତିସ୍ତୁ ମହାଫଳା ।" ଅର୍ଥାତ୍ ମାଛ, ମାଂସ, ମଦ ଖାଇଲେ ଦୋଷ ନାହିଁ । ମୈଥୁନରେ ମଧ୍ୟ । ପ୍ରାଣୀମାନଙ୍କର ଏହା ପ୍ରବୃତ୍ତି; କିନ୍ତୁ ନିବୃତ୍ତିରେ ମହା-ଫଳ ମିଳେ । ନିବୃତ୍ତିର ଏହି ମହାଫଳ ଶିଖାଇବା ନିମିତ୍ତ ଋଷିମାନେ ମହାଦେବଙ୍କୁ ଏପରି ରୂପ ଓ ଗୁଣରେ ମଣ୍ଡିତ କରିଛନ୍ତି ବୋଲି ଜଣାପଡ଼ୁଛି ।

ଶିବ ଦେବତାମାନଙ୍କର ରଜା ନୁହନ୍ତି, ଅଥଚ ତାଙ୍କୁ କୁହାହୋଇଛି ମହାଦେବ । କାରଣ କ'ଣ ? ହିନ୍ଦୁ-କଳ୍ପନା ଅନ୍ୟାନ୍ୟ ଦେବତାମାନଙ୍କୁ ନାନା ଐଶ୍ୱର୍ଯ୍ୟରେ ରଖିଅଛି । ଇନ୍ଦ୍ରଙ୍କର ବଡ଼ ସୁନ୍ଦର ହାତୀ ଘୋଡ଼ା

ଅଛନ୍ତି । ତାଙ୍କର ନନ୍ଦନ-କାନନର ତୁଳନା ନାହିଁ । ତାଙ୍କ ବୈଠକଖାନାରେ ବଛା ବଛା ସୁନ୍ଦରୀ ଅପ୍ସରା ସବୁବେଳେ ନାଚୁଛନ୍ତି । ଏହିପରି ଐଶ୍ୱର୍ଯ୍ୟ କମ୍ ବହୁତ ଅନ୍ୟ ଦେବତାମାନଙ୍କର ଅଛି; କିନ୍ତୁ ଶିବଙ୍କର କ'ଣ ଅଛି ? ମଣିମାଣିକ୍ୟ, ହୀରା ମାଳାକୁ ସେ ଗ୍ରହାନ୍ତି ନାହିଁ; ଚନ୍ଦନ, କସ୍ତୁରୀ ପାଖରେ ପଶେ ନାହିଁ; ଦେହରେ ବୋଲି ହୁଅନ୍ତି ପାଉଁଶ; ଫୁଲମାଳଟିଏ ମଧ୍ୟ ପିନ୍ଧନ୍ତି ନାହିଁ । ସାପ ମାଳାର କାର୍ଯ୍ୟ କରନ୍ତି ।

ପାର୍ବତୀ ରଜାର ଝିଅ । ରାଜାଝିଅ ବେଶରେ ସେ ଗଲେ ଶିବଙ୍କ ପାଖକୁ । ସେ ତାଙ୍କୁ ଆଉ ଆଖିରେ ସୁଦ୍ଧା ଅନାଇଲେନାହିଁ । ତାଙ୍କର ଭଳିଆ ନଗ୍ନାଡ଼ମ୍ବର ତପସ୍ୱିନୀ ବେଶ ସେ ଯେତେବେଳେ ଧରିଲେ, ସେତେ-ବେଳେ ଯାଇଁ ସେ ସ୍ତ୍ରୀ ସ୍ୱରୂପରେ ଗୃହୀତା ହୋଇଥିଲେ । ଦେବାସୁର ଯୁଦ୍ଧ ପରେ ଯେତେବେଳେ ଗରଳ ବାହାରିଲା ଓ ଏ କାଳର ଆଟମ୍ ବମ୍ ପରି ସେଥିରେ ସୃଷ୍ଟି ଜଳି ପୋଡ଼ିଯିବ ବୋଲି ଜଣା ପଡ଼ିଲା, ସୃଷ୍ଟିକୁ ସେହି କେବଳ ରକ୍ଷା କରିଥିଲେ ଗରଳକୁ ଢୋକିଦେଇ । ତାଙ୍କ କଣ୍ଠ ପୋଡ଼ିଯାଇ ନୀଳ ହୋଇଗଲା । ତେଣୁ ତାଙ୍କୁ କୁହନ୍ତି ନୀଳକଣ୍ଠ । ତ୍ୟାଗ ସଂଯମ ଶିବଙ୍କଠାରେ ମୂର୍ତ୍ତି ଧରିଛି ବୋଲି ଜଣାପଡ଼ୁଛି । ଏଥି ନିମିତ୍ତ ଦେବତା-ମାନଙ୍କର ରାଜା ନ ହୋଇ ସେ ମହାଦେବ ।

କାଳୀ, ଗଣେଶ କିମ୍ବା ବିଷ୍ଣୁମନ୍ଦିରରେ ଯେପରି ଚତ୍ ଚତ୍ ରୂପଧାରୀ ମୂର୍ତ୍ତି ଅଛନ୍ତି, ଶିବମନ୍ଦିରରେ ସେପରି ମୂର୍ତ୍ତି ନ ଥାଏ । ଯାହା ଥାଏ, ତାହା ଏକ ଲିଙ୍ଗ ଓ ତାହାକୁ ବେଷ୍ଟନ କରି ଯେଉଁ ବୃତ୍ତ ଥାଏ, ତାକୁ କହନ୍ତି ଶକ୍ତି । ଏହି ଶକ୍ତି ଓ ଲିଙ୍ଗ ଯଥାକ୍ରମେ ସ୍ତ୍ରୀ ଓ ପୁରୁଷ ଚିହ୍ନ ଅଟେ । ହିମାଳୟଠାରୁ କୁମାରୀକାପର୍ଯ୍ୟନ୍ତ ଭୂଭାଗରେ ଏହି ଚିହ୍ନ ଶକ୍ତି (ଯୋନି) ଓ ଲିଙ୍ଗ ମହାଦେବ ବା ଶିବ ସ୍ୱରୂପ ପୂଜିତ ହୁଅନ୍ତି । କାରଣ କ'ଣ ?

ହିନ୍ଦୁ ଗୃହସ୍ଥ ନିମିତ୍ତ ମହାଦେବ କଳ୍ପନା ହୋଇଅଛି ସମ୍ପୂର୍ଣ୍ଣ ଓ ଶକ୍ତିଶାଳୀ ଆଦର୍ଶ । ଉପର ସ୍ତର ସୃଷ୍ଟିର ଉତ୍ପତ୍ତିସ୍ଥଳ ଯୋନି ଓ ଲିଙ୍ଗର ମିଳନ । ସୃଷ୍ଟିକାରିଣୀ ଶକ୍ତି ଅବାଧ ଓ ଅବିଶୃଙ୍ଖଳ ଭାବରେ ଚାଳିତ ହେଲେ ଦୁର୍ବଳ ହୋଇଯିବ । ସେଥି ନିମିତ୍ତ ଭଗବାନ ଇତର ପ୍ରାଣୀମାନଙ୍କର ଯୌନମିଳନର ସୂତ୍ର ତାଙ୍କ ନିଜ ହାତରେ ରଖିଅଛନ୍ତି । ଏମାନେ ଯେତେ-

ଯେତେବେଳେ ଇଚ୍ଛା ସେତେବେଳେ ଏହା ବ୍ୟବହାର କରିପାରନ୍ତି ନାହିଁ । ଏକ ନିର୍ଦ୍ଦିଷ୍ଟ ସମୟରେ କେବଳ ଏହା ଇତର ପ୍ରାଣୀମାନଙ୍କଠାରେ ଉଦ୍‌ଭିନ୍ନ ହୁଏ; କିନ୍ତୁ ମନୁଷ୍ୟଠାରେ ଏହା ଚିର ଜାଗରୂକ । ଭଗବାନ ମନୁଷ୍ୟଙ୍କୁ ବୁଦ୍ଧି ଦେଇଛନ୍ତି; ତେଣୁ ଯୌନମିଳନର ଗୁପ୍ତ ମଧ୍ୟ ତାହା ହାତରେ ରଖିଦେଇଛନ୍ତି । ସାଧାରଣ ମନୁଷ୍ୟ ଏହା ଜାଣିପାରେ ନାହିଁ । ଏ ଶକ୍ତିର ଅପବ୍ୟବହାର ହେତୁ ସମାଜର ଦୈହିକ ଓ ମାନସିକ ଭାବରେ ଦୁର୍ବଳ ପିଲାଙ୍କର ଜନ୍ମ ପ୍ରାଚୁର୍ଯ୍ୟ ନିମିତ୍ତ ଦେବରାଜ୍ୟ ଅସୁରରାଜ୍ୟରେ ପରିଣତ ହେଉଛି ।

ଏହି ଶକ୍ତି ଉପରେ ମନୁଷ୍ୟସମାଜର ସମସ୍ତ ଶିବ ବା ମଙ୍ଗଳ ନିର୍ଭର କରେ ବୋଲି ହିନ୍ଦୁ ଶିବମନ୍ଦିରରେ ଯୋନି ଓ ଲିଙ୍ଗ ସ୍ଥାପନ କରି ସମାଜକୁ ଯେପରି କହୁଛି, "ଏହାଙ୍କୁ ପୂଜା କର, ଅର୍ଥାତ୍ ନିର୍ମଳ ସଂଯମ ଭାବରେ ପାର୍ବତୀ ପରମେଶ୍ୱର ଯେପରି ଯୋଗିନୀ ଓ ଯୋଗୀ ହୋଇ ଏହାର ବ୍ୟବହାର କରିଥିଲେ ସେପରି କର, ତେବେ ଯାଇଁ ତୁମର ଶିବ (ମଙ୍ଗଳ) ପାଇବ ।" କାର୍ତ୍ତିକକୁମାରଙ୍କ ପରି ସୁନ୍ଦର ଓ ବଳିଷ୍ଠ ଏବଂ ଗଣେଶଙ୍କ ପରି ସର୍ବ-ବିଦ୍ୟାସୁରକ୍ଷିତ ପିଲା ସମାଜରେ ଜନ୍ମହୋଇ କୁଳ ଓ ଦେଶର ମୁଖ ଉଜ୍ଜ୍ୱଳ କରିବେ ।

ବେଲପତ୍ର ମହାଦେବଙ୍କର ବଡ଼ ପ୍ରିୟ । କାହିଁକି ? ଋଷିମାନେ କାମଶକ୍ତିର ପ୍ରବଳ ପ୍ରତାପ ଅଙ୍ଗେ ଅଙ୍ଗେ ଭୋଗିଥିଲେ । ଉପଦେଶଗୁଡ଼ିକ ଲେଖିଦେଲେ ଚଳିବ ନାହିଁ । ଅଧିକାଂଶ ଜାଣନ୍ତି, କାମଶକ୍ତିସଂରକ୍ଷଣ ଶକ୍ତିଦାୟକ ଓ ନାନାବିଧ ଭାବରେ ମଙ୍ଗଳକାରକ; କିନ୍ତୁ ଏହା ପାଳିବା କାଠିକର ପାଠ । ତେଣୁ ଏ ଶକ୍ତି ସାଧାରଣ ଲୋକ କିପରି ରକ୍ଷା କରି-ପାରିବେ, ସେଥି ନିମିତ୍ତ ସେମାନେ ଉପଦେଶ ସହିତ ଉପାୟ ମଧ୍ୟ ଖଞ୍ଜିଥିଲେ । ବେଲପତ୍ର ବ୍ୟବହାର କାମଶକ୍ତିର ପ୍ରଶମନକାରକ ଅଥଚ ମାରକ ନୁହେଁ । ଥଣ୍ଡା ପାଣିରେ ତରଳ ଘିଅ ବସିଯାଏ, ନଷ୍ଟ ହୁଏ ନାହିଁ । ଯୁବକ ଯୁବତୀ ବ୍ରହ୍ମଚର୍ଯ୍ୟ ରଖିବା ନିମିତ୍ତ ଏହା ପ୍ରତିଦିନ ବ୍ୟବହାର କରିବା ଉଚିତ ଏବଂ ସେମାନଙ୍କର ମହାଦେବଙ୍କ ପରି ବିଳାସହୀନ ଜୀବନଯାପନ ମଧ୍ୟ ଆବଶ୍ୟକ ।

ମହାଦେବ 'ଜଳଶାୟୀ' କାହିଁକି ହୁଅନ୍ତି ? ମହାତ୍ମା ଗାନ୍ଧି ଲେଖିଛନ୍ତି, "ଯେତେବେଳେ ତୁମର ବାସନା (କାମ) ତୁମକୁ ପରାଜୟ କରିବାକୁ ବସିବ××× ବାଧ୍ୟ ଭାବରେ ଗୋଟିଏ ଉପାୟ ଗ୍ରହଣ କରାଯାଇପାରେ । ଗୋଟିଏ ଶୀତଳ ଜଳପୂର୍ଣ୍ଣ ଟବ୍ ବା କୁଣ୍ଡ ମଧ୍ୟରେ ଗୋଡ଼ ଦୁଇଟିକୁ ବାହାରେ ରଖି ବସିଯାଅ, ଅଳ୍ପ ସମୟ ମଧ୍ୟରେ ଉତ୍ତେଜନା ଶାନ୍ତ ହୋଇଯିବ । ଯଦି ଦୁର୍ବଳ ହୋଇ ନ ଥାଅ, ତେବେ କିଛି ସମୟ ଅଧିକ ବସିପାର; କାରଣ ଦୁର୍ବଳ ଅବସ୍ଥାରେ ଥଣ୍ଡା ଧରିବାର ଭୟ ଅଛି ।"

ଗରଳକୁ ଅନ୍ୟ କୌଣସି ଦେବତା ସମ୍ଭାଳି ପାରିଲେ ନାହିଁ । ମହାଦେବ କେବଳ ସମ୍ଭାଳିନେଲେ । କପରି ? ସେ ଊର୍ଦ୍ଧ୍ୱରେତା ବୋଲି; ଅର୍ଥାତ୍ ବ୍ରହ୍ମଚର୍ଯ୍ୟ ସ୍ୱରୂପ ବୀର୍ଯ୍ୟ ଦେହରେ ରଖିପାରିଲେ ସହଜରେ ରୋଗ-ବୀଜ (ବିଷ) ଦେହରେ ପଶିଲେ ସୁଦ୍ଧା କିଛି କରିପାରେ ନାହିଁ । ବ୍ରହ୍ମଚାରୀମାନେ ସାଧାରଣତଃ ଦୀର୍ଘଜୀବୀ ଓ ନୀରୋଗ ।

ଓଡ଼ିଆ ବ୍ରାହ୍ମଣମାନେ ସାଧାରଣତଃ ଶାକ୍ତ । ବୀର୍ଯ୍ୟଧାରଣର ଅସାଧାରଣ ଶକ୍ତି ସେମାନେ ଭଲ ଜାଣିଥିଲେ । ଗଜପତିଙ୍କର ଜଣେ ରାହାଙ୍ଗ (ପୁରୀ ନିକଟସ୍ଥ) ପ୍ରଗଣା ଅଧିବାସୀ ବ୍ରାହ୍ମଣ ମନ୍ତ୍ରୀ ଥିଲେ । ତାଙ୍କ ପୁଅକୁ ହଇଜା ଧରିଲା । ବ୍ରାହ୍ମଣୀ ମଫସଲରୁ ପୁରୀ ସହରସ୍ଥ ସ୍ୱାମୀ (ମନ୍ତ୍ରୀ)ଙ୍କ ପାଖକୁ ଘନ ଘନ ମନୁଷ୍ୟ ଉପରେ ମନୁଷ୍ୟ ପଠାଇଲେ ପୁଅକୁ ଦେଖିବା ନିମିତ୍ତ । ରାଜକାର୍ଯ୍ୟର ଗୁରୁତ୍ୱ ନିମିତ୍ତ ସେ ସ୍ତ୍ରୀଙ୍କ ସାଙ୍ଗେ ସାଙ୍ଗେ ଯାଇ-ପାରିଲେ ନାହିଁ ଏବଂ ପରିଶେଷରେ ବିରକ୍ତ ହୋଇ ସ୍ତ୍ରୀ ପାଖକୁ କହି ପଠାଇଲେ, "କହିବ, ସେ ଦିନ ଯଦି ଏ ବୀର୍ଯ୍ୟରୁ ଜନ୍ମ ଥିବ ତେବେ ସେ ହଇଜାରେ ମରିବ ନାହିଁ । ଠିକ୍ ତାହା ହିଁ ହେଲା; ପିଲା ମଲା ନାହିଁ । ସେ ସମୟରେ ଶାସନୀ ବ୍ରାହ୍ମଣମାନଙ୍କର ସ୍ତ୍ରୀ-ସହବାସ ମନ ଇଚ୍ଛାରେ ନ ହୋଇ ଶାସ୍ତ୍ରବିଧି ଅନୁସାରେ ହେଉଥିଲା ।

ମହାଦେବ ତ୍ରିଲୋଚନ । ଏବେ ବୈଜ୍ଞାନିକମାନେ ନାନା ଗବେ-ଷଣା କରି କହୁଅଛନ୍ତି ଯେ, ମନୁଷ୍ୟର ସହସ୍ରାର ଚକ୍ରରେ (ମସ୍ତିଷ୍କ) ମଧ୍ୟରେ **Pineal Gland** ଆତ୍ମା ରହିଥିବା ସମ୍ଭବ । ମନୁଷ୍ୟ ଊର୍ଦ୍ଧ୍ୱରେତା ହେଲେ ଅର୍ଥାତ୍ ରେତ ଅଧୋଗାମୀ ନ ହୋଇ ଦେହରେ ରହିଲେ ଊର୍ଦ୍ଧ୍ୱଗ ହୋଇ

ମସ୍ତିଷ୍କକୁ ପୁଷ୍ଟକରେ । ତେଣୁ ମନୁଷ୍ୟ ବୁଦ୍ଧିମାନ୍ ଓ ମେଧାବୀ ହୁଏ । ମହାଦେବ ଊର୍ଦ୍ଧ୍ୱରେତା ହୋଇଥିବାରୁ ହିନ୍ଦୁର ସମସ୍ତ ଶାସ୍ତ୍ର ତାଙ୍କ ମୁହଁରୁ ବାହାରିଅଛି ଓ ମା ପାର୍ବତୀ (ଯୋଗିନୀ) ସେ ସମସ୍ତ ବୁଝିପାରୁଅଛନ୍ତି । ପିନିଆଲ୍ ବା ସହସ୍ରାର ଚକ୍ର ବୀର୍ଯ୍ୟରକ୍ଷଣଦ୍ୱାରା ପୁଷ୍ଟ ହେଲେ ମନୁଷ୍ୟ ଦିବ୍ୟଦୃଷ୍ଟି ପାଇପାରେ ବୋଲି ଅନେକ ପଣ୍ଡିତଙ୍କର ଧାରଣା । ଏହା ହିଁ ଯୋଗୀମାନଙ୍କର ଅଦୃଶ୍ୟ ଦର୍ଶନ ଏବଂ ପରମଯୋଗୀ ଶିବଙ୍କର ତୃତୀୟ ନେତ୍ର ସ୍ୱରୂପ ରୂପାୟିତ । ବ୍ରାହ୍ମଣ ସେହି ଉଦ୍ଦେଶ୍ୟରେ (Gland) ମୁଣ୍ଡରେ ଚନ୍ଦନ ଟୋପା ଦିଏ । ଆମର ଓଜ ଧାତୁ ଶୁକ୍ରରୁ ବାହାରେ । ଯାହାର ଓଜ ଯେତେ ଅଧିକ, ତାହାର ତେଜ, ବୁଦ୍ଧି, ଜୀବନୀଶକ୍ତି ସେତେ ପ୍ରଖର ।

ମହାଦେବଙ୍କର ବାହନ ବୃଷ, କାର୍ତ୍ତିକଙ୍କର ବାହନ ମୟୂର, ଗଣେଶଙ୍କର ମୂଷା ଓ ମା ପାର୍ବତୀଙ୍କର ସିଂହ । ସିଂହର ଖାଦ୍ୟ ହେଉଛି ବୃଷ, ମୟୂରର ମୂଷା । ଏହିପରି ପରସ୍ପରବିରୋଧୀ ବାହନ ଘର ମଧ୍ୟରେ ରଖି ମହାଦେବ ଘର ଚଳାଉଅଛନ୍ତି । ଏହା ହିଁ ଗୃହସ୍ଥର ଅନ୍ୟ ଏକ ମହତ୍ ଆଦର୍ଶ । ଘର କଲେ ପୁଅ ଝିଅ ଏପରି କି ଭାର୍ଯ୍ୟା ଯେ ତମ ସାଙ୍ଗରେ ସବୁବେଳେ ଏକମତ ହେବେ, ଭାବିବା ବୃଥା । ରୁଚି, ସ୍ୱଭାବ ଭିନ୍ନ ହେଲେ ସୁଦ୍ଧା ସବୁବେଳେ ମୁଣ୍ଡକୁ ଥଣ୍ଡା ରଖି ଗୃହସ୍ଥ ସମସ୍ତଙ୍କ ବୁଦ୍ଧି ବଳରେ ଚଳାଇନେବେ । ତେବେ ଯାଇ ଘରର ସ୍ଥାୟିତ୍ୱ (Stability ସମ୍ଭବ ।

ମହାଦେବଙ୍କ ମୁଣ୍ଡରେ ଗଙ୍ଗା ଓ ଚନ୍ଦ୍ର ରହିଅଛନ୍ତି । ଗୋଟିଏ ନୁହେଁ, ଦୁଇଟି ଶୀତଳ ଉପଚାର ବିଷକୁ ଦବାଇବା ନିମିତ୍ତ ସେ ଧରିଛନ୍ତି । ଗୃହସ୍ଥଙ୍କୁ ସବୁବେଳେ ସେହିପରି ମୁଣ୍ଡକୁ ଶୀତଳ ରଖି ସ୍ଥିରଚିତ୍ତ ହୋଇ ସଂସାରର ଦୁଃଖଜଞ୍ଜାଳ ମଧ୍ୟରେ ଚଳିବାକୁ ହେବ । କଣ୍ଠରେ ଅଛି ଗରଳ; ଦୁଷ୍ଟ ଲୋକଙ୍କ ସହିତ ବ୍ୟବହାର କରିବାକୁ ହେବ ହିଁ ହେବ । ତାଙ୍କ ଉପରେ ସାପ ପରି ଫଁ ଫଁ ନ ହେଲେ, କଡ଼ା କଥା ନ କହିଲେ ଗୃହସ୍ଥ ଚଳିପାରିବ ନାହିଁ । ବିଷ (ରାଗ, ହିଂସା ପ୍ରଭୃତି) କେବଳ କଣ୍ଠରେ ରହିବ, ମନକୁ ଛୁଇଁବ ନାହିଁ ।

ମହାଦେବଙ୍କର ସାପ ମାଳା ସ୍ୱରୂପ ଦେହରେ ଅଛି । ସାପ ତାଙ୍କର ସମ୍ପୂର୍ଣ୍ଣ ଆୟତ୍ତ ଓ ଅଧୀନ । ସାପଗୁଡ଼ିକ ମନୁଷ୍ୟର ଷଡ଼୍‌ରିପୁର ପ୍ରତୀକ । କାମ, କ୍ରୋଧ, ଲୋଭ ଆଦି ରିପୁ ମନୁଷ୍ୟର ଅବିଚ୍ଛେଦ୍ୟ ଅଙ୍ଗ ସତ୍ୟ, କିନ୍ତୁ ଏଗୁଡ଼ିକ ଯେତେବେଳେ ମନୁଷ୍ୟଙ୍କୁ ଆୟତ୍ତାଧୀନ କରନ୍ତି, ସେତେବେଳେ ମନୁଷ୍ୟ ହୁଏ ଅମନୁଷ୍ୟ, ସେତେବେଳେ ସେ ସାପବିଷରେ ଜାରହୋଇ ପରି ହୁଏ ଓ ଜଳି ପୋଡ଼ି ହୋଇ ମରେ । ରିପୁଗୁଡ଼ିକ ତାର ଆୟତ୍ତାଧୀନ ହେଲେ ମନୁଷ୍ୟର ଦେବଭାବ ବିକଶିତହୁଏ । ସେ ହୁଏ ମହାମନୁଷ୍ୟ । (Fire is a bad master, but a good servant.)

ଗଙ୍ଗାସଲିଳ ସର୍ବବିଷଘ୍ନ । ସମାଜକୁ ଏହା ଶିଖାଇବା ନିମିତ୍ତ ମହାଦେବଙ୍କଠାରେ ଗଙ୍ଗାର ବ୍ୟବହାର ଅପରିହାର୍ଯ୍ୟ କରାଯାଇଅଛି ।

ମହାଦେବ ମଦନ ଦହନ କରିଥିଲେ । କାମର ପ୍ରବଳ ଶକ୍ତି ମହାଦେବଙ୍କୁ ମଧ୍ୟ ଦୋହଲାଇଥିଲା । ସେହିପରି ପ୍ରଥମ ଯୌବନରେ ଗୃହସ୍ଥ କାମଶକ୍ତିଦ୍ୱାରା ବିଚଳିତ ହେବେ ହିଁ ହେବେ; କିନ୍ତୁ ନିଜର ଭବିଷ୍ୟତ ନିମିତ୍ତ ତାହାଙ୍କୁ ସେତେବେଳେ ତାହା ଦବାଇବାକୁ ପଡ଼ିବ । ମହାଦେବ ପରେ ମଦନଙ୍କୁ ପୁନର୍ଜୀବିତ କରିଥିଲେ । ଗୃହସ୍ଥ ସେହିପରି ସଂଯମୀ ହୋଇ ପରେ ଗାର୍ହସ୍ଥ୍ୟ ଜୀବନ ଆରମ୍ଭ କରିବେ । ସେ ସଂଯମୀ ହେଲେ ତାର ଅମୃତଧାରା ପରି ସନ୍ତାନରେ ହୃଷ୍ଟ ସବଳ ଚିର ଜନ୍ମ ହେବେ । ଏହାର ବିପରୀତରେ ଗଢ଼ିଥିବା ବହୁ ରୁଗ୍ଣ ଅଳ୍ପାୟୁ, ବୁଦ୍ଧିହୀନ କିମ୍ବା ବିକୃତ ବୁଦ୍ଧିର ପିଲା ଜନ୍ମ ନେଇ ସମାଜ ମୁହଁରେ କାଳି ବୋଳିଦେବେ । ମହାଦେବଙ୍କର ବାହନ ବୃଷ । ଗୃହସ୍ଥ ବୃଷ ପରି ଋତୁ ସମୟରେ କେବଳ ସ୍ତ୍ରୀ-ସହବାସ କରିବେ । ଗୃହସ୍ଥର ସନ୍ତୋଷ ନିମିତ୍ତ ଏ କଥାଗୁଡ଼ିକ ଏପରି ରୂପକରେ (Allegory) ଥାଇଅଛି ।

ଯୋନିସହ ଲିଙ୍ଗ ନିମିତ୍ତ ଯାହା କରାଯାଇଅଛି, ତାହା ଅଧିକ ଚିତ୍ତାକର୍ଷକ । ଲିଙ୍ଗକୁ ଶକ୍ତି ବେଷ୍ଟନ କରି ରହିଅଛି ଅର୍ଥାତ୍ ସ୍ତ୍ରୀଶକ୍ତି ପୁରୁଷକୁ ସବୁବେଳେ ଯୋଗାଇଦେଉଛି ନିଶ୍ଚିତ । ସ୍ତ୍ରୀ ଏହା ନକଲେ ମନୁଷ୍ୟ ସୃଷ୍ଟି ସମ୍ଭବ ନାହିଁ । ହିନ୍ଦୁ ସ୍ତ୍ରୀକୁ ସବୁବେଳେ ଆଦ୍ୟାଶକ୍ତି ବୋଲି କହନ୍ତି । ଜର୍ଜ ବର୍ଣ୍ଣାଡ଼ଶ ମଧ୍ୟ ତାଙ୍କ(Man and superman) ରେ ଏହା ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି । ହିନ୍ଦୁ ଶାସ୍ତ୍ରରେ ଆମେ ଦେଖିବାକୁ ପାଉଁ ଯେ ଯେତେବେଳେ

ବିପଦ ଆପଦ ପଡ଼େ, ଦେବତାମାନେ ସମ୍ଭାଳି ପାରନ୍ତି ନାହିଁ, ସେତେ-ବେଳେ ଦେବୀ କେବଳ ଦେବତାଙ୍କୁ ରକ୍ଷା କରନ୍ତି । ବାହାଘର ସମୟରେ କନ୍ୟା ବରବର ବର ଆଗରେ ରହେ । ତାହାର କାରଣ ସ୍ୱରୂପ ଶାସ୍ତ୍ର କହେ—

"ଅଗ୍ନିଃ ସୋମସ୍ତ ଗନ୍ଧର୍ବ ବର ବାଣ ପ୍ରହାରକାଃ
ତସ୍ମାଦଗ୍ରେ ସ୍ଥିତା କନ୍ୟା ଯତଃ ସା ପତିରକ୍ଷିକା ।"

ଅର୍ଥାତ୍ ଅଗ୍ନି କାମାଗ୍ନି) ଦ୍ୱାରା ବର ବିଚଳିତ ହେଲେ ମଦ୍ୟ-ପାୟୀ (ସୋମରସ) ଓ ବ୍ୟଭିଚାରୀ (ଗନ୍ଧର୍ବ ବିବାହ) ହେବାର ସମ୍ଭାବନା ଥାଏ । କନ୍ୟା ତାହାଙ୍କୁ ସେଥିରୁ ମୁକ୍ତ ଦିଅନ୍ତି । ସେଥି ନିମିତ୍ତ ସେ ପତି-ରକ୍ଷିକା । ଗୃହସ୍ଥ ଜୀବନରେ ଗୃହିଣୀ ପାର୍ବତୀଙ୍କ ପରି ସଂଯମିନୀ ନ ହେଲେ ଗୃହସ୍ଥ ସଂଯମୀ ହୋଇପାରିବ ନାହିଁ । କେତେକ ଲୋକ କହନ୍ତି, ଶିବଙ୍କ-ଠାରୁ ସ୍ତ୍ରୀଶକ୍ତି-ପ୍ରତୀକ ଇକାର କାଢିନେଲେ ଶିବ ଶବ ରୂପରେ ଅକାମୀ ହୋଇଯିବେ । ଏହା ଶିଖାଇବାକୁ ଶକ୍ତି ରୂପ ବୃତ୍ତକୁ ଲିଙ୍ଗଠାରୁ ଯଥେଷ୍ଟ ଅଧିକ ବଡ଼ କରାହୋଇଛି ଓ ଲିଙ୍ଗ ଶକ୍ତି ମଧ୍ୟରେ ରହି ତାହାର କ୍ଷୁଦ୍ରତା ଓ ଅସହାୟତାର ପ୍ରମାଣ ଦେଉଅଛି ।

ସ୍ତ୍ରୀ ବା ଗୃହିଣୀକୁ ସଂଯମ ଶିଖାଇବା ନିମିତ୍ତ ଅନ୍ୟ ଏକ ରୂପକ ସୃଷ୍ଟି କରାଯାଇଅଛି । ଶିବରାତ୍ରି ପଡ଼େ ବସନ୍ତର ଆରମ୍ଭରେ । ଏହି ବସନ୍ତ ସମୟରେ କାମଲାଳସା ଉଦ୍‌ବେଳ ହୋଇଉଠେ । ପୁରୁଷ ତୁଳନାରେ ସ୍ତ୍ରୀର କାମଲାଳସା ପ୍ରଚ୍ଛନ୍ନ ହେଲେ ସୁଦ୍ଧା ତୀବ୍ରତର । ଇଂରେଜ କବିଙ୍କ ଭାଷାରେ "ପ୍ରେମ ହେଉଛି ସ୍ତ୍ରୀ ଜୀବନର ସର୍ବସ୍ୱ ।" "Man's love is of man's life a thing apart; It is woman's whole existenece" —Byron. ଶିବପୂଜା ନିମିତ୍ତ ଯେତେ ପର୍ବ ଅଛି, ଶିବରାତ୍ରି (ଫାଗୁଣ ଅମାବାସ୍ୟା) ତାହା ମଧ୍ୟରେ ସର୍ବପ୍ରଧାନ । ବଶିଷ୍ଠଙ୍କ ପରାମର୍ଶ ଅନୁସାରେ ମା ଲକ୍ଷ୍ମୀ ଥରେ ଶିବପୂଜା ନିମିତ୍ତ ଏକଶତ ପଦ୍ମଫୁଲ ଯୋଗାଡ଼ କରି ପୂଜା ଆରମ୍ଭକଲେ । ମହାଦେବ ମା ଲକ୍ଷ୍ମୀଙ୍କର ଭକ୍ତି ପରୀକ୍ଷା କରିବା ନିମିତ୍ତ ଫୁଲଡାଲାରୁ ଦୁଇଟି ଫୁଲ ଦେବୀଙ୍କ ଅଜ୍ଞାତରେ ଅପହରଣ କଲେ । ଦେବୀ ଫୁଲ ଅର୍ପଣ କରିବା ସମୟରେ ଦେଖିଲେ ଯେ, ଦୁଇଟି ଫୁଲ ନାଅଣ୍ଟ ପଡ଼ିଲା । ପୂଜାଠାରୁ ଉଠିଗଲେ ପୂଜା ନିଷ୍ଫଳ ହେବ । ଅନ୍ୟ କୌଣସି

ଉପାୟ ନ ଦେଖି ମା ନିଜର ସ୍ତନ ଦୁଇଟି କାଟିଦେଇ ପଦ୍ମ ପରିବର୍ତ୍ତେ ତାହା ମହାଦେବଙ୍କୁ ଅର୍ପଣ କଲେ । ମହାଦେବ ସନ୍ତୁଷ୍ଟ ହୋଇ ବର ଦେଲେ । କର୍ତ୍ତିତ ସ୍ତନ ବର ପ୍ରଭାବରେ ପୁଣି ଯଥାସ୍ଥାନ ଅଧିକାର କଲା । ସେହିଦିନଠାରୁ ବେଲ ଫଳର ନାମ ହେଲା ଶ୍ରୀ (ଲକ୍ଷ୍ମୀ) ଫଳ; କାରଣ ମା'ଙ୍କର କର୍ତ୍ତିତ ସ୍ତନ ଏହି ଘଟଣାର ସ୍ମାରକ ସ୍ୱରୂପ ବେଲ ଫଳରେ ରୂପାନ୍ତରିତ ହୋଇଥିଲା ।

ମା ଲକ୍ଷ୍ମୀ କାହିଁକି ଏହିପରି ଶିବପୂଜା କଲେ ? ଆମର ଶାସ୍ତ୍ର କହେ ଶିବ ଓ ପାର୍ବତୀ ଯୋଗୀ ଓ ଯୋଗିନୀର ଜୀବନ ଯାପନ କରନ୍ତି । ପୂଜକ ଯଦି ପୂଜ୍ୟଙ୍କର ଆଦର୍ଶ ପାଳନ ନ କରେ, ପୂଜ୍ୟ ସନ୍ତୁଷ୍ଟ ହେବେ କି ? ବ୍ରହ୍ମଶିଳ୍ପ (ସୂତାକଟା) ଓ ଅହିଂସାର ଆଚରଣ ନ କରି କେହି ନିଜକୁ ମହାତ୍ମାଙ୍କର ଗାନ୍ଧିଶିଷ୍ୟ କହିପାରିବେ କି ? ଶ୍ରୀ ଚୈତନ୍ୟ ଦେବ ଯେପରି ଜୀବନ ଯାପନ କରୁଥିଲେ, ସେପରି ନ କଲେ କେହି ବୈଷ୍ଣବ ବୋଲାଇ-ପାରିବ କି ? ସେହିପରି ଶିବପୂଜକର ଜୀବନ ଶିବଙ୍କର ଅନୁରୂପ ହେବା ବାଧ୍ୟ । ମା ଲକ୍ଷ୍ମୀ ଅର୍ଥାତ୍ ଆମ ଘରେ ଘରେ ବିରାଜୁଥିବା ସ୍ତ୍ରୀ ରୂପ-ଧାରିଣୀ ଲକ୍ଷ୍ମୀ ବସନ୍ତ ସମୟରେ ସଂଯମ ଆଚରଣ କରିବେ । ମାତୃତ୍ୱର ନିର୍ମଳ ଓ ଅଭ୍ରାନ୍ତ ପ୍ରତୀକ ସ୍ତନକର୍ତ୍ତନର ରୂପକ ଅର୍ଥ ହେଉଅଛି, ସେମାନେ ଏହି ସମୟରେ ମାତୃତ୍ୱ ପାଇଁ ଉଦ୍‌ବେଳ ହେବେ ନାହିଁ । ବେଲପତ୍ରର ବ୍ୟବହାର ତାଙ୍କୁ ଏ ଦିଗରେ ସାହାଯ୍ୟ କରିବ । ବ୍ରହ୍ମଚାରିଣୀ ହୋଇ ସ୍ୱାମୀଙ୍କୁ ବ୍ରହ୍ମଚାରୀ କରି (ଏହା ହିଁ ସ୍ତନକର୍ତ୍ତନ) ଶାସ୍ତ୍ରବିଧି ଅନୁଯାୟୀ ସ୍ୱାମୀର ପାର୍ଶ୍ୱବର୍ତ୍ତିନୀ ହେଲେ ଯେଉଁ ଫଳ ଫଳିବ ଅର୍ଥାତ୍ ଯେଉଁ ପିଲାଝିଲା ଜନ୍ମ ହେବେ, ସେମାନେ ହେବେ ଶ୍ରୀ ଫଳ ଅର୍ଥାତ୍ ଦୈହିକ, ମାନସିକ ଓ ଆଧ୍ୟାତ୍ମିକ ଭାବରେ ସୁସ୍ଥ ସବଳ । ଏହା ଏବେ ଅଭ୍ରାନ୍ତ ଭାବରେ ପ୍ରମାଣିତ ହେଲାଣି ଯେ ନିତି ନିତି ସ୍ତ୍ରୀ-ସହବାସ କଲେ ଶୁକ୍ରକୀଟ ଦୁର୍ବଳ ହୋଇଯାଏ । ସାବିତ୍ରୀ ଭଳିଆ ଝିଅ ପାଇବା ନିମିତ୍ତ ତାଙ୍କ ବାପାଙ୍କୁ ହବିଷ୍ୟାନ୍ନ ଆହାର କରି ତୀବ୍ର ବ୍ରହ୍ମଚର୍ଯ୍ୟ ପାଳିବାକୁ ହୋଇଥିଲା । ଜାଗରର ରୂପକ ଅର୍ଥ ହେଉଛି ଜାଗ୍ରତ ବା Alert । ବୀର୍ଯ୍ୟ ଧାରଣ ନିମିତ୍ତ ବସନ୍ତ ସମୟ ତମାମ ଜାଗ୍ରତ ବା Alert ରହିବାକୁ ହେବ, ଏହା ହିଁ ଜାଗରର ଉପବାସ ବା ବ୍ରତର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ବୋଲି ଅନୁମିତ ହେଉଅଛି

———

# କାଳୀ ଓ କାଳୀପୂଜା

କାଳୀଙ୍କର ମୂର୍ତ୍ତି ବିକଟାଳ, ଦେହ କଟିମିଟି କଳା ଓ ଲଙ୍ଗଳା, ଆଖି ରକ୍ତବର୍ଣ୍ଣ, ରକ୍ତ ପିଇ ପିଇ ଜିଭ ଆଗକୁ ବାହାରି ପଡ଼ିଲାଣି ଓ ରକ୍ତ ଥପ ଥପ ହୋଇ ସେଥିରୁ ପଡ଼ୁଛି । ଅଣ୍ଟାରେ ବନ୍ଧାହୋଇଛି କେଜାଣି କେତେ ଛିନ୍ନହସ୍ତ । ବେକରେ ପଡ଼ିଛି ମନୁଷ୍ୟମୁଣ୍ଡର ମାଳା ଏକ (ଡାହାଣ) ହାତରେ ଖଣ୍ଡା, ଅନ୍ୟ (ବାଁ) ହାତରେ ଖପର (ମନୁଷ୍ୟମୁଣ୍ଡ), ଉପର ଦୁଇ ହାତ (ତାଙ୍କର ଚାରି ହାତ) ଟେକା ହୋଇଛି ଯେପରି କିଛି ଦେବା ନିମିତ୍ତ । ଏପରି ବିକଟାଳ ମୂର୍ତ୍ତି ଧରି ସେ ନୃତ୍ୟବିହ୍ୱଳା ହୋଇ ଭଲମନ୍ଦ ଜାଣି ନ ପାରି ନିଜର ସ୍ୱାମୀ ଶିବଙ୍କୁ ଗୋଡ଼ତଳେ ଚକଟି ଦେଇ ଚାଲି ଯାଉଛନ୍ତି ।

ହିନ୍ଦୁର ଏହି କଳ୍ପନାକୁ ଅହିନ୍ଦୁ କ'ଣ ନ କହନ୍ତି ? ହିନ୍ଦୁ ବୀଭତ୍ସ, ତାହାର ଦେବତା ତଦନୁରୂପ ! କିନ୍ତୁ ହିନ୍ଦୁର ଗର୍ବର ବିଜ୍ଞାନଜ୍ଞାନ ଏହି ବୀଭତ୍ସତାର ଶିରପ୍ରଶିରାରେ ଫୁଟିଉଠିଛି ।

ତେବେ ଏ ସମ୍ବନ୍ଧୀୟ ଆଲୋଚନାକୁ ସ୍ପଷ୍ଟ କରିବା ନିମିତ୍ତ ପୃଥିବୀର ଭୂଗୋଳ ସମ୍ବନ୍ଧରେ ଯତ୍‌କିଞ୍ଚିତ୍ ଆଲୋଚନା ଆବଶ୍ୟକ ।

ପୃଥିବୀପୃଷ୍ଠରେ ଜଳ ଓ ସ୍ଥଳଭାଗର ବିସ୍ତାର ଯେପରି ବର୍ତ୍ତମାନ ଓ କେତେ ଲକ୍ଷ ବର୍ଷ ହେଲା ଅଛି, ବହୁ ପୂର୍ବେ ଏପରି ନ ଥିଲା । ପୁରାକାଳରେ ଯେଉଁ ଅତିକାୟ ପ୍ରାଣୀମାନେ ଧରାପୃଷ୍ଠରେ ବିଚରଣ କରୁଥିଲେ, ବର୍ତ୍ତମାନ ସେମାନେ କେଉଁଆଡ଼େ ଉଭେଇଗଲେଣି । ସେମାନଙ୍କର ଭୂଗର୍ଭସ୍ଥ କଙ୍କାଳ ଉପରକୁ ବାହାରି ସେମାନଙ୍କର ଅତୀତ ଅସ୍ତିତ୍ୱର ପ୍ରମାଣ ଦେଉଅଛି । ଦିନ ଥିଲା, ଆଜି ହିମାଳୟ ଓ ଆଲ୍‌ପସ୍ ପର୍ବତମାଳା ଯେଉଁଠାରେ ବିଦ୍ୟ-

ମାନ, ସେଠାରେ ଅତଳ ସାଗର ରହିଥିଲା । ସେହି ସାଗରତଳୁ ବାହାରିଛି ପୃଥିବୀର ଉଚ୍ଚତମ ପର୍ବତମାଳା । ବଙ୍ଗୋପସାଗରଠାରୁ ଆଇସ୍‌ଲଣ୍ଡ୍ ପର୍ଯ୍ୟନ୍ତ ଏକ ନିରବଚ୍ଛିନ୍ନ ସାଗର ରହି ପୃଥିବୀକୁ ଉତ୍ତର, ଦକ୍ଷିଣାର୍ଦ୍ଧରେ ବିଭାଗ କରୁଥିଲା । କୃଷ୍ଣ ସାଗର, କାସ୍ପିୟାନ ସାଗର ପ୍ରଭୃତି ସେହି ମହା-ସାଗରର ଧ୍ୱଂସାବଶେଷ ଅଟନ୍ତି । ଅଷ୍ଟ୍ରେଲିଆଠାରୁ ଆଫ୍ରିକା ପାରହୋଇ ଆଟଲାଣ୍ଟିକ ମଧ୍ୟରେ ବ୍ରାଜିଲ ପର୍ଯ୍ୟନ୍ତ ଯେଉଁ ସୁପ୍ରକାଣ୍ଡ ଭୂଭାଗ ସମୁଦ୍ର-ଗର୍ଭକୁ ଚାଲିଯାଇଛି, ତାହାର ନାମ ଥିଲା ଗଣ୍ଡୱାନା । ପୃଥିବୀର ଏବଂବିଧ ତାତ୍‌କାଳିକ ଅବସ୍ଥିତି ସମ୍ବନ୍ଧରେ ଏବେ ସମସ୍ତେ ଏକମତ ହୋଇଅଛନ୍ତି ।

ଏବେ ବିଜ୍ଞାନର ଗବେଷଣା ବାହାର କରିଛି ଯେ ପୃଥିବୀର ବୟସ ୧୬୦ କୋଟି ବର୍ଷ । ଏହା ପୂର୍ବରୁ ପାଶ୍ଚାତ୍ୟ ଦେଶର ଧାରଣା ଥିଲା ଯେ ପୃଥିବୀର ବୟସ ହୋଇଛି ଆଠ ଦଶ ହଜାର ବର୍ଷ ମାତ୍ର ଓ ଭଗବାନଙ୍କୁ ପୃଥିବୀରେ ସୃଷ୍ଟି ଗଢ଼ିବାକୁ ଲାଗିଥିଲା ୭ ଦିନ ମାତ୍ର । ଏ ଯୁଗର ପ୍ରସିଦ୍ଧ ଇଂରେଜ ଲେଖକ H. G. Wells ଲେଖିଛନ୍ତି ହିନ୍ଦୁ କେବଳ ମନୁଷ୍ୟ-ସମାଜରେ ପୃଥିବୀର ବୟସ ଠିକ ଜାଣିଥିଲା ଓ ହିନ୍ଦୁମତରେ ଏହା ହେଉଛି ୧୯୭ କୋଟି ୨୯ ଲକ୍ଷ ୪୯ ହଜାର ବର୍ଷ । ଏହି ଅଚିନ୍ତ୍ୟମାନ୍ କାଳ ମଧ୍ୟରେ ପୃଥିବୀର ରୂପ, ଜଳ ଓ ସ୍ଥଳଭାଗର ଅବସ୍ଥିତି ବହୁ ଥର ବଦଳିଲାଣି । ହିନ୍ଦୁର ସୃଷ୍ଟି ସ୍ଥିତି. ପ୍ରଳୟପରମ୍ପରା ଅନନ୍ତ କାଳସ୍ରୋତରେ ଆବହମାନ କାଳରୁ ଚାଲିଆସିଛି । ଏହି ପରମ୍ପରାକୁ ପ୍ରତିଦିନ ବ୍ରାହ୍ମଣ ତ୍ରିସନ୍ଧ୍ୟାରେ ଗାୟତ୍ରୀ ମନ୍ତ୍ରୋଚ୍ଚାରଣକରି ସ୍ମରଣ କରିଥାଏ । ସଂସାରର କ୍ଷଣସ୍ଥାୟିତ୍ୱ ସ୍ମରଣ କଲେ ଭୋଗଲାଳସାପରାୟଣ ମନୁଷ୍ୟର ମନ ସେଥିରୁ କ୍ଷାନ୍ତ ହେବାକୁ ପ୍ରୟାସ କରି ବାଦବିସମ୍ବାଦ ବୃଦ୍ଧିକରିବା ନିମିତ୍ତ ଅନିଚ୍ଛୁକ ହୁଏ । ସମ୍ଭବତଃ ସେଥି ନିମିତ୍ତ ଏପରି ବିଧାନ ରହିଛି ।

"......ସତ୍ୟଂ ଚ × × × ସୂର୍ଯ୍ୟା ଚନ୍ଦ୍ରମସୌ ଧାତା ଯଥା—ପୂର୍ବମକଳ୍ପୟତ ଦିବଂ ଚ ପୃଥିବୀଂ—ଚାନ୍ତରୀକ୍ଷମଥୋ ସ୍ୱଃ ।"

ଅର୍ଥାତ୍—ଶ୍ରୀ ଭଗବାନଙ୍କର ପର୍ଯ୍ୟାପ୍ତ ତପସ୍ୟାରୁ ଋତ ଓ ସତ୍ୟର ଉତ୍ପତ୍ତି ହେଲା । ତାହା ପରେ ରାତ୍ରି, ସମୁଦ୍ର, ବର୍ଷା, ଦିନ ଓ ରାତ୍ରିର ବ୍ୟବସ୍ଥାପକ ସୂର୍ଯ୍ୟ ଓ ଚନ୍ଦ୍ର, ସ୍ୱର୍ଗ, ମର୍ତ୍ତ୍ୟ, ଆକାଶ ସୃଷ୍ଟି ହେଲା । "ଯଥା-

ପୂର୍ବମକଳ୍ପୟତ୍" ପୂର୍ବ ସୃଷ୍ଟିରେ ଯେପରି ଥିଲା, ବର୍ତ୍ତମାନ ସୃଷ୍ଟିରେ ସେପରି ହେଲା । ବର୍ତ୍ତମାନର ସଭ୍ୟତା ପରି ବରଂ ଏହାଠାରୁ ଆହୁରି ଉଚ୍ଚତର ସଭ୍ୟତା ଅନନ୍ତ କାଳସ୍ରୋତରେ ଲୀନ ହୋଇଛି । ରାବଣକାଳୀନ ସଭ୍ୟତା ବିଷୟରେ କହଯାଉ । ତାହାର ଯେଉଁ ପୁଷ୍ପକ ରଥ ବା ଏରୋପ୍ଲେନ୍ ଥିଲା, ତାହା ସମ୍ଭବତଃ ପେଟ୍ରୋଲରେ ନ ଚଳି ବିଦ୍ୟୁତ୍‌ଶକ୍ତିରେ ଆରୋହୀର ମନଦ୍ୱାରା ଚାଳିତ ହେଉଥିଲା । ସେ ଆକାଶରେ ଅଦୃଶ୍ୟ ଭାବରେ ରହି ଯୁଦ୍ଧ କରୁଥିଲା ଓ ଯେଉଁ ଅସ୍ତ୍ରଶସ୍ତ୍ରର ବ୍ୟବହାର ରାମାୟଣରେ ଉଲ୍ଲେଖ ଅଛି, ତା ଆଧୁନିକ ଅସ୍ତ୍ରଶସ୍ତ୍ରଠାରୁ ଖ୍ୟାତିରେ ଆହୁରି ମାରାତ୍ମକ ଥିଲା ବୋଲି ଜଣାପଡ଼େ । ସମ୍ଭବତଃ ରାବଣ କ୍ଷୁଦ୍ର ଲଙ୍କାଦ୍ୱୀପର ଯେ ରାଜା ଥିଲା କେବଳ ତାହା ନୁହେଁ, ଲଙ୍କାସଂଲଗ୍ନ ବିସ୍ତୀର୍ଣ୍ଣ ଗଣ୍ଡୱାନା ଭୂଭାଗ କିମ୍ବା ତାହାର ଏକ ସୁବିସ୍ତୀର୍ଣ୍ଣ ଅଂଶର ମଧ୍ୟ ସମ୍ରାଟ ଥିଲା । ସେ କାଳର ସୁମହାନ୍ ସଭ୍ୟତା କାଳକ୍ରମେ ନିଶ୍ଚିହ୍ନ ହୋଇଛି । ବିବିଧ ପୁରାଣଉଲ୍ଲିଖିତ ପ୍ରବଳପ୍ରତାପ-ଶାଳୀ ଅସୁରମାନଙ୍କର ଉପାଖ୍ୟାନ ବିଶୁଦ୍ଧ କଳ୍ପନା ବୋଲି ଜଣା-ପଡ଼ିଲେହେଁ ଉପରୋକ୍ତ ବିଷୟର ଅନୁସାରେ ସୁଦୂରଅତୀତରେ କଳ୍ପବ୍ୟାପୀ ସଭ୍ୟତାର ଇତିହାସ ବୋଲି ଜଣାପଡ଼ୁଛି । ହିନ୍ଦୁଋଷିମାନେ ତାଙ୍କର ଦିବ୍ୟ-ଦୃଷ୍ଟିରେ ଏ ଅତୀତକ ଦେଖିପାରିଥିଲେ ଓ ପ୍ରକୃତି ବା ଭଗବାନଙ୍କର ନିୟମ, ସୃଷ୍ଟି, ସ୍ଥିତି, ପ୍ରଳୟକୁ ସାଧାରଣ ଲୋକ ଆଗରେ ଜୀବନ୍ତ ଭାବରେ ବୁଝା-ଇବା ନିମିତ୍ତ କାଳୀମୂର୍ତ୍ତି କଳ୍ପନା କରିଥିଲେ ।

କାଳଠାରୁ ଅଧିକତର ବଡ଼ ଧ୍ୱଂସ ବା ପ୍ରଳୟକାରିଣୀ ଶକ୍ତି କାହାର ଅଛି ? କାଳୀ ସେହି ଶକ୍ତିର ପ୍ରତୀକ ମାତ୍ର । ବେକରେ ଯେଉଁ ମୁଣ୍ଡମାଳାର ହାର ପଡ଼ିଛି, ସେଥିରୁ ପ୍ରତ୍ୟେକ ମୁଣ୍ଡ ଲକ୍ଷ ଲକ୍ଷ ବର୍ଷ ସ୍ଥାୟୀ ଏକ ଏକ ସଭ୍ୟତାର ପ୍ରତୀକ ମାତ୍ର । ଏହିପରି କେତେ ସଭ୍ୟତା ଉଦ୍ଭେଇ-ଗଲଣି, ଉଠିଲଣି, ପୁଣି ଉଦ୍ଭେଇଲଣି । କାଳପରମ୍ପରା ସୃଷ୍ଟି, ସ୍ଥିତି, ପ୍ରଳୟ: ପୁଣି ସୃଷ୍ଟି-ସ୍ଥିତି-ପ୍ରଳୟ ବାରମ୍ବାର ଚାଲିଆସିଛି । "ଯଥାପୂର୍ବ-ମକଲ୍ପୟତ୍" ପୂର୍ବ ସୃଷ୍ଟିରେ ଯେପରି ଥିଲା, ବର୍ତ୍ତମାନ ସେପରି ହେବ ଏବଂ ଅନନ୍ତ ଭବିଷ୍ୟତରେ ମଧ୍ୟ ଏପରି ହେଉଥିବ । ଇଣ୍ଡିଆରେ ଯେଉଁ ନକସ୍ତା କିମ୍ବା ହସ୍ତପାଳ ବଳା ହୋଇଛି, ତାହା କଳ୍ପବ୍ୟାପୀ ଅନ୍ତର୍ହିତ ପ୍ରବଳପ୍ରତାପୀ ଲୋକ, ରାଜା କିମ୍ବା ସମ୍ରାଟମାନଙ୍କର

ବସ୍ତୁବିଧ ପ୍ରତିଷ୍ଠା କମ୍ବା ତାହାର ବିନାଶ-ଉଭୟ ହି ବିବିଧ ବୈଷୟିକ କର୍ମ । କାଳର କରାଳ ଶକ୍ତିରେ ସେ ସମସ୍ତ ମନୁଷ୍ୟଚକ୍ଷୁରେ ଯେତେ ବ୍ୟାପକ, ମାୟାମୂକ କମ୍ବା ସ୍ଥାୟୀ ବୋଲି ଦେଖାଗଲେ ସୁଦ୍ଧା କାଳ ତାଙ୍କୁ ହିନେ ନା ହିନେ ଗ୍ରାସିଛି, ଧୀରେ ଧୀରେ ଗ୍ରାସୁଛି ଓ ଗ୍ରାସିବ ।

ସଂସାରର ଗର୍ବ, ଦମ୍ଭ, ଅଭିମାନ ଓ ଐଶ୍ୱର୍ଯ୍ୟର ନଶ୍ୱରତା ସାଧାରଣ ମନୁଷ୍ୟଙ୍କୁ ଶିଖାଇବା ନିମିତ୍ତ କାଳୀମୂର୍ତ୍ତିର କଳ୍ପନା । ହିନ୍ଦୁର ନୂଆ ବର୍ଷ ମାର୍ଗଶିର ମାସରେ ଆରମ୍ଭ ହୁଏ; କାଳୀପୂଜା ପଡ଼େ ବର୍ଷର ଶେଷ କାର୍ତ୍ତିକ ମାସରେ । ଗୋଟିଏ ବର୍ଷ ଶେଷ ହେଲା, କାଳ ଗୋଟିକୁ ଗ୍ରାସିଲା; ଏହିପରି କେତେ କୋଟି ଗ୍ରାସିଛି ଓ ଗ୍ରାସିବ । ଗ୍ରାସ ହୋଇଥିବା ବର୍ଷ ବା କାଳକୁ ଅନନ୍ତ କାଳସ୍ରୋତରେ ମିଶାଇବା ନିମିତ୍ତ ହିନ୍ଦୁ ପାପ ଜାଲି ବାଟ ଦେଖାଏ ଓ ଆସୁଥିବା ନୂତନ ବର୍ଷକୁ ମଧ୍ୟ ଅଭିବାଦନ କରେ । ଅମାବାସ୍ୟାର ଅନ୍ଧକାର ରାତ୍ରି ପ୍ରଳୟକାଳୀନ ଅନ୍ଧକାରର ସୂଚନା ମାତ୍ର ।

କାଳୀଙ୍କର ଉପର ଦୁଇ ହାତରେ ଅସ୍ତ୍ରଶସ୍ତ୍ର ନାହିଁ; ଟେକା ହୋଇଛି କଲ୍ୟାଣ ଦେବା ନିମିତ୍ତ । କାହାକୁ ? ଧର୍ମ ଓ ସତ୍ୟ ଅବିନାଶୀ । ସେ କତୁଛନ୍ତି ଧାର୍ମିକ, ସତ୍ୟପରାୟଣ ଲୋକଙ୍କର ଭୟ କରିବାର କାରଣ ନାହିଁ ସେମାନେ ମଞ୍ଜି ହୋଇ ରହିବେ ପୁଣି ସୃଷ୍ଟି କରିବାକୁ । ପ୍ରଳୟ ସରିଲା, ସୃଷ୍ଟି ଆସିବ । ପ୍ରଳୟ ବେଳେ ଶିବ (ମଙ୍ଗଳ) ନ ଥା'ନ୍ତି । କିନ୍ତୁ ସେ ଥା'ନ୍ତି ସୁପ୍ତ । କାଳୀ ତାଙ୍କୁ ଛୁଇଁଲେ; ଚେତନା ଆସିଲା; ଶିବ ସଂସ୍ପର୍ଶରେ ସୃଷ୍ଟି କରିବାକୁ ପୁଣି ଇଚ୍ଛା ହେଲା ।

ଗଣିତର ବୈଜ୍ଞାନିକ ଜ୍ଞାନର ଅନୁଭୂତି ବା ତତ୍ତ୍ୱଗୁଡ଼ିକୁ ହିନ୍ଦୁ ରୂପକ (Allegory) ନାମକ ଗୁହାରେ "ରାଧାକୃଷ୍ଣ", "ଗୌରୀଶଙ୍କର", "ଗଣେଶ" ଓ "କାଳୀ" ପ୍ରଭୃତି ନାମ ଦେଇ ନିହିତ କରାଯାଇଛି ।

# ଗଣେଶ ଓ ରାଶି (ତଳ) ଓକାରା

ଦେବତା ମନୁଷ୍ୟ ନୁହନ୍ତି । ତାଙ୍କ ରୂପ ଯେ ଅବିକଳ ମନୁଷ୍ୟ ପରି ହେବ, ଏହା ଭାବିବା ବିଡ଼ମ୍ବନା । ଦେବତାମାନଙ୍କର କୌଣସି ରୂପ ବା ଦେହ ନାହିଁ; ତେବେ ହିନ୍ଦୁ ଦେବତାମାନଙ୍କୁ ରୂପ ଦେଇଅଛନ୍ତି ଭାବପ୍ରକାଶ କରିବା ନିମିତ୍ତ । ଭାବ ଯାହା ପ୍ରକାଶ କରିବାକୁ ଇଚ୍ଛା କରେ, ତାହା ରୂପାୟିତ ହୁଏ ଦେବତାମାନଙ୍କ ଆକାରରେ । ଆମ୍ଭେମାନେ ପୂର୍ବେ କହିଅଛୁ, (ଶିବ ଓ ଶିବରାତ୍ରି "ପୂଜକଙ୍କୁ ଯେଉଁ ଭାବ ଶିକ୍ଷାଦେବା ନିମିତ୍ତ ଚିତ୍ରିତ କରାଯାଇଅଛି, ପୂଜ୍ୟଙ୍କୁ ଭାବନାରୂପେ ସେହି ରୂପ, ଗୁଣ ଓ ଆଭରଣରେ ମଣ୍ଡନ କରାଯାଇଛି ।"

ଗଣେଶ (ଗଣ+ଈଶ) ହେଉଛନ୍ତି ଗଣ ବା ଜନସାଧାରଣଙ୍କର ପ୍ରତୀକ । ଜନସାଧାରଣ ସମୂହ ଭାବରେ ହାତୀ ପରି (ଗଣେଶଙ୍କର ହାତୀମୁଣ୍ଡ, ଥନ୍ତଲପେଟ) ବଳୁଆ ବା ଶକ୍ତିଶାଳୀ ଏବଂ ହାତୀ ପରି (ନିପଟ ମୂର୍ଖକୁ ଆମେ ଗଜମୂର୍ଖ ବୋଲି କହୁଁ) ନିର୍ବୁଦ୍ଧିଆ; ତେଣୁ ଗଣର ପ୍ରତୀକ ଦେବତାଙ୍କୁ ହାତୀମୁଣ୍ଡ ଆବରଣ ସ୍ୱରୂପ ଦିଆଯାଇଛି । ଥନ୍ତଲପେଟିଆ ଲୋକଙ୍କ ପରି ଜନସାଧାରଣ ସହଜରେ ଚଳନ୍ତି ନାହିଁ; ତେଣୁ ଗଣେଶ ଲମ୍ବୋଦର ବା ଥନ୍ତଲପେଟିଆ ହୋଇଅଛନ୍ତି । ହାତୀ ନିର୍ବୁଦ୍ଧିଆ ହେଲେ ସୁଦ୍ଧା ସେ ଯେତେବେଳେ ରାଗିଯାଏ, ସେତେବେଳେ ଏପରି ଭୟଙ୍କର ହୋଇଉଠେ ଯେ ତାହାଠାରୁ ରକ୍ଷା ପାଇବା ସୁକଠିନ । ଠିକ୍ ସେହିପରି ଜନସାଧାରଣ ଯେତେବେଳେ ମାତିଉଠନ୍ତି, ବିପ୍ଳବ ଜଳିଉଠେ, ଧ୍ୱଂସ ଚାରିଆଡ଼େ ବ୍ୟାପିଯାଏ । ଗଣ ବା ସାଧାରଣ ଜନଗଣ ନିର୍ବୁଦ୍ଧିଆ ଓ ବିଘ୍ନ କର୍ମସାଧନ ଦିଗରେ ଅଶକ୍ତ ହେଲେ ସୁଦ୍ଧା ଯେ ସେମାନଙ୍କୁ ଆନୁକୂଲ୍ୟରେ ରଖିପାରେ, ତାହାର ସହଜରେ କେହିକିଛି କରିପାରନ୍ତି ନାହିଁ । ତେଣୁ ଗଣେଶ ହେଉଛନ୍ତି "ସର୍ବବିଘ୍ନବିନାଶନ" । ମନୁଷ୍ୟ ଯେତେ ବୁଦ୍ଧିମାନ୍ ହେଉ କାର୍ଯ୍ୟ-

ବଷ ହୋଇ ପଡ଼ନ୍ତେ, ଗଣ ବା ଜନସାଧାରଣ ହିତ ନମିତ୍ତ ସର୍ବଦା ଯତ୍ନ କରିବ ଓ ସେମାନଙ୍କୁ ସ୍ୱତୁଳନାରେ କେବେହେଁ ହେୟଜ୍ଞାନ କରିବ ନାହିଁ । ଏହି ଶିକ୍ଷାଦେବା ନମିତ୍ତ ଋଷିମାନେ ଗଣେଶ କଳ୍ପନା କରିଅଛନ୍ତି ବୋଲି ଅନୁମାନ କରାଯାଉଅଛି । ବ୍ୟବସାୟୀମାନଙ୍କର ବ୍ୟବସାୟ ଚଳିବ ଗଣ ବା ଜନସାଧାରଣଙ୍କୁ ସନ୍ତୁଷ୍ଟ କରିପାରିଲେ; ତେଣୁ ସେମାନେ ଗଣେଶଙ୍କୁ ପୂଜା କରନ୍ତି ।

ଯେଉଁମାନେ ଗଣେଶ ବା ଦଳପତି ବା ନେତା ହେବେ, ସେମାନେ ଗଣେଶଙ୍କ ପରି ଲମ୍ବୋଦର ଓ ପ୍ରଶସ୍ତକର୍ଣ୍ଣ ହେବା ବାଧ୍ୟ । ସବୁ କଥାର ଖବର ରଖିବେ ଓ ଖବର ରଖିବାକୁ ସର୍ବଦା ଯତ୍ନବାନ୍ ହେବେ ଏବଂ ତାହାକୁ ଲମ୍ବୋଦରରେ ରଖି ପ୍ରକାଶ କରିବେ ନାହିଁ ।

ଗଣେଶଙ୍କର ଅନ୍ୟ ଏକ ନାମ ହେଉଛି ଅଗ୍ରପୂଜ୍ୟ । ବିଷ୍ଣୁ, ମହାଦେବ କିମ୍ବା ଯେ କୌଣସି ଦେବ-ଦେବୀଙ୍କର ପୂଜା ଆରମ୍ଭ କଲେ ଆଗ ଗଣେଶଙ୍କୁ ପୂଜା କରାଯାଏ; କାରଣ ଗଣେଶ ହେଉଛନ୍ତି ସର୍ବବିଘ୍ନ-ବିନାଶକ । ଏହା କ'ଣ ସୂଚାଉଅଛି ? ଦେବତାମାନଙ୍କୁ ପୂଜିବା ନିରର୍ଥକ, ଯଦି ଆମେମାନେ ଗଣ ବା ସାଧାରଣ ଲୋକଙ୍କର ପୂଜା ବା ସେବା କରି ନ ପାରୁଁ । ସାଇପଡ଼ଶା ଲୋକ ଭୋକଉପାସରେ ଥିବା ସମୟରେ ଦେବ-ମନ୍ଦିରର ଭୋଗରାଗରେ ହଜାର ହଜାର ଟଙ୍କା ଖର୍ଚ୍ଚ କରିବା ନିଷ୍ଫଳ । ଆରବ ଦେଶର ଗୋଟିଏ ଗଳ୍ପ ଏଠାରେ ଉଲ୍ଲେଖ କରାଯାଇପାରେ । ଆବୁ ବେନ୍ ଆଧେମ୍ ନାମରେ ଜଣେ ନିର୍ମଳ-ଚରିତ୍ର ଲୋକ ଥିଲେ । ରାତିରେ ନିଦ ଭାଙ୍ଗି ଯିବାରୁ ସେ ଦେଖିଲେ ଜଣେ ଦିବ୍ୟପୁରୁଷ ତାଙ୍କ ପାଖେ ବସି କ'ଣ ଲେଖୁଛନ୍ତି । କ'ଣ ଲେଖୁଛ ବୋଲି ଆଧେମ୍ ତାଙ୍କୁ ପଚାରିଲେ । ସେ କହିଲେ, ଭଗବାନଙ୍କୁ ଯେଉଁମାନେ ଭଲ ପାଆନ୍ତି ତାଙ୍କର ନାମ ଲେଖା ହେଉଛି । ଆଧେମ୍ ପଚାରିଲେ, ତାଙ୍କ (ନିଜ) ନାମ କ'ଣ ସେଥିରେ ଅଛି ? ଦିବ୍ୟପୁରୁଷ ନାହିଁ କରିବାରୁ ଆଧେମ୍ କହିଲେ, ମୁଁ ମୋର ଜନସାଧା-ରଣଙ୍କୁ ଭଲ ପାଏ ବୋଲି ତୁମେ ତୁମ ବହିରେ ଲେଖ । ସେ ତାହା କଲେ ଓ ତହିଁଆରଦିନ ରାତିରେ ଆସି ଆଧେମଙ୍କୁ କହିଲେ ଯେ ଭଗବାନ ଯେଉଁମାନଙ୍କୁ କଲ୍ୟାଣ କରିଅଛନ୍ତି, ସେମାନଙ୍କ ନାମର ପ୍ରଥମେ ରହିଅଛି ଆଧେମଙ୍କ ନାମ । ହିନ୍ଦୁ ଋଷିମାନେ ଏହା ହଜାର ହଜାର ବର୍ଷ ପୂର୍ବେ

ଜାଣିଥିଲେ ଓ ଜନସାଧାରଣଙ୍କୁ ଗଣେଶରୂପେ କଳ୍ପନାକରି ତାଙ୍କର ସେବା ବା ପୂଜାକୁ ସବୁ ପୂଜା ଆଗରେ ଥୋଇଥିଲେ ।

ଗଣେଶଙ୍କ ଜନ୍ମ ସମ୍ବନ୍ଧରେ ଭିନ୍ନ ଭିନ୍ନ ଆଖ୍ୟାନ ରହିଅଛି । ଗୋଟିଏ ହେଉଛି ଗଣେଶ ତାଙ୍କ ମା ପାର୍ବତୀଙ୍କର ହଳଦୀ-ମଳକୁଟିରୁ ଜନ୍ମ ଓ ସେ ଜନ୍ମପରେ ଏପରି ଅସାଧାରଣ ବୀର ହେଲେ ଯେ, ଯମ ସୁଦ୍ଧା ତାଙ୍କୁ ପାରିଲେ ନାହିଁ । ସେ ଯମଙ୍କୁ ପରାସ୍ତ କରି ମୂଷା କରିଦେଲେ ଓ ମୂଷା ତାଙ୍କର ବାହାନ ସ୍ୱରୂପ ଖଟୁଅଛି ।

ଏହା ଭିତରେ କଅଣ ଅର୍ଥ ଅଛି ? ସର୍ବସାଧାରଣ ଲୋକ ବୁଦ୍ଧି ଆ ନୁହନ୍ତି । ହଳଦୀ-ମଳକୁଟି ପରି ଅପଦାର୍ଥ ହେଲେ ସୁଦ୍ଧା ଏମାନଙ୍କର ଯେତେବେଳେ ପ୍ରାଣ ବା ଚେତନା ଆସେ, ସେମାନେ ସୃଷ୍ଟି କମ୍ପାଇଦିଅନ୍ତି । ଗଣପ୍ରିୟ ଗଣସେବୀ ବା ପ୍ରଜାହିତୈଷୀ ଲୋକ ମରିଗଲେ ସୁଦ୍ଧା ଅମର ହୋଇ ନାମ ରଖିଦେଇ ଯାଏ । ରାମ, କୃଷ୍ଣ, ଯୁଧିଷ୍ଠିର, ହରିଶ୍ଚନ୍ଦ୍ର, ବୁଦ୍ଧ, ଅଶୋକ ପ୍ରଭୃତି ମରିଥିଲେ ସୁଦ୍ଧା ଅମର ହୋଇଅଛନ୍ତି ଓ ରହିବେ ।

ଗଜମୁଣ୍ଡ ଗଣେଶ ସର୍ବବିଦ୍ୟା ଆୟତ୍ତ କଲେ କିପରି ? ବୁଦ୍ଧି-ପରୀକ୍ଷାରେ ବଡ଼ ଭାଇ କାର୍ତ୍ତିକ ଓ ଅନ୍ୟ ଦେବତାମାନଙ୍କୁ ଜିଣିଲେ କିପରି ? ବୁଦ୍ଧି ବଢାଇବା ନିମିତ୍ତ କ'ଣ କରାଯିବ, ତାହା ମଧ୍ୟ ଋଷିମାନେ ଶିଖା-ଇବା'ର ବ୍ୟବସ୍ଥା କରିଅଛନ୍ତି । ଗଣେଶଙ୍କର ପ୍ରିୟତମ ଖାଦ୍ୟ ହେଉଛି ରାଶିକୋରା ବା ତିଳଲଡ଼ୁ । ଖାଦ୍ୟଯୋଗ୍ୟ ଶସ୍ୟ ମଧ୍ୟରେ ତିଳରେ ମସ୍ତିଷ୍କ ବା ବୁଦ୍ଧି ଗଠନକାରୀ ଉପାଦାନ ଯେତେ ଅଛି, ଅନ୍ୟ କୌଣସି ଶସ୍ୟରେ ସେତେ ନାହିଁ । ଖାଦ୍ୟରେ କାଲ୍‌ସିୟମ୍, ଫସ୍‌ଫରସ୍ ଓ ଲୁହାର ପ୍ରାଚୁର୍ଯ୍ୟ ଥିଲେ ମସ୍ତିଷ୍କ ଭଲ ବଢ଼େ ଓ ଉପରୋକ୍ତ ଜିନିଷଗୁଡ଼ିକ ତିଳରେ ଏକା-ଧାରରେ ରହିଅଛି ।

ସେଥି ନିମିତ୍ତ ଆୟୁର୍ବେଦରେ ତିଳ "ବୁଦ୍ଧିଦଂ ମେଧ୍ୟମ୍" ବୋଲି ଲେଖା ଅଛି ଏବଂ ଧର୍ମ କାର୍ଯ୍ୟରେ ଓ ତର୍ପଣରେ (ତୃପ୍ତି ଦେବା) ତିଳର ବ୍ୟବହାର ଅପରିହାର୍ଯ୍ୟ କରାଯାଇଛି ।

———

# ପୁରୀ ଜଗନ୍ନାଥଙ୍କର ଅମାନୁଷିକ ମୂର୍ତ୍ତି

ଜଗନ୍ନାଥମୂର୍ତ୍ତି କଳ୍ପନାରେ ଓଡ଼ିଆ ହିନ୍ଦୁ ତାହାର ଧର୍ମ ଏବଂ ବାସ୍ତବ ଜ୍ଞାନର ପରାକାଷ୍ଠା ଓ ମହାମିଳନ ଦେଖାଇଅଛି । ବୈଦିକ ହିନ୍ଦୁ ଭଗବାନଙ୍କୁ କୌଣସି ପ୍ରକାରେ ବର୍ଣ୍ଣନା କରି ନ ପାରି ସବା ଶେଷରେ କହିଲେ, ସେ ହେଉଛନ୍ତି "ନେତି" ନ+ଇତି); ଏହା ନୁହନ୍ତି ବା ଏତିକି ନୁହନ୍ତି । (ପ୍ରଥମ ଭାଗର ପଞ୍ଚଦଶ ଶତକ ଦେଖନ୍ତୁ । ) ଭଗବାନଙ୍କର ଅସ୍ତିମୂଳକ (Positive) ବର୍ଣ୍ଣନା ବ୍ରହ୍ମା ମହେଶ୍ୱରଙ୍କ ପାଖରେ ସମ୍ଭବ ହୋଇ ନାହିଁ; କ୍ଷୁଦ୍ରାଦପି କ୍ଷୁଦ୍ର ମନୁଷ୍ୟ ପକ୍ଷରେ ଏହା ଏକାବେଳେ ଅସମ୍ଭବ । କେବଳ ନାସ୍ତିମୂଳକ (Negative) ବର୍ଣ୍ଣନାଦ୍ୱାରା ବୈଦିକ ହିନ୍ଦୁ ଯେ କୌଣସିମତେ ତାଙ୍କୁ ଏକ ମନଭୁଲାଣିଆ ନାମ ଦେଇ ଆଶ୍ୱସ୍ତି ଲଭ କରିଅଛି ।

ବୈଦିକ ଯୁଗର ପରବର୍ତ୍ତୀ ଯୁଗରେ ଲୋକସଂଖ୍ୟା ବଢ଼ିଲା, ଜ୍ଞାନପ୍ରବୃତ୍ତିର ସୀମା କମିଆସିଲା । ସର୍ବସାଧାରଣ ଭଗବାନଙ୍କର "ନେତି" ମୂଳକ ବର୍ଣ୍ଣନା ବୁଝିପାରିଲେ ନାହିଁ । ପୁରାଣ ସେମାନଙ୍କ ନିମିତ୍ତ ଲେଖାହେଲା । ପୁରାଣକାରମାନେ ଭଗବାନଙ୍କୁ ସଗୁଣ ମାନବିକ ରୂପ ଦେଇ ନାନା ଦେବଦେବୀ ଉପାସନା ବିଭିନ୍ନ ରୁଚିବିଶିଷ୍ଟ ସର୍ବସାଧାରଣଙ୍କ ତୃପ୍ତି ନିମିତ୍ତ ସମାଜରେ ପ୍ରଚଳାଇଲେ ।

ସର୍ବସାଧାରଣ ନିରାକାର ଭାବ ଗ୍ରହଣ କରିପାରନ୍ତି ନାହିଁ । ତାଙ୍କର ଆକାର ଦରକାର । ଜ୍ଞାନୀ ଲୋକ ଭଗବାନଙ୍କର ଆକାର ଦେଖିଲେ ବିରକ୍ତ ହୁଅନ୍ତି । ତାଙ୍କର ନିରାକାର ଭାବ ଆବଶ୍ୟକ । ସର୍ବସାଧାରଣଙ୍କ ସଂଖ୍ୟା ବହୁତ ଅଧିକ; ତେଣୁ ଦେଉଳ, ନୈବେଦ୍ୟ, ଧୂପ, ଆରତି ପ୍ରଭୃତି ଆବଶ୍ୟକ ।

ଏହି ଦୁଇ ଭାବର ସମନ୍ୱୟ ରହିଛି ବଳଭଦ୍ର-ସୁଭଦ୍ରା ଜଗନ୍ନାଥ

ମୂର୍ତ୍ତିରେ । ଆଖି, କାନ, ମୁଣ୍ଡ, ନାକ, ପେଟ ମନୁଷ୍ୟର ଯାହାସବୁ ଅଛି, ଉକ୍ତ ମୂର୍ତ୍ତିଙ୍କର ତାହାସବୁ ଅଛି ଅଥଚ ତାହା ମନୁଷ୍ୟର ଅଙ୍ଗ ପରି ନୁହେଁ । ସାକାର ଓ ନିରାକାରର ସମନ୍ୱୟ ଏହିଠାରେ ରହିଅଛି । ଓଡ଼ିଆ ତାଙ୍କୁ 'ଜଗନ୍ନାଥ' ନାମ ଦେଇଛି । ଜଗତରେ ଏକ ଧର୍ମ ବା ମତାଧୀଶ ଲୋକ ନାହାନ୍ତି । ଜ୍ଞାନୀ, ଅଜ୍ଞାନୀ ସମସ୍ତଙ୍କ ମନ ଅନୁକୂଳ ହେବା ନିମିତ୍ତ ସେ ଏପରି ରୂପ ଗଢ଼ିଅଛି ଏବଂ ନିର୍ମୂର୍ତ୍ତି ଭଗବାନଙ୍କର ଅଲଂଘନୀୟ ନିୟମ ସୃଷ୍ଟି-ସ୍ଥିତି-ପ୍ରଳୟର ସୂଚନା ଦେଉଅଛନ୍ତି । ନାମ 'ଜଗନ୍ନାଥ' ଦେଇ ସେ ଦେଉଳରୁ ସାନ-ବଡ଼, ଚଣ୍ଡାଳ-ବ୍ରାହ୍ମଣ ଭେଦ ବାହାର କରି ଦେଇଅଛି ।



# ରାଧାକୃଷ୍ଣଲୀଳା ( ୧ )

ବିଶ୍ୱ-ସାହିତ୍ୟରେ ଯେତେ ରୂପକ (Allegory) ଅଛି, ତାହା ମଧ୍ୟରେ ହିନ୍ଦୁର ରାଧାକୃଷ୍ଣଲୀଳା ସବୁଠାରୁ ବଡ଼ । ଭାଷାର ତରଳତା, ଭାବର ମଧୁରତା, ଉପମାର ବାସ୍ତବତା, ଭକ୍ତିର ବିପୁଳତା ଓ ହୃଦୟର ବ୍ୟାକୁଳତା ଏହି ରୂପକ ଲୀଳାରେ ଯେପରି ଫୁଟିଉଠିଛି, ତାହା ଅନ୍ୟତ୍ର ବିରଳ । ଭାବୁକ ପଣ୍ଡିତମାନେ ତେଣୁ ଏହାକୁ "The greatest spiritual allegory of the world" ବା ପୃଥିବୀର ସର୍ବଶ୍ରେଷ୍ଠ ଆଧ୍ୟାତ୍ମିକ ରୂପକ ବୋଲି କହିଅଛନ୍ତି; କିନ୍ତୁ ହିନ୍ଦୁଧର୍ମର ସମାଲୋଚକ-ମାନଙ୍କ ହାତରେ ଅନଭିଜ୍ଞ ଲୋକଙ୍କୁ ପାଗଳାପାଗଳି କରି ନିଜ ଧର୍ମ ଆଡ଼କୁ ଆକର୍ଷଣ କରିବାରେ ରାଧାକୃଷ୍ଣଙ୍କର ପ୍ରେମଲୀଳା ଏକ ସୁଦୃଢ଼ ବନ୍ସିଖାଡ଼ ହୋଇଥାଏ ।

ସରଳ ସହଜଭାବରେ ଲୋକଶିକ୍ଷାର ପ୍ରଣାଳୀ ହିନ୍ଦୁ ଯେପରି ଆୟତ୍ତ କରିଥିଲା, ତାହା ଅନ୍ୟତ୍ର କ୍ୱଚିତ୍ ଦେଖାଯାଏ । ହିନ୍ଦୁ ତାହାର ସମସ୍ତ ଶାସ୍ତ୍ର, ଏପରି କି ଆଇନ୍, ଇଞ୍ଜିନିୟରିଂ ପ୍ରଭୃତିକୁ ସୁଲଳିତ ପଦ୍ୟ ଆକାରରେ ରଖିଦେଇ ଯାଇଅଛି । ପଦର ପଦଲାଳିତ୍ୟ ଭାବ ମନେ ରଖିବାରେ ଯେପରି ସାହାଯ୍ୟ କରେ, ଗଦ୍ୟ ସେପରି କରେ ନାହିଁ ।

ଉପମା ଭାବକୁ ସ୍ପଷ୍ଟ କରେ, ରୂପକତା ତାହାକୁ ଜୀବନ୍ତ କରେ ଓ ସମୂହ ଲୋକଶିକ୍ଷା ଏହି ରୂପକତାଦ୍ୱାରା ବ୍ୟାପକତା ପାଏ; ତେଣୁ ହିନ୍ଦୁର ଶାସ୍ତ୍ରପୁରାଣରେ ରୂପକର ବହୁଳ ବ୍ୟବହାର ରହିଅଛି ।

ହିନ୍ଦୁର ସମସ୍ତ ଝଡ୍ୟାଗୁରର ମୂଳରେ ରହିଅଛି ବିଜ୍ଞାନ ଓ ଧର୍ମ-ସାଧନ । ଧର୍ମସାଧନର ଲକ୍ଷ୍ୟ ଶେଷ ହେଲା ଜୀବାତ୍ମା ସହିତ ପରମାତ୍ମାଙ୍କର ମିଳନ ବା ଯୋଗ (ସଂଯୋଗୋ ଯୋଗୋ ଇତ୍ୟୁକ୍ତୋ ଜୀବାତ୍ମାପରମାତ୍ମନୋଃ) । ଏହି ଜୀବାତ୍ମା ଯେତେବେଳେ କୋଟିଜନ୍ମ ପୁଣ୍ୟଫଳ ସ୍ୱରୂପ ପରମାତ୍ମାଙ୍କ

ସ୍ଥାପିତ ମିଳିତ ହୁଏ, ସେତେବେଳେ ଯେଉଁ ଅତ୍ୟନ୍ତ ସୁଖ ମିଳେ, ତାହା ବର୍ଣ୍ଣନା କରିବା ନିମିତ୍ତ ମନୁଷ୍ୟର ଭାଷା ନାହିଁ । ତାହା ଅକଥ୍ୟ, ଅବର୍ଣ୍ଣ୍ୟ—ମୂକାସ୍ୱାଦନବତ୍ (ନାରଦ) "ବ୍ରହ୍ମସଂସ୍ପର୍ଶ ଫଳରେ ଯେଉଁ ଅତ୍ୟନ୍ତ ସୁଖ ଅନୁଭବ କରାଯାଏ", ତାହାର ଉପମା ନାହିଁ କହିଲେ ଚଳେ ।

"Man can in no wise speak or even stammer."

—*Angela of Foligno*

"ସୁଖେନ ବ୍ରହ୍ମସଂସ୍ପର୍ଶଂ, ଅତ୍ୟନ୍ତଂ ସୁଖମଶ୍ନୁତେ"—ଗୀତା ୬।୨୮ ।

ତେବେ ଯତ୍‌କିଞ୍ଚିତ୍ ଭାବରେ ମାନବୀୟ ପ୍ରେମ ବା ସ୍ତ୍ରୀ-ପୁରୁଷର ମିଳନ ଏହାର ଆଭାସ ମାତ୍ର ।

କେବଳ ଯେ ଆମ ଦେଶରେ ଶାସ୍ତ୍ରକାରମାନେ ଏହା କହିଛନ୍ତି ତାହା ନୁହେଁ, ବିଦେଶୀୟ ଭାବୁକ ଲେଖକମାନେ ଏହା ଏବେ ମୁକ୍ତକଣ୍ଠରେ ସ୍ୱୀକାର କଲେଣି ।

Miss Evlyn Underhill ତାଙ୍କର "Mysticism" ନାମକ ବହିର ୯୫ ପୃଷ୍ଠାରେ ଲେଖିଛନ୍ତି :—"The Persons who imagine that the spiritual marriages of St. Cathrin or St. Theresa, veils a perverted sensuality or that the Divine inebriation of the Sufi is the apotheosis of drunkenness do but advertise their ignorance of the mechanism of Arts."

ଅର୍ଥାତ୍ ଭକ୍ତିମତୀ ସନ୍ନ୍ୟାସିନୀ କାଥରିନ୍ ଓ ଟେରେସାଙ୍କର ଆଧ୍ୟାତ୍ମିକ ବିବାହ ବା ମିଳନକୁ ବିକୃତ କାମଚେଷ୍ଟା ଓ ସୁଫିମାନଙ୍କର ପାରମାର୍ଥିକ ମାଦକତାକୁ ମଦ୍ୟପାନର ଉଗ୍ରବସ୍ଥାକରଣ ବୋଲି ଯେଉଁମାନେ କଳ୍ପନା କରନ୍ତି, ସେମାନେ ତାହାଦ୍ୱାରା ସେମାନଙ୍କର କଳାଜ୍ଞାନ ପ୍ରୟୋଗରେ ଅପାରଗତାର ବିଜ୍ଞାପନ ମାତ୍ର ପ୍ରଚାର କରନ୍ତି । ସେ ପୁଣି କହିଛନ୍ତି, "The experience of the mystic is inexpressible except in some side long way, some hint or parallel which will stimulate the dormant intuition of the reader

and convey, as all poetic language does, something beyond its surface-sense. Hence the enormous part which is played in all mystical writings by symbolism and imagery."

ଅର୍ଥାତ୍ ସନ୍ନ୍ୟାସୀ ସହଜ ସରଳ ଭାବରେ ତାଙ୍କର ଅନୁଭୂତି ପ୍ରକାଶ କରିପାରନ୍ତି ନାହିଁ; ଅନୁଭୂତିର ପାଖାପାଖି ଆସୁଥିବା ଆଭାସର ଆଶ୍ରୟ ନେଇ ସେ ପାଠକର ସୁପ୍ତ ସହଜାତ ପ୍ରବୃତ୍ତିକୁ ଚେତାଇ ଦିଅନ୍ତି । କବିତା ଆଭାସଦ୍ୱାରା ବା ଠାରିଦେଇ ଭିତର କଥା ଯେପରି ଉପରକୁ ଆଣେ, ଭକ୍ତ ବା ସନ୍ନ୍ୟାସୀ ସେହିପରି ସାମାନ୍ୟ ଆଭାସ ଦେଇ ତାଙ୍କର ହୃଦୟର ଗଭୀର ଅନୁଭୂତି ପ୍ରକାଶ କରନ୍ତି । ପାରମାର୍ଥିକ ଲେଖାରେ ତେଣୁ ଉପମା ଓ ରୂପକତାର ବହୁଳତା ଦେଖାଯାଏ ।

ସେ ତାଙ୍କର "Mysticism" ନାମକ ବହିର ୧୬୨-୧୬୪ ପୃଷ୍ଠାରେ ଉପରୋକ୍ତ ବିଷୟକୁ ଭଲଭାବେ ବୁଝାଇବାକୁ ଯାଇ ଲେଖିଛନ୍ତି :—

"Those for whom mysticism is above all things, an intimate and personal relation, the satisfaction of a deep desire, will fall back upon the imagery of passion, the phases of mutual love, wooing and combat, awe and delight; the fever of desire, the ecstasy of surrender are drawn upon. We find images which indeed have once been sensuous, but which are there annointed and ordained to holy office, carried up, transmuted and endowed with a radiant purity and intense and spiritual life. × × × It was natural and inevitable that the imagery of human love and marriage should have seemed to the mistic, the best of all images of his own fulfilment of life, his soul's surrender, fist to the call, finally to the embrace of Perfect Love. It lay ready to his hand. It was understood of all men and moreover it most certainly does offer upon lower

levels, a strongly exact parallel to the sequence of states in which man's spiritual consciousness unfolds itself and which form the consummation of the mystic life."

ଅର୍ଥାତ୍ ଜୀବନର ଏକ ତୀବ୍ର ଆକାଂକ୍ଷାର ପୂରଣ ସ୍ୱରୂପ ଯେଉଁମାନେ ଭଗବତ୍ପ୍ରୀତି ନିଜ ହୃଦୟରେ ଗମ୍ଭୀର ଭାବରେ ଅନୁଭବ କରିଅଛନ୍ତି, ସେମାନେ ମାନବୀୟ ପ୍ରେମର ପ୍ରତ୍ୟେକ ସ୍ତରକୁ ପାରସ୍ପରିକ ପ୍ରେମଲାଳସା, ସ୍ନେହାଦର, ପ୍ରତ୍ୟାଖ୍ୟାନ, ଆଶାର ଆନନ୍ଦ, ନୈରାଶ୍ୟର ଭୀତି, ଭାବୋଚ୍ଛ୍ୱାସ ଓ ଆତ୍ମବିସ୍ମରଣ ପୁଲକ ନିଜର ଅନୁଭୂତି ପ୍ରକାଶନରେ ବ୍ୟବହାର କରନ୍ତି । ପୂର୍ବେ ଯେଉଁ ଶବ୍ଦ ଦୈହିକ ଲାଳସା ମାତ୍ର ପ୍ରକାଶ କରୁଥିଲା, ତାହା ବର୍ତ୍ତମାନ ଗମ୍ଭୀର ଆଧ୍ୟାତ୍ମିକ ଭାବ ସଂସ୍ପର୍ଶରେ ମହିମାନ୍ୱିତ ହୋଇ ଉଜ୍ଜ୍ୱଳ ପବିତ୍ର ଭାବରାଶି ବିକୀରଣ କଲା । × ×

ସନ୍ନ୍ୟାସୀ ତାଙ୍କ ଜୀବନରେ ଚରମ ଉନ୍ନତିପ୍ରାପ୍ତିର ପନ୍ଥା ଦେଖାଇବା ନିମିତ୍ତ ପ୍ରଥମେ ପରମାତ୍ମାଙ୍କ ସଙ୍କେତରେ ନିଜ ଆତ୍ମାର ସମର୍ପଣ ଓ ଶେଷରେ ଜୀବାତ୍ମା ଓ ପରମାତ୍ମାଙ୍କର ମିଳନ ବା ବିବାହ— ମାନବୀୟ ପ୍ରେମ ଓ ବିବାହକୁ ନିଜର ଭାବପ୍ରକାଶନରେ ସର୍ବୋତ୍କୃଷ୍ଟ ଉପାମା ବୋଲି ଗ୍ରହଣ କରନ୍ତି । ଏହିପରି କରିବା ସ୍ୱାଭାବିକ ଏବଂ ଏହା ବ୍ୟତୀତ ତାଙ୍କର ଅନ୍ୟ ଉପାୟ ନାହିଁ । ଏ ଉପମା ସମସ୍ତେ ବୁଝିପାରନ୍ତି । ମନୁଷ୍ୟ ଯେଉଁ ଯେଉଁ ସୋପାନ ବ୍ୟବହାର କରି ଆଶାର ବିକାଶଦ୍ୱାରା ଭଗବତ୍ ପ୍ରେମ ଲାଭ କରେ, ମାନବୀୟ ପ୍ରେମମୂଳକ ମିଳନ ବା ବିବାହ ନିମ୍ନସ୍ତରରେ ସେହି ସେହି ସୋପାନର ଏକ ସଠିକ ପ୍ରତିବିମ୍ବ ପରି ହୋଇଥାଏ । ଦାର୍ଶନିକ ପଣ୍ଡିତ ଉସ୍ପେନସ୍କି (Ouspensky) କହନ୍ତି :—"Of all we know in life, only in love is there a taste of the mystical, a taste of ecstasy, nothing else in our life brings us so near to the limit of human possibilities, beyond which begins the unknown. And in this lies, without doubt, the chief cause of the terrible power of sex over human life. × × × love, sex, these are but a foretaste

of mystical sensations or sensations of the same category as sensation only infinitely higher and more complex."

ଅର୍ଥାତ୍ ମନୁଷ୍ୟ ଜୀବନରେ ଯେତେ ପ୍ରକାର ଅନୁଭୂତି ଅଛି, ତାହା ମଧ୍ୟରେ କେବଳ ପ୍ରେମ କିମ୍ବା ଯୌନ ସମ୍ପର୍କରେ ଭଗବତ୍ ଭକ୍ତିର ପୂର୍ବସ୍ୱାଦ ଓ ପୁଲକ ମିଳେ । ଆଉ ଏପରି ଅନ୍ୟ କିଛି ନାହିଁ, ଯାହା ଆମକୁ ଆମର ପାର୍ଥିବ-ପୁଲକ ଅନୁଭୂତିର ଶେଷ ସୀମାକୁ ନେଇଯାଇ ପାରିବ । ଏହି ପୁଲକ ଅଧିକତର ହେଲେ କିପରି ହୁଏ, ତାହା ଆମର ଜାଣିବାର ଉପାୟ ନାହିଁ । ମନୁଷ୍ୟ ଜୀବନ ଉପରେ ତେଣୁ ପ୍ରେମ ବା ଯୌନ ମିଳନ ଏକ ସାଙ୍ଘାତିକ ପ୍ରଭାବ ପକାଇଥାଏ । ପ୍ରେମ ଓ ଯୌନ ସମ୍ପର୍କ ଭଗବତ୍-ପ୍ରେମର ପୂର୍ବାସ୍ୱାଦ ମାତ୍ର । ଏଥିରେ ଯେ ଆନନ୍ଦ ବା ପୁଲକ ମିଳେ, ଭଗବତ୍‌ପ୍ରେମ ସେହି ଧରଣର; କିନ୍ତୁ ଏହା (ଭଗବତ୍‌ଭକ୍ତି ବା ପ୍ରେମ) ପାର୍ଥିବ ପ୍ରେମଠାରୁ ଅକଳନ୍ତ ଭାବରେ ମଧୁରତର ଓ ତୀବ୍ରତର ।

ଆମର ଭାରତୀୟ ମୁନିଋଷିମାନେ ଏହା ହଜାର ହଜାର ବର୍ଷ ପୂର୍ବେ ନିଜେ ଅନୁଭବ କରି ମାନବୀୟ ପ୍ରେମ ବା ରତିକୁ "ବ୍ରହ୍ମାନନ୍ଦ ସହୋଦର" ଆଖ୍ୟା ଦେଇଯାଇଛନ୍ତି ।

ଉତ୍କଳ ସାହିତ୍ୟର ସମୁଜ୍ଜ୍ୱଳ ମଣି 'ବିଦଗ୍ଧଚିନ୍ତାମଣି'ରେ ଭକ୍ତକବି ଅଭିମନ୍ୟୁ ଲେଖିଛନ୍ତି :—

"ମନକୁ ମନ ହୋଏ ମିଶାମିଶି । ବ୍ରହ୍ମେ ଜୀବ ପଶିବାର ଆଭାସି
ପରସ୍ପରେ ଏ ଆଶ୍ରୟାଲମ୍ବନ । ଦ୍ରବ୍ୟ କିମ୍ବା ଗୁଣ ତା ଉଦ୍ଦୀପନ
ଯେବେ ଭିନ୍ନ ହେବ;
ବାଇ ନ ହୋଇ କେ ଜୀବନ ଧରିବ ?" (ଛାଃ ୪୨।୩୫)

× × × ×

'ପ୍ରାଣକୁ ପ୍ରାଣ ମିଳନ ଆଭାସେ, କି ଜୀବ ପରମ ସଂଗମେ ମିଶେ ।
ନୀର କ୍ଷୀର ପରି ମନକୁ ମନ, ସରିତ ସିନ୍ଧୁ ଅଭେଦ ବନ୍ଧନ ।
ଦେହକୁ ଦେହ ମିଳି ରହଇ, ତିଳ ତଣ୍ଡୁଳ ସ୍ୱାଭ ଆଭାସଇ ।"
(ଛାଃ ୮୪।୩ ।)

ଜୀବାତ୍ମା ଓ ପରମାତ୍ମାଙ୍କର ମିଳନରେ ମାନବୀୟ ପ୍ରେମସମ୍ଭାରର ସମସ୍ତ ଉପଗ୍ଭର ମଧ୍ୟ ଦେଖାଯାଏ । ଆମ ଦେଶରେ ଭକ୍ତିରସପୂର୍ଣ୍ଣ ଲେଖାବଳିରେ ଏହାର ବହୁତ ଉଦାହରଣ ରହିଅଛି । ବିଦେଶୀୟ ଲେଖାରୁ କେତୋଟି ଉଦାହରଣ ଏଠାରେ ଦିଆଯାଉ ।

"Let Him kiss me with the kisses of His mouth, Who is it who speaks these words ? It is the bride, Who is the bride ? It is the soul thirsting for God.

*—St. Bernard,, Sermon VII.*

ସନ୍ନ୍ୟାସୀ ବର୍ଣ୍ଣାର୍ଡ୍ ଲେଖିଛନ୍ତି :—

"ସେ ମୋତେ ତାଙ୍କର ଅଧର ଚୁମ୍ବନ ଦିଅନ୍ତୁ । ସେ କଥା ଯେ କହୁଛି ସେ କିଏ ? ସେ ହେଉଛି କନ୍ୟା, ସେ ହେଉଛି ଜୀବାତ୍ମା, ଯେ ଭଗବାନଙ୍କ ନିମିତ୍ତ ତୃଷିତ ହେଉଛି ।

"Thus St. Cathrine of Siena's mystic marriage was prefaced by a voice which ever said in answer to her prayer, "I will espouse thee to Myself in faith. And the vision in which that union was consummated was again initiated by a voice saying, "I will this day celebrate solemnly with thee the feast of the betrothal of thy soul and even as I promised, I will espouse thee to myself in faith."

ଅର୍ଥାତ୍ ସିଏନାର ସନ୍ନ୍ୟାସିନୀ କାଥରିନଙ୍କର ଆଧ୍ୟାତ୍ମିକ ବିବାହ ପୂର୍ବରୁ ପ୍ରାର୍ଥନା ସମୟରେ ସେ ବରାବର ଏକ ଆକାଶବାଣୀ ଶୁଣୁଥିଲେ, "ତୋର ମୋର ଭାବ-ବିବାହ ହେବ ।" ଯେଉଁ ଭଗବତ୍ ଦର୍ଶନ ବା ଆଧ୍ୟାତ୍ମିକ ଅନୁଭୂତିରେ ଏହି ବିବାହ ହୋଇଗଲା, ତାହା ପୂର୍ବରୁ ଆକାଶବାଣୀ ଶୁଣାଗଲା, "ଆଜି ତୋର ମୋର ବିବାହର ନିର୍ବନ୍ଧ ଉତ୍ସବ ସମ୍ପାଦିତ ହେବ ଏବଂ ଆଗରୁ କହିଥିବା ପରି, ତୋର ମୋର ମଧ୍ୟ ଭାବ-ବିବାହ ହେବ ।"

"Our work is the love of God, our satisfaction liee in submission to the Divine embrace. Surrender is its secret, a personal surrender -not only of finite to infinite, but also of bride to bridegroom' heart to heart".

—*Ruysbroeck.*

ରୁଇଜ୍‌ବ୍ରୁକ୍ ଲେଖିଛନ୍ତି—

"ଭଗବତ୍‌ପ୍ରେମ ଆମର କର୍ତ୍ତବ୍ୟ, ତାଙ୍କର ପ୍ରେମାଲିଙ୍ଗନରେ ଆମର ତୃପ୍ତି, ଆତ୍ମସମର୍ପଣଦ୍ୱାରା ଏହା ସମ୍ଭବ । ଏହି ଆତ୍ମସମର୍ପଣ କେବଳ ସସୀମର ଅସୀମଠାରେ ନୁହେଁ, କନ୍ୟାର ବରଠାରେ, ପ୍ରେମିକାର ପ୍ରେମିକଠାରେ ଅନ୍ତରର ମିଳନ ।"

ସୁପ୍ରସିଦ୍ଧା ସନ୍ନ୍ୟାସିନୀ ସେଣ୍ଟ୍ ଟେରେସାଙ୍କ ସମ୍ବନ୍ଧରେ ଉଇଲିଅମ୍ ଜେମ୍‌ସ୍ (William James) ଲେଖିଛନ୍ତି :— "In the main, her idea of religion seemed to have been that of an endless amatory flirtation between the devotee and the Deity".

ଅର୍ଥାତ୍ ଭକ୍ତ ଓ ଭକ୍ତବତ୍ସଳଙ୍କ ମଧ୍ୟରେ ଅସରନ୍ତ ପ୍ରେମକ୍ରୀଡ଼ା ଧର୍ମସାଧନର ପ୍ରଧାନ ଅଙ୍ଗ ଥିଲା ବୋଲି ସେଣ୍ଟ୍ ଟେରେସାଙ୍କର ମତ । ସନ୍ନ୍ୟାସୀ ଯୁଆନ୍ (St. Juan) ଯିଶୁଖ୍ରୀଷ୍ଟଙ୍କୁ ପ୍ରାର୍ଥନା କରୁଥିଲେ— "Make me Thy bride. I will rejoice in nothing till I am in Thine arms".

ଅର୍ଥାତ୍ ମୋତେ ତୁମେ ତୁମର ପ୍ରେମିକା ବା କନ୍ୟାରୂପରେ ଗ୍ରହଣ କର, ତମର ପ୍ରେମାଲିଙ୍ଗନ ଛଡ଼ା ମୋତେ ଆଉ କିଛି ଭଲ ଲାଗିବ ନାହିଁ । ସନ୍ନ୍ୟାସୀ ଫ୍ରାନ୍‌ସିସ୍ (St. Francis) ଆଲଭର୍ଣ୍ଣିଆ ପର୍ବତ ଉପରେ ଯିଶୁଖ୍ରୀଷ୍ଟଙ୍କର ଛାୟାବିମ୍ବ ଦେଖି ଗାଇଉଠିଲେ, "My Spouse, the beloved lamb, has wed me with the nuptial ring". ଅର୍ଥାତ୍ "ମୋର ପ୍ରେମମୋହନ ମୋତେ ମୁଦି ପିନ୍ଧାଇ ଦେଇ ବାହା ହୋଇ-ଗଲେ ।" ପରମାରାଧ୍ୟ ଯୀଶୁଖ୍ରୀଷ୍ଟ ତାଙ୍କର ଏକ ରୂପକଗଳ୍ପରେ (Parable) ଭଗବାନଙ୍କୁ ବର ଓ ଜୀବାତ୍ମାକୁ କନ୍ୟା ସ୍ୱରୂପ ଚିତ୍ର କରିଅଛନ୍ତି । ଖ୍ରୀଷ୍ଟଙ୍କର ପୂର୍ବବର୍ତ୍ତୀ ସଲମନ (Solomon) ଙ୍କର 'Song of Solomon' ରେ ଭକ୍ତ ଭଗବାନଙ୍କର ମିଳନ (Copula)ନିମ୍ନଲିଖିତ ଭାବରେ ବର୍ଣ୍ଣିତ ହୋଇଅଛି :—

"Let Him kiss me
With the kisses of His mouth
For Thy love is better than wine.

Behold, Thou art fair.
My Beloved, yea pleasant
Also our bed is green.
His left arm is under my head
And His right hand doth embrace me
By night on my bed —I sought Him
Whom my soul loverth".

( ଓଡ଼ିଆ ଅନୁବାଦ )

ଆହା କି ରୁଚିର ହେ ମୋହନ ! ତବ
ମୂରତି କେଡ଼େ ମଧୁର,
ମଦିରାରୁ ବଳି ପ୍ରେମିକ ହେ ତବ
ପ୍ରେମ ତ ମଧୁରତର ।
ଅପୂର୍ବ ପୁଲକେ ଭରିଦିଅ ହୃଦ
ଦେଇ ଅଧରେ ଚୁମ୍ବନ,
ସେ ପ୍ରେମ ପରଶେ, ଏ ଶରୀର ସାରା
ଖେଳିଯାଏ ଶିହରଣ ।
ମଧୁ ଯାମିନୀରେ ସେ ମଧୁ ତଳପ
ସଦା ତ ଥାଏ ସଜ୍ଜିତ,
ଗାତ୍ରେ ଭିଡ଼ି ଦକ୍ଷ ଭୁଜେ ସୁରସିକ
କର ଯେବେ ଆଲିଙ୍ଗିତ ।
ଅପୂର୍ବ ଆନନ୍ଦେ ହେଉଁ ଆତ୍ମହରା
କରୁଁ ନେତ୍ର ନିମୀଳନ,
ଝୁରିହୁଏ ଆତ୍ମା ପାଇବାକୁ ସଦା
ତୁମରି ମଧୁ ମିଳନ ।



# ରାଧାକୃଷ୍ଣଲୀଳା (୨)

ସଂସ୍କୃତ ସାହିତ୍ୟ, ଭାଗବତ, ବ୍ରହ୍ମବୈବର୍ତ୍ତ, ବିଷ୍ଣୁ ପୁରାଣ ଆଦିରେ ଓ ଓଡ଼ିଆ ସାହିତ୍ୟରେ ରାଧାକୃଷ୍ଣଙ୍କର ପ୍ରେମଲୀଳାର ବିସ୍ତୃତ ବର୍ଣ୍ଣନା ରହିଅଛି ଏବଂ ଏହା ଅଳ୍ପ ବହୁତ ମୂର୍ଖ ପଣ୍ଡିତ ସମସ୍ତେ ଜାଣନ୍ତି । ତେବେ ଏତେଗୁଡ଼ିଏ ବିଦେଶୀୟ ଲେଖା ଏ ସମ୍ବନ୍ଧରେ ପୂର୍ବ ପ୍ରବନ୍ଧରେ ଉଦ୍ଧାର କରିବାର ଅଭିପ୍ରାୟ ଏହି ଯେ ସାଧାରଣ ଲୋକେ, ବିଶେଷତଃ ଅହିନ୍ଦୁମାନେ କଥା କଥାକେ ରାଧାକୃଷ୍ଣବିହାରକୁ ଏପରି କଠୋର ସମାଲୋଚନା କରନ୍ତି ଯେ ତାହାଦ୍ୱାରା ସାଧାରଣ ହିନ୍ଦୁମନରେ ବଡ଼ ଆଘାତ ଆସେ । ହିନ୍ଦୁ ହଜାର ହଜାର ବର୍ଷ ପୂର୍ବେ ଯାହା ଜାଣିଥିଲା, ଅନ୍ୟ ଦେଶର ଲୋକେ ତାହା ଏବେ ଜାଣୁଛନ୍ତି । ପୂର୍ବ କାଳ ହିନ୍ଦୁର ସୂକ୍ଷ୍ମ ଅନୁଭବ-ପ୍ରତିଷ୍ଠିତ ବିଜ୍ଞାନଜ୍ଞାନ ନିମନ୍ତେ ଏକାଳ ହିନ୍ଦୁ ଅହିନ୍ଦୁମାନଙ୍କଠାରୁ ବହୁତ ନାଞ୍ଜନାଟାପରା ଶୁଣୁଛି । ଅନ୍ୟ ଧର୍ମର ପ୍ରତିଷ୍ଠାତାମାନେ ଯେତେବେଳେ ଜନ୍ମ ହୋଇ ନ ଥିଲେ, ତାହାର ହଜାର ହଜାର ବର୍ଷ ପୂର୍ବରୁ ହିନ୍ଦୁ ପ୍ରକୃତ ଧର୍ମ କ'ଣ କେବଳ ଜାଣି ନ ଥିଲା, ତାହାର ନିଗୂଢ଼ ତତ୍ତ୍ୱ ଜାଣି ସର୍ବସାଧାରଣ କିପରି ତାହା ଆଚରଣ କରିପାରିବେ, ତାହାର ବନ୍ଦୋବସ୍ତ କରିଦେଇ ଯାଇଥିଲା । ପୂର୍ବ ପ୍ରବନ୍ଧରେ ଆମ୍ଭେମାନେ ଯେଉଁ ବିଦେଶୀୟ ଉଦାହରଣଗୁଡ଼ିକ ଉଲ୍ଲେଖ କରିଅଛୁ, ସେ ସମସ୍ତ ଖ୍ରୀଷ୍ଟିୟାନ ଏବଂ ଇହୁଦୀ ମହାପୁରୁଷ କିମ୍ବା ସନ୍ନ୍ୟାସୀ ସନ୍ନ୍ୟାସିନୀମାନଙ୍କର ଅନୁଭବସିଦ୍ଧ ଉକ୍ତି । ମୁସଲମାନମାନଙ୍କ ମଧ୍ୟରେ ସୁଫି ସମ୍ପ୍ରଦାୟ ଆତ୍ମା ଓ ଜୀବାତ୍ମାର ସମ୍ବନ୍ଧ ବିଷୟରେ ଏହିପରି ମତ ପୋଷଣ କରନ୍ତି । ସେଥିପାଇଁ ହିନ୍ଦୁ ଅନ୍ୟ ଧର୍ମକୁ ନିନ୍ଦା କରେ ନାହିଁ । ସେ ଏକା କେବଳ ଜାଣିଥିଲା, ଭଗବାନ୍-ପ୍ରାପ୍ତି ପ୍ରତ୍ୟେକ ଧର୍ମରେ ସମ୍ଭବ; ତେଣୁ ଅନ୍ୟ ଧର୍ମ ପ୍ରତି ସେ ଧର୍ମାନ୍ତର ଗ୍ରହଣକୁ (Conversion proselytism) କେବେହେଲେ ପ୍ରଶ୍ରୟ ଦେଇ ନାହିଁ ।

ଶ୍ରୀକୃଷ୍ଣ ଦ୍ୱାପରଯୁଗର ଶେଷ ଆଡ଼କୁ ଓ କଳିଯୁଗର ଆରମ୍ଭ ପୂର୍ବରୁ ଜନ୍ମ ହୋଇଥିଲେ । ଅବତାରମାନଙ୍କ ମଧ୍ୟରେ ଜୟଦେବ ଗୋସ୍ୱାମୀ

ଶ୍ରୀକୃଷ୍ଣଙ୍କୁ ଗହଣ କର ନାହାନ୍ତ, ତାଙ୍କର ବଡଭାଇ ବଳରାମଙ୍କୁ ଅଷ୍ଟାବତାର ସ୍ୱରୂପ ଉପାସନା କରଅଛନ୍ତ । ଶ୍ରୀକୃଷ୍ଣ ଅବତାର ନୁହନ୍ତ, ସେ ଅବତାରୀ ଅର୍ଥାତ୍ ଅବତାରମାନଙ୍କୁ ସେ ଜନ୍ମ ଦଅନ୍ତ । ଅବତାରମାନେ ମହା ମାନବ; କନ୍ତୁ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ । କଳିଯୁଗରେ ଧର୍ମୀଗ୍ଲରଣ୍ଡେପ୍ରହା ଲୋକଙ୍କର ବହୁତ କମ୍ । ସେଥି ନମିତ୍ତ ଶ୍ରୀକୃଷ୍ଣ (ଭଗବାନ) ମନୁଷ୍ୟ ରୂପ ଧର ଅବତାରଙ୍କ ସାଙ୍ଗରେ ଆଦର୍ଶ ଦେଖାଇବା ନମିତ୍ତ ମନୁଷ୍ୟ ସମାଜକୁ ଆସିଥିଲେ । ଜନ୍ମ ହେଉ ହେଉ ସେ ନଜ କଥା ତାଙ୍କର ମନୁଷ୍ୟ-ପିତା ବସୁଦେବଙ୍କୁ କହିଥିଲେ, ଯଶୋଦା ଓ ଅର୍ଜୁନଙ୍କୁ କ୍ଷଣମାତ୍ର ନମିତ୍ତ ତାଙ୍କର ଅସୀମତା ଦେଖାଇଥିଲେ । ଅନ୍ୟ କେଉଁ ଅବତାରରେ ଏହା ଘଟି ନ ଥିଲା ।

ହିନ୍ଦୁ ବା ସନାତନ ଧର୍ମର ପ୍ରତିଷ୍ଠାତା କେହି ନାହିଁ, କାଳକ୍ରମେ ଯେତେ ଯେତେବେଳେ ଧର୍ମଗ୍ଲାନ ଏହା ମଧ୍ୟରେ ପ୍ରବେଶ କରଅଛି, ସେତେ ସେତେବେଳେ ମହାପୁରୁଷ ଜନ୍ମ ହୋଇ ଏହାକୁ ସଂସ୍କାର କରିଦେଇ ଯାଇଛନ୍ତ । ଖ୍ରୀଷ୍ଟିୟାନ ଧର୍ମରେ ଲୁଥର (Martin Luther) ସଂସ୍କାର ଆଣିଥିଲେ । ସନାତନ ଧର୍ମରେ ସର୍ବସାଧାରଣଙ୍କ ହିତ ନମିତ୍ତ ଶ୍ରୀକୃଷ୍ଣ ସେହି-ପର ସହଜ ସରଳ ମାର୍ଗ ଖୋଲି ଦେଇଗଲେ । ସ୍ୱାମୀ ବିବେକାନନ୍ଦଙ୍କର ଇଂରେଜ ଶିଷ୍ୟା ସିଷ୍ଟର ନିବେଦିତା । ତାଙ୍କର "The Web of Indian Life" ରେ ଲେଖିଛନ୍ତ—"× × And, indeed it was for these labouring men unlettered and poor, that the Gita, with its masterly simplicity, was written, to those who had thought Salvation and beatific vision as far beyond their attainment as a knowledge of the classics—to these humble souls—the Divine voice declares that by worshipping God and doing, at the same time, the duty of his station, every man may attain perfection"

ଅର୍ଥାତ୍ "ଗୀତା ବଡ଼ ସହଜ ସରଳ ଭାଷାରେ ଲେଖା ହୋଇଥିଲା ମୂର୍ଖ, ଗରିବ ମୂଲିଆ ଶ୍ରେଣୀର ଲୋକମାନଙ୍କ ନମିତ୍ତ । ବେଦ, ଉପନିଷଦ

ଭିନ୍ନ ଶାସ୍ତ୍ର ଯେପରି ସେମାନଙ୍କ ପକ୍ଷରେ ପଢ଼ିବା ଓ ବୁଝିବା ଅସମ୍ଭବ, ମୁକ୍ତି ପାଇବା କିମ୍ବା ଭଗବତ୍ ଦର୍ଶନରେ ପରମସୁଖ ପାଇବା ସେମାନଙ୍କ ପକ୍ଷେ ସେପରି ଅସମ୍ଭବ—ସେଉଁମାନେ ଏପରି ଭାବୁଥିଲେ ସେହିମାନଙ୍କୁ ଲକ୍ଷ୍ୟକରି ସେ ଭଗବତ୍‌ବାଣୀ ଶୁଣାଇଲେ, ଭଗବାନଙ୍କଠାରେ ବିଶ୍ୱାସ ରଖି ନିଜ ନିଜର କର୍ତ୍ତବ୍ୟ କରିଯାଅ, ସମସ୍ତେ (ଆଚଣ୍ଡାଳ ବ୍ରାହ୍ମଣ, ଆମୂର୍ଖ ପଣ୍ଡିତ) ମୁକ୍ତି ପାଇବ ।"

ସେ ପୁଣି ଲେଖିଛନ୍ତି :—"Again and again, as we read Gita, we are driven to the conclusion that we hear an infinite mercy addressing itself to a people who had imagined the knowledge of God to be the monopoly of priesthoods and religious orders and bidding them be of good courage, for the true monk is he "who neither hates nor desires", the true worshipper anyone who "offers to me with devotion even a leaf or a flower or a cup of water". No wonder that the Indian people, saluting a Divine Incarnation, call Him the physician of the world disease".

ଅର୍ଥାତ୍ "ଥରକୁ ଥର ଗୀତା ପଢ଼ିଲାବେଳେ ଆମେ ଏହି ସିଦ୍ଧାନ୍ତରେ ପହଞ୍ଚୁ ଯେ ଅନନ୍ତ ଭଗବାନ ଏକ ଦୟାମୟ ବାଣୀ ଲୋକଙ୍କୁ ଶୁଣାଉ-ଅଛନ୍ତି, "ପଣ୍ଡିତ, ପ୍ରବ୍ରାଜକ, ଯୋଗୀ, ମହନ୍ତଙ୍କର ଭଗବାନ ଏକଚାଟିଆ ହୋଇ ରହି ନାହାନ୍ତି', ଧୈର୍ଯ୍ୟ ଧର, 'ସେ ହେଉଛି ପ୍ରକୃତ ଲୋକ, ଯାହାର ଘୃଣା ନାହିଁ କି ଲାଳସା ନାହିଁ । ସେ ହେଉଛି ମୋର ପ୍ରକୃତ ଉପାସକ, ଯେ ସ୍ନେହ ଭକ୍ତି ସହିତ ମୋତେ ପତ୍ରଟିଏ କିମ୍ବା ଫୁଲଟିଏ କିମ୍ବା ଅଞ୍ଜୁଳାଏ ପାଣି ଦେଇପାରେ ।' ଭାରତର ଲୋକମାନେ ତାହାଙ୍କୁ ଯେ ଭଗବାନଙ୍କର ଅବତାର କହନ୍ତି ଓ ଭାବନ୍ତି ଯେ ସେ ପୃଥିବୀର ପାପ, ତାପ, ରୋଗ, ଶୋକ ନିବାରିବା ପାଇଁ ମନୁଷ୍ୟ ରୂପ ଧରିଥିଲେ, ଏଥିରେ ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ ।"

ପ୍ରକୃତରେ ଭଗବାନ କହିଛନ୍ତି, "ମୁଁ ବୈକୁଣ୍ଠରେ ନ ଥାଏ, ଯୋଗୀମାନଙ୍କର ହୃଦୟରେ ନ ଥାଏ; ମୋର ଭକ୍ତମାନେ ଯେଉଁଠାରେ ସ୍ନେହ ଭକ୍ତିରେ ଗାନ କରୁଥାନ୍ତି, ମୁଁ ସେହିଠାରେ ଥାଏ।"*

ଶ୍ରୀକୃଷ୍ଣ ଏହା କେବଳ କହି ନାହାନ୍ତି, ସେ ଯାହା ଯାହା କହିଅଛନ୍ତି, ସେ ସମସ୍ତ ଗୋଟି ଗୋଟି କରି ନିଜ ଜୀବନରେ ପାଳନ କରି କଳିଯୁଗରେ କଳିଗ୍ରସ୍ତ ଲୋକ ଆଗରେ ଆଦର୍ଶ ସ୍ୱରୂପ ରଖିଦେଇ ଯାଇଛନ୍ତି। ଯେଉଁମାନେ ମହାଭାରତ ପଢ଼ିଛନ୍ତି, ସେମାନେ ଏହାର ସତ୍ୟତା ବୁଝିପାରିବେ। ପ୍ରଥମେ ସେ ଗଉଡ଼ ଘରକୁ ଆସି ଗୋରୁ ଜଗି, ପାଳି, ଗୁହାଳ ପୋଛି ଗୋପାଳ ହେଲେ। ସମ୍ଭବତଃ ଭାରତବର୍ଷର ପ୍ରଥମ "ଗୋବିନ୍ଦ" (ଗୋ+ବିଦ୍—Expert in affairs of the cow ଥିଲେ ସେହି। ଶ୍ରେଷ୍ଠ ପିଲାଟିଏ ବେଳୁ ମଧ୍ୟ ସେ ଗୋରୁ ଚରାଉଥିଲେ। ମା ଯଶୋଦା ସେଥିପାଇଁ ଭାରି ଡରୁଥିଲେ। ଭକ୍ତଶିରୋମଣି ଅଭିମନ୍ୟୁ ଲେଖିଛନ୍ତି :—

ମା ଯଶୋଦା ଭଗବତୀ ପୌର୍ଣ୍ଣମାସୀଙ୍କୁ କହୁଛନ୍ତି :—
"ହେ ଦେବି ! ବାଳୁତ ସୁତ,
ଆମ୍ଭ କି ଗୋରୁ ରଖିବା ଉଚିତ। ଗୋ ଭଗବତି !
ନ ହେଲା ଏ ନିବାରିତ ଗୋ। ୬।
ଦେଖି କଣ୍ଟା ଲାଗିବାରେ,
ବିଦାରି ହେଉଛି ଚନ୍ଦୁ ପାଦରେ। ଗୋ ଭଗବତି !
ନିତି ବନେ ବୁଲିବାରେ ଗୋ। ୭।
× × × ×
ଏଥିକି ମରୁଛି ଭାଳି,
ଗୋଳ ହୋଇଗଲା ଧଇଲେ ଚୋଳି। ଗୋ ଭଗବତି !
ଏ ମୋ ଦରିଦ୍ର ସଂଖାଳି ଗୋ। ୧୧।
ବାତ୍ସଲ୍ୟ ମମତାବାଣୀ,
ଶୁଣି ପୌର୍ଣ୍ଣମାସୀ ବୋଇଲେ ପୁଣି ଗୋ ବ୍ରଜେଶ୍ୱରି !
ଏ ତ ବାଳ କାଳ ଆଣି ଗୋ। ୧୨।

---

*"ନାହଂ ତିଷ୍ଠାମି ବୈକୁଣ୍ଠେ ଯୋଗିନାଂ ହୃଦୟେ ନ ଚ
ମଦ୍ ଭକ୍ତା ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ।"

ଗୋ ସ୍ମରଣ ନ କରବ,
ଯଣ ଶ୍ରୀ ଆସ୍ଥଷ ପିନା ବଢିବ । ଗୋ ବ୍ରଜେଶ୍ୱସ !
ପୁଣି ଛ କୁଳ ସ୍ୱଭବ ଗୋ । ୧୩ ।

(ଛାନ୍ଦ ୮୬ ବାଃ. ଚନ୍ଦ୍ରାମଣି ।)

ଏହି ବାଲ୍ୟବ ବୟସରେ ଗୋପପୁର ବା ଗଉଡ଼ ଗଉଡ଼ୁଣୀଙ୍କ ମଧ୍ୟରେ ସେ ଅସାଧ୍ୟ ସାଧନ କରିଥିଲେ ।

ଯୁକ୍ତି ଖାତିରରେ ମନେ କରାଯାଏ, ଶ୍ରୀକୃଷ୍ଣ ଭଗବଚ୍ଛକ୍ତି ବିହୀନ ଜଣେ ସାଧାରଣ ପିଲ ଭଳିଆ ଗଉଡ଼ମାନଙ୍କ ମଧ୍ୟରେ ବଢ଼ିଥିଲେ । ଏହା କେହି ଅସ୍ୱୀକାର କରିବେ ନାହିଁ ଯେ ସମୟ ସମୟରେ ସାଧାରଣ ପିଲମାନଙ୍କ ମଧ୍ୟରେ ଜଣେ ଜଣେ ଅସାଧାରଣ ବୁଦ୍ଧିଆ ପିଲ ଜନ୍ମ ହୋଇପଡ଼ନ୍ତି । ଶ୍ରୀକୃଷ୍ଣ ସେହିପରି ଜଣେ ବଡ଼ ବୁଦ୍ଧିଆ ପିଲ ଥିଲେ । ଗଉଡ଼ ଗାଁ ପାଖରେ ବଣ ଜଙ୍ଗଲ ଥିଲା, ଯେଉଁଠାରେ ଗଉଡ଼ଙ୍କ ଗାଈ ଚରୁଥିଲେ । ଜଙ୍ଗଲରେ ହିଂସ୍ରଜନ୍ତୁ ରହିବା ସ୍ୱାଭାବିକ, ସେଠାରେ ମଧ୍ୟ ବଡ଼ ବଡ଼ ହିଂସ୍ରଜନ୍ତୁ ରହି ବଡ଼ ଉତ୍ପାତ କରୁଥିଲେ; ଗୋରୁଗାଈଙ୍କୁ ମାରି ଖାଇ-ଯାଉଥିଲେ । ଗୋରୁଗାଈ ଯେଉଁଠାକୁ ପାଣି ପିଇବାକୁ ଯାଉଥିଲେ, ସେଠାରେ ମଧ୍ୟ ବିପଦ ଥିଲା, ମନୁଷ୍ୟ କି ଗୋରୁଗାଈ ତାହା ଜ୍ୱାଳାରେ କେହି ରହିପାରୁ ନଥିଲେ । ଗଉଡ଼ ଗଉଡ଼ୁଣୀ ବଡ଼ ହଟହଟା ହେଉଥିଲେ ।

ଠିକ୍ ଏପରି ହଟହଟା କାଳରେ ଗୋଟିଏ ପିଲା ଜନ୍ମହେଲା । ପିଲାଟି ଦେଖିବାକୁ ଭାରି କଉତୁକିଆ, ଭାରି ସୁନ୍ଦର । ବୟସ ବଢ଼ିଲା; ବୁଦ୍ଧି ଗୋଟି ଗୋଟି ହୋଇ ବାହାରିଲା । ପୁତନା ବୋଲି ଗୋଟାଏ ଡାହାଣୀ ଥିଲା, ଗଉଡ଼ ପିଲାଙ୍କୁ ମାରି ଦେଉଥିଲା । ପିଲ କୃଷ୍ଣ ତା କୋଳକୁ ନେଇଁପଡ଼ିଲେ । ସେ କ'ଣ ପିଲ-ପ୍ରାଣ ଶୋଷନ୍ତା, ପିଲା ତା ପ୍ରାଣ ଶୋଷିଦେଲା । ଗଉଡ଼ ଗଉଡ଼ୁଣୀଗୁଡ଼ିକ ବଡ଼ ଗୋଟାଏ ଉତ୍ପାତରୁ ରକ୍ଷା ପାଇଲେ ।

ବଣ ଜଙ୍ଗଲପୂର୍ଣ୍ଣ ଜାଗାରେ ବଡ଼ ବଡ଼ ଜନ୍ତୁ ରହିଥିଲେ । ଶଗଡ଼ ପରି ଗୋଟାଏ ବଡ଼ ଜନ୍ତୁ ରହି ସେଠାରେ ଲୋକମାନଙ୍କୁ ହଟହଟା କରୁଥିବା ଅସମ୍ଭବ ନୁହେଁ । ସେ କେତେ ଲୋକଙ୍କୁ ମାରିଥିଲା, କିନ୍ତୁ ଏ

ପିଲାଟି ଖାଲି ବୁଦ୍ଧିଆ । ଏମିତି ମର୍ମଜାଗାରେ ତାକୁ ଗୋଟାଏ ଗୋଇଠା ମାରିଲା ଯେ ସେ ବଡ଼ ଜନ୍ତୁଟା (ଶକଟାସୁର) ସାଙ୍ଗେ ସାଙ୍ଗେ ମରି ଟଳିପଡ଼ିଲା । ଏହିପରି କେତେଗୁଡ଼ିଏ ଭୟାନକ ଜନ୍ତୁ ବା ଅସୁର ଯେ ଗୋପପୁର ଲୋକ ଓ ସେମାନଙ୍କର ଜୀବିକା-ଅର୍ଜନ ଉପାୟ ଗୋରୁଗାଈଙ୍କୁ ବଡ଼ ହଟହଟା କରୁଥିଲେ, ଏ ପିଲାଟି ନିଜ ବୁଦ୍ଧି ବଳରେ ସେମାନଙ୍କୁ ମାରିପକାଇଲା । ଗାଧୋଇବା କିମ୍ବା ପିଇବା ପାଣି ସହଜରେ ମିଳୁ ନ ଥିଲା; ଲୋକେ, ଗାଈଗୋରୁ ସମସ୍ତେ ହଟହଟା ହେଉଥିଲେ । ଏ ପିଲାଟି ଏପରି ଉପାୟ କଲା ଯେ କାଳୀୟ (ଏହାର ବିଷ ନିମିତ୍ତ ହ୍ରଦଟି ବିଷାକ୍ତ ହୋଇ-ଯାଇଥିଲା) ସେ ସ୍ଥାନ ଛାଡ଼ି ପଳାଇଲା ।

ଗଉଡ଼ମାନେ ପ୍ରତିବର୍ଷ ଇନ୍ଦ୍ରପୂଜାରେ ବହୁତ ଖର୍ଚ୍ଚ କରୁଥିଲେ; କାରଣ ସେମାନେ ଭାବୁଥିଲେ ଯେ ଇନ୍ଦ୍ରଙ୍କର ବୃଷ୍ଟି ନିମିତ୍ତ ବଣ ଜଙ୍ଗଲ ବଢ଼ୁଛି ଓ ସେହି ବଣଜଙ୍ଗଲ ସକାଶେ ତାଙ୍କର ଗୋରୁଗାଈ ବଢ଼ୁଛନ୍ତି । ଶ୍ରୀକୃଷ୍ଣ ଗଉଡ଼ମାନଙ୍କୁ ବୁଝାଇଦେଲେ ଯେ ଇନ୍ଦ୍ର ତାଙ୍କର ଉପକାର ନ କରି ବରଂ ଅପକାର କରୁଅଛନ୍ତି । ବିଜ୍ଞାନ ଏବେମାତ୍ର ବାହାରକଲା ଯେ ବୃଷ୍ଟିବହୁଳ ଅଞ୍ଚଳରେ ପ୍ରାକୃତିକ ଲୁଣ ଘାସପତ୍ରରୁ ଧୋଇ ହୋଇଯିବାରୁ ଗୋରୁଗାଈ ଭଲ ବଢନ୍ତି ନାହିଁ (ଯଥା—ଆସାମ, ବଙ୍ଗ, ଓଡ଼ିଶା), ବରଂ କମ୍ ବୃଷ୍ଟିଯୁକ୍ତ ଅଞ୍ଚଳରେ ଘାସପତ୍ର ଲୁଣଯୁକ୍ତ ହେବାରୁ ଗୋରୁଗାଈ ଭଲ ବଢନ୍ତି । ଇନ୍ଦ୍ର ରାଗିହୋଇ ବହୁତ ବର୍ଷା କଲେ, ଶ୍ରୀକୃଷ୍ଣ ପର୍ବତ ଆଢୁଆଳ କରି ତାହା ବନ୍ଦ କଲେ । ଯେଉଁ ପର୍ବତଦ୍ୱାରା ସେ ତାହା କଲେ, ତାହାର ନାମ ରଖିଲେ ଗୋ-ବର୍ଦ୍ଧନ । ଏହାଦ୍ୱାରା ସେ ସାରା ଭାରତ ଆଗରେ ଏହି ଆଦର୍ଶ ଦେଖାଇଦେଲେ ଯେ ଗୋ-ବର୍ଦ୍ଧନ ନିମିତ୍ତ ପ୍ରଚୁର ବୃଷ୍ଟି ସହାୟକ ନ ହୋଇ ବରଂ କ୍ଷତିକାରକ ହୋଇଥାଏ । ସେ ଯେ ଆମ ଦେଶର ପ୍ରଥମ "ଗୋବିନ୍ଦ", ଉପରୋକ୍ତ ବିଷୟ ତାହା ପ୍ରମାଣ କରୁଅଛି । ଗୋପୀଭାଷାରେ ଅଛି—

"ଇନ୍ଦ୍ର ସପତ ଦିନ ବୃଷ୍ଟି କଲା, × ×
ଗୋପେ ଗୋବିନ୍ଦ (ଗା-ବିଶେଷଜ୍ଞ) ନାମ ଦେଇଗଲା ।"

ଏହି ଗୁଲୁଗୁଲିଆ କଜଳୁକିଆ ପିଲାର ବୃଦ୍ଧିବଳରୁ ଗଉଡ଼ ଗଉଡୁଣୀମାନେ ବଡ଼ ନିରାପଦରେ ରହିଲେ; ଅସୁରମାନେ ସେମାନଙ୍କୁ ହଟହଟା କରୁଥିଲେ, ଚିରଦିନ ନିମିତ୍ତ ତାଙ୍କ କବଳରୁ ସେମାନେ ରକ୍ଷା-ପାଇଲେ । ତାଙ୍କ ଗୋରୁଗାଈ ପୂର୍ବ ଅପେକ୍ଷା ଭଲରେ ରହିଲେ । ଦୁଧ ଦହି ବେଶି ମିଳିଲା । ସର ଲବଣୀ ଏତେ ମିଳିଲା ଯେ ଏହି ଗୁଲୁଗୁଲିଆ ଟୋକା ଗଉଡୁଣୀମାନଙ୍କଠାରୁ ତାକୁ ଛଡ଼ାଇନେଇ ସମସ୍ତ ସମୟରେ କାନ୍ଥରେ ଲେପିଲା । ଥଟ୍ଟା, ପରିହାସ, ନାଚ, ଖେଳ, ହସ, ଗୀତ ଓ ପିଲାଳିଆ ଦୁଷ୍ଟାମିରେ ଗଉଡ଼ ଗାଁଟି ଉଚ୍ଛୁଳିଲା ।

ଏକେ ଦେଖିବାକୁ ଭାରି ସୁନ୍ଦର, ସେଥିରେ ପୁଣି କଜଳୁକିଆ, ଫେରେ ଭାରି ବୁଦ୍ଧିଆ (ଯେଉଁ ବୁଦ୍ଧି ସକାଶେ ସେମାନଙ୍କର ଧନଜୀବନ ରକ୍ଷା ପାଇଲା, ସେମାନେ ନିର୍ଭୟରେ ଚଳିଲେ), ଏମିତି ପିଲାଟିକୁ କିଏ ଭଲ ନ ପାଇ ରହିପାରିବ ?

"କଳଙ୍କରହିତ କଳାକରଜିତ ଶ୍ରୀମୁଖ ସୁଖ ନିକେତନ,
କେତେ କାଳ ବହି କଜ୍ଜଳ ବହି ଗଢ଼ିଲେ ଏ ରୂପ ରତନ,
କରିଥାନ୍ତା କି, ଦଇବ ଏ ପୁଅ ଆମ୍ଭର,
କରନ୍ତାଇ ଇଷ୍ଟ ଦେବତାରୁ ଶ୍ରେଷ୍ଠ ବସାଇ ପଲଙ୍କ ଉପର ।"

(ଘନକୃଷ୍ଣ—ରସକଲ୍ଲୋଳ ।)

କେବଳ ନନ୍ଦ ଯଶୋଦାଙ୍କର ନୁହେଁ, ସମସ୍ତ ଗଉଡ଼ ଗଉଡୁଣୀଙ୍କର ଏ ପିଲାଟି ଗଣ୍ଠିଧନ ହୋଇଥିଲା । ବିଶେଷତଃ ଗଉଡୁଣୀମାନେ ପିଲାଟିକୁ ଜୀବନରୁ ଅଧିକ କରି ଭଲ ପାଉଥିଲେ । କିଏ ବା ନ କରିବ ? ମହାତ୍ମା ଗାନ୍ଧି ମରିଗଲେ—ଏ ସମ୍ବାଦ ଶୁଣି ସାରା ଭାରତବର୍ଷରୁ ୧୪ ଜଣ ଲୋକ ମରିଯାଇଥିଲେ । ସେମାନଙ୍କ ମଧ୍ୟରେ କେତେ ଜଣ ସ୍ତ୍ରୀଲୋକ ମଧ୍ୟ ଥିଲେ । ଠିକ୍ ସେହିପରି କୃଷ୍ଣ-ଗୁଣମୁଗ୍ଧା ହୋଇ ଗୋପୀ ବା ଗଉଡୁଣୀମାନେ କୃଷ୍ଣଙ୍କ ନିମନ୍ତେ ପ୍ରାଣ ମୂର୍ଚ୍ଛି ଦେବା ପାଇଁ ସୁଦ୍ଧା କୁଣ୍ଠିତ ହେଉ ନ ଥିଲେ । ଅକ୍ରୂର ଯେତେବେଳେ ତାଙ୍କୁ ମଥୁରାକୁ ନେଲେ, ସେତେବେଳେ ଗୋପୀମାନେ ତାଙ୍କ ଉପରେ ରଥ ମଡ଼ାଇ ତାଙ୍କୁ ମାରିଦେଇ ଦେଇପିବା ପାଇଁ ରଥ ଆଗରେ ଶୋଇ ପଡ଼ିଲେ । କୃଷ୍ଣ ତାଙ୍କୁ ବହୁ କଷ୍ଟରେ ବୁଝାଇ

ଯାଉଥାଇ ରଥରେ ମଥୁରାକୁ ଗଲେ । ସେତେବେଳେ କୃଷ୍ଣଙ୍କର ବୟସ ବା କେତେ ? ୮ (ଆଠ) ବର୍ଷରୁ ବେଶି ନୁହେଁ । "ଅଷ୍ଟ ବରଷ ଏଥି ଲୀଳା ହେବ, ତେବେ ଯିବା କଂସ ନାଶ ହୋଇବ ।" (ଗୋପୀଭାଷା—୮ମ ଗ୍ରନ୍ଥ ପାଠପଡ଼ା ଆରମ୍ଭ ହୋଇ ନ ଥିଲା । ମଥୁରାରେ କଂସର ମୃତ୍ୟୁ ପରେ ରାମକୃଷ୍ଣ ଦୁଇ ଭାଇ ଗୁରୁଗୃହକୁ ଶିକ୍ଷାପାଇବା ନିମିତ୍ତ ଯାଇଥିଲେ ।

ତାଙ୍କର ବାଳଲୀଳା ବାଲ୍ୟତ ବୟସରେ ବୃନ୍ଦାବନରେ ହୋଇଥିବା । ମଥୁରାରୁ ସେ ଆଉ ବୃନ୍ଦାବନ ଫେରି ନ ଥିଲେ । ଆଠବର୍ଷର ବାଳୁତ ପିଲାଟିଏ କେମିତି ଷୋଳ ସହସ୍ର ଗୋପୀମାନଙ୍କ ସହିତ ମନନ୍ତତ୍ତ୍ୱ ପ୍ରେମକ୍ରୀଡ଼ା କରିଥିଲା, ଅନୁମାନ କରାଯାଇପାରିବ !!!

ଆମ୍ଭେମାନେ ଶ୍ରୀକୃଷ୍ଣଙ୍କୁ ଏପର୍ଯ୍ୟନ୍ତ ସାଧାରଣ ମନୁଷ୍ୟ ଭିଳି ଭାବରେ ବିଗ୍ରହ କରି ଦେଖିବାକୁ ପାଉଛେ ଯେ ସେ ରୂପଗୁଣରେ ଗୋପ-ବୃନ୍ଦାବନର ସମସ୍ତ ଲୋକଙ୍କର ମନ କିଣି ନେଇଥିଲେ ଓ ମାନବୀୟ ରତି ନିମିତ୍ତ ଦୈହିକ ଭାବରେ ସମ୍ପୂର୍ଣ୍ଣ ଅକ୍ଷମ ଥିଲେ ।

ଆଦର୍ଶ ଦେଖାଇବା ନିମିତ୍ତ ଯାହାଙ୍କର ଜନ୍ମ, ସେ କାହିଁକି ଏପରି କାର୍ଯ୍ୟ କରିବେ ଯେ ଯାହା ଯେତେ ଶୁଦ୍ଧପୂତ ହେଲେ ସୁଦ୍ଧା ସାଧାରଣ ମନୁଷ୍ୟ-ମନରେ ସନ୍ଦେହ ଜାତ କରାଇବ ? ' Caesar's wife must be above suspicion" - ଅର୍ଥାତ୍ ରାଜରାଣୀର ଚରିତ୍ର ଏପରି ହେବ ଯେ ସେଥିରେ ଏପରି କ ସନ୍ଦେହ କରିବା ନିମିତ୍ତ ସୁଦ୍ଧା କିଛି କାରଣ ନ ଥିବ । ପରମବ୍ରହ୍ମ ସ୍ୱୟଂ ଶ୍ରୀକୃଷ୍ଣ । ସେ କାହିଁକି ଅନ୍ୟ ବୟସରେ (ଯୌବନ କମ୍ବା ତାହା ପରେ) ରାସଲୀଳା କରିଥାନ୍ତେ ? ଘରସଂସାର ଚଳାଇବାରୁ ଯାହାଙ୍କର ଧର୍ମଚର୍ଚ୍ଚା, ସ୍ୱାଧ୍ୟାୟଚର୍ଚ୍ଚା କରିବାର ଅବସର ନାହିଁ, ସେମାନେ ଭଗବାନଙ୍କଠାରେ ଭକ୍ତି ରଖିଲେ କପରି କଲ୍ୟାଣ ପାଆନ୍ତି, ଏହା ବୁଝାଇବା ତାଙ୍କର ଉଦ୍ଦେଶ୍ୟ ଥିଲା । ବ୍ରହ୍ମ ସଂସ୍ପର୍ଶରେ ଜୀବାତ୍ମାର ଯେଉଁ ବର୍ଣ୍ଣନାତୀତ ସୁଖଲାଭ ହୁଏ, ତାହା ସ୍ତ୍ରୀ-ପୁରୁଷ ମିଳନ ଠାରୁ ଅଧିକ ସୁଖଦାୟକ ଏବଂ ସେହି ଧରଣର । ସେ ଏହାର ଉଦାହରଣ ଦେଖାଇବା, ନିମିତ୍ତ ଶିଶୁ ବୟସ ବାଛି ନେଇଥିଲେ ।

ସେ ଥିଲେ ବ୍ରହ୍ମ । ତାଙ୍କ ସଂସ୍ପର୍ଶରେ ଯେଉଁ ନିର୍ମଳମନା ଭକ୍ତିମତୀ ନାରୀ ଆସୁଥିଲେ, ସେ ସେହି ନିର୍ମଳ ଶୁଦ୍ଧପୂତ ସ୍ୱର୍ଗୀୟ ରସର ଆସ୍ୱାଦ ପାଉଥିଲେ । ଗୋପ ଯୁବତୀମାନେ ଏହା ପାଇଥିଲେ, ଅନ୍ୟ ଦେଶର ଅନ୍ୟମାନେ ମଧ୍ୟ ପାଇଛନ୍ତି—ଏହା ପ୍ରକୃତିର ନିୟମ । ଆମ୍ଭେମାନେ ପୂର୍ବରୁ ବିଦେଶୀୟ ଭକ୍ତମାନଙ୍କ କଥା ଉଦ୍ଧାର କରିଅଛୁଁ ।

ତେବେ ପ୍ରଶ୍ନ ହୋଇପାରେ, କୃଷ୍ଣ ଯଦି ବ୍ରହ୍ମ ବା ପରମାତ୍ମା ଏବଂ ମନୁଷ୍ୟମାନେ ଜୀବାତ୍ମା, ତେବେ ରାସଲୀଳା ଖାଲି ଗୋପୀମାନଙ୍କ ସହିତ ହେଉଥିଲା କାହିଁକି, ଗୋପମାନେ ତ ସେଥିରେ ନ ଥିଲେ ?

Cardinal F. W. Newman ଜଣେ ପ୍ରସିଦ୍ଧ ଖ୍ରୀଷ୍ଟ ଧର୍ମଯାଜକ । ସେ ଲେଖିଛନ୍ତି, "If thy soul is to go on to higher spiritual blessedness, it must become woman, yes, however manly man you may be among men". ଅର୍ଥାତ୍ "ପୁରୁଷ ସମାଜରେ ତୁମେ ଯେତେ ଟାଣୁଆ ମରଦ ହୋଇଥାଅ ପଛକେ, ଯଦି ଆଧ୍ୟାତ୍ମିକ ଉନ୍ନତ ଶୃଙ୍ଗକୁ ଉଠିବାକୁ ଇଚ୍ଛାକର, ତେବେ ତୁମକୁ ସ୍ତ୍ରୀ ହେବାକୁ ହେବ ହିଁ ହେବ ।" ସ୍ନେହ କହ, ପ୍ରେମ କହ, ଭକ୍ତି କହ, ଏଥିରେ ସ୍ତ୍ରୀମାନେ ଯେତେ ପ୍ରବୀଣ, ପୁରୁଷ ସେପରି ନୁହଁ । ପ୍ରେମାସ୍ପଦ ନିମିତ୍ତ ଆତ୍ମବିସ୍ମରଣ କରି ଚିରଜୀବନ ନିମିତ୍ତ ଦୁଃଖ କଷ୍ଟ ଆବୋରିନେବା ସ୍ତ୍ରୀ ଯେପରି ସହଜରେ କରିପାରେ, ପୁରୁଷ କରିପାରେ ନାହିଁ । ନିର୍ମଳ ଅନାସକ୍ତ ଭକ୍ତି ବା ପ୍ରେମ ଆତ୍ମବିସ୍ମରଣରେ କେବଳ ସମ୍ଭବ । ତାହା କେବଳ ଥିଲା ଗୋପୀମାନଙ୍କଠାରେ ।

ପୁଣି ମନୁଷ୍ୟର ଜୀବାତ୍ମା ସ୍ତ୍ରୀ-ପୁରୁଷ ନିର୍ବିଶେଷରେ ଏକ । ଜୀବାତ୍ମାର ଲିଙ୍ଗ—ପୁରୁଷ ବା ସ୍ତ୍ରୀ---ନାହିଁ । ଜୀବାତ୍ମା ସ୍ତ୍ରୀ, ସୃଷ୍ଟିରେ ପରମାତ୍ମା ଏକମାତ୍ର ପୁରୁଷ । ସନ୍ନ୍ୟାସିନୀ ମିରାବାଈ ସନ୍ନ୍ୟାସୀ ରୂପ ଗୋସ୍ୱାମୀଙ୍କୁ ଦେଖାକରିବାକୁ ଇଚ୍ଛାକଲେ । ଗୋସ୍ୱାମୀ ମହାଶୟ କହି-ପଠାଇଲେ ଯେ କୌଣସି 'ପ୍ରକୃତି' ସହିତ ସେ ଦେଖାକରନ୍ତି ନାହିଁ । ମୀରାବାଈ ଏହା ଶୁଣି ଆଶ୍ଚର୍ଯ୍ୟ ହେଲେ । ଗୋସ୍ୱାମୀ ମହାଶୟ ତାଙ୍କଠାରୁ ନିଜର ଭ୍ରମ ବୁଝି ଜାଣିପାରିଲେ ଯେ ସେ ନିଜେ ମଧ୍ୟ ପ୍ରକୃତି ।

ପ୍ରକୃତ ବ୍ରହ୍ମ ସମ୍ପର୍ଶ କାହାର ହୋଇପାରେ ? ଯେ ସଂସାର ମାୟା-ବନ୍ଧନରୁ ମୁକ୍ତ ହୋଇ ସଂସାରର ନଶ୍ୱରତା ଜାଣି ସଂସାରରେ କିଛି ପ୍ରିୟ ଦେଖି ନ ପାରି, ଭଗବାନଙ୍କୁ କେବଳ ପୁତ୍ର, କନ୍ୟା, ବିତ୍ତ ଏବଂ ଅନ୍ୟାନ୍ୟ ସବୁଠାରୁ ପ୍ରିୟ ବୋଲି ଜ୍ଞାନକରେ (ପ୍ରେୟଃ ପୁତ୍ରାତ୍, ପ୍ରେୟଃ ବିତ୍ତାତ୍, ପ୍ରିୟ ଅନ୍ୟସ୍ମାତ୍ ସର୍ବସ୍ମାତ୍), ସେ କେବଳ ବ୍ରହ୍ମସଙ୍ଗ କରିପାରେ । କୃଷ୍ଣପ୍ରାପ୍ତି ନିମିତ୍ତ ଗୋପୀମାନଙ୍କ ବିରହଜ୍ୱାଳା, ହୃଦୟର ମର୍ମନ୍ତୁଦ ବ୍ୟାକୁଳତା, ଉଚ୍ଛନ୍ନ ଦଶା ଓ ପୂର୍ଣ୍ଣ ଆତ୍ମବିସ୍ମୃତି ଏହାର ଉଦାହରଣ; ଅଥଚ ଗୋପୀମାନେ ଗୃହିଣୀ ସ୍ୱରୂପ ସଂସାରର ସମସ୍ତ ଦୁଃଖ-ସୁଖ-ଜଞ୍ଜାଳ ମଧ୍ୟରେ ରହି ସର୍ବଶ୍ରେଷ୍ଠ ଭକ୍ତ ହୋଇ ପାରିଥିଲେ । କର୍ମକୁଣ୍ଠ ଓ କର୍ମହୀନ ଜୀବନକୁ ଶ୍ରୀକୃଷ୍ଣ ଘୃଣାକରୁଥିଲେ । "ବିଦଗ୍ଧ ଚିନ୍ତାମଣି"ରେ ଭକ୍ତହୃଦୟ ମହାଭାବ ସ୍ୱରୂପା ଶ୍ରୀରାଧା ଠାକୁରାଣୀଙ୍କ ମୁଖରେ ତାହାର ବ୍ୟାକୁଳତା ପ୍ରକାଶ କରିଛି:---

"ରାଧା ଧରି ସଖୀ କର,
ବୋଲନ୍ତି ଆକଟ ଆଉ ନ କର ଗୋ,
ନିଜ ଭୟ ଛାଡ଼ିଲି ନିକର । ସଜନି ଗୋ ।

ଘନଶ୍ୟାମ ଗୁଣମାନ,
ରଖିଅଛି କି ମୋ ଧୈର୍ଯ୍ୟ ଗୁମାନ ଗୋ,
ମନ ଦହୁଛି ତା ସନମାନ । ସଜନି ଗୋ ।

× × ×

ତା ନାମ ଗାଇ ତୁଣ୍ଡରେ
ପ୍ରେମ-ଡମ୍ବରୁ ବଜାଇ ଦାଣ୍ଡରେ ଗୋ,
ଭିକ୍ଷା ମାଗୁଥିବି ବ୍ରହ୍ମାଣ୍ଡରେ । ସଜନି ଗୋ ।

ବାକ୍ ଦୂଷଣ ଘୋଷଣ
ହେଲେ ହେଉ ଏଥେ ନାନା କଷଣ ଗୋ ।
ମୁଁ ତ କଲିଣି ନିନ୍ଦା ଭୂଷଣ । ସଜନି ଗୋ ।"

(ଛାନ୍ଦ ୪୮)

× × × × ×

"ଆମ୍ଭେ ଅନ୍ତ ତନୟ ଗୋ ନ ଜାଣୁ,
ଗୁରୁ ଗଉରବ ଲାଜ ନ ମଣୁ ।
ଆମ ଅନ୍ତ ତନୟ ସବୁ ସେହି,
ତାଙ୍କୁ ନ ଦେଖି ଦହୁଅଛୁ ଦେହି ।"

(ଗୋପୀଭାଷା)

---

# ରାଧାକୃଷ୍ଣଲୀଳା (୩)

ତେବେ ଏଠାରେ ପ୍ରଶ୍ନ ହୋଇପାରେ, ଯିଏ-କୃଷ୍ଣଙ୍କ ସାଙ୍ଗରେ ରହି ଗୋପୀମାନେ ଯେଉଁ ସୁଖ ଅନୁଭବ କରୁଥିଲେ ତାହା କିପରି ? ବ୍ରହ୍ମ ସଂସ୍ପର୍ଶରେ ଅତ୍ୟନ୍ତ ସୁଖ ହୁଏ ଏବଂ ଏହା ସ୍ତ୍ରୀ ପୁରୁଷର ମିଳନଜାତ ରତି-ସୁଖ ସଦୃଶ; ବରଂ ତାହାଠାରୁ ଅତ୍ୟନ୍ତ ଅଧିକ । ଯଦି ଗୋପୀମାନଙ୍କର କୃଷ୍ଣଙ୍କ ସହିତ ଦେହସଂଯୋଗ ନ ଥିଲା, ସୁଖ ମିଳିଲା କିପରି ?

ରସୋଲ୍ଲାସତନ୍ତ୍ରରେ ଅଛି :—

"ମୈଥୁନଂ ସହ କୃଷ୍ଣେନ ଗୋପୀକା ଚକ୍ରୁଃ ଚ ଯତ୍
ତତ୍ ନ କାମାତ୍ ଅକାମାତ୍ ବା ଭାବ ଦେହେନ ତତ୍ କୃତମ୍ ।"

ଅର୍ଥାତ୍ ଗୋପୀମାନଙ୍କର ଶ୍ରୀକୃଷ୍ଣଙ୍କ ସହିତ ଯେଉଁ ମୈଥୁନ ହେଉଥିଲା, ତାହା ସ୍ଥୂଳ ଦେହରେ ହେଉ ନ ଥିଲା; ଏହା ଅପ୍ରାକୃତ ରମଣ ଏବଂ ଏହା ଭାବଦେହଦ୍ୱାରା ହିଁ ହେଉଥିଲା । ତେବେ ଭାବଦେହ କଅଣ ?

ଉକ୍ତ ତନ୍ତ୍ରରେ ଏହା କ'ଣ ବୁଝାଇ ଦିଆଯାଇଛି :—

"ଯଥା ଶରୀରେ ଦେହାନି ସ୍ଥୂଳଂ ସୂକ୍ଷ୍ମଂ ଚ କାରଣମ୍
ତଥୈବାନ୍ୟତ୍ ଦେହ ଜ୍ଞେୟଂ ଭାବଦେହ ପ୍ରକୀର୍ତ୍ତିତମ୍ ।
କୃପାଲବ୍ଧମିଦଂ ଦେହଂ ସହଜଂ ଜନ୍ମ ଜନ୍ମନି
ଅଥବା ସାଧନାଲବ୍ଧଂ କଦାପି ବା ମହେଶ୍ୱରି ।"

ଅର୍ଥାତ୍ ଦେହରେ ଯେପରି ସ୍ଥୂଳ ଓ ସୂକ୍ଷ୍ମ ଦୁଇ ଭାଗ ଅଛି, ସେପରି ଅନ୍ୟ ଏକ ଦେହ ଅଛି, ତାହାକୁ ହିଁ 'ଭାବଦେହ' କହନ୍ତି । ଭଗବାନଙ୍କ କୃପା ହେଲେ ଜନ୍ମଜନ୍ମାନ୍ତରରେ ଏ ଦେହ ମିଳେ ଅଥବା ସାଧନାଦ୍ୱାରା ଏହା କ୍ୱଚିତ୍ ମିଳିଥାଏ ।

ଏପରି ଅନେକ କଥା ଅଛି, ଯାହା କଥା କମ୍ବା ଲେଖାଦ୍ୱାରା ବୁଝାଇ ହୁଏ ନାହିଁ; ଅକଥ୍ୟ, ଅବର୍ଣ୍ଣ୍ୟ, ଉପଭୋଗ୍ୟ କେବଳ । ତେବେ ସ୍ୱାଦୁ ଭଗବାନଙ୍କୁ 'ଭାବଗ୍ରାହୀ' କହେ । ସେ ଭାବ ଗ୍ରହଣ କରନ୍ତି; ପଦାର୍ଥ ଗ୍ରହଣ କରନ୍ତି ନାହିଁ । ସବୁ ପଦାର୍ଥ ତ ତାଙ୍କର, ଅଭାବ ତାଙ୍କର କ'ଣ ? ଯେଉଁ ଭାବରେ ଯେ ପଦାର୍ଥ ତାଙ୍କୁ ଦିଆହେଲା, ସେ ସେହି ଭାବକୁ ଗ୍ରହଣ କରନ୍ତି । ଭାବାର୍ପିତ ବିଦୁରଙ୍କ ଶାଗ ଭାତ ଦୁର୍ଯ୍ୟୋଧନଙ୍କର ଭାବହୀନ ଭୋଜଭାତଠାରୁ ତାଙ୍କୁ ଅଧିକ ସୁଆଦ ଲାଗିଥିଲା । ରାମାବତାରରେ ମହାପ୍ରଭୁ ରାମଚନ୍ଦ୍ର ଶବରୁଣୀର ଅଇଁଠା ଫଳକୁ ଅଣ-ଅଇଁଠାଠାରୁ ଅଧିକ ପସନ୍ଦ କରିଥିଲେ ।

"ଆଣ ଆଣ ସୁନ୍ଦରୀରେ ଫଳକୁ ତୋହର
ତୋର ଯୋଗୁ ଉଦର ସନ୍ତୋଷ ହେଉ ମୋର ।
ବେଗ ବେଗ ଶବରୁଣୀ ପରଷଇ ଆଣି
ଆନନ୍ଦେଣ ମଣୋହି କରନ୍ତି ରଘୁମଣି ।
ଭୁଞ୍ଜିଣ ସନ୍ତୋଷ ଯେ ହୋଇଲେ ଗୁଣଧାମ
ପୁଣି ହିଁ ଆମ୍ବ ଆଣିଣ ଦେଲକ ଶବରୀ ।
କରେ ଧରି ରାମଚନ୍ଦ୍ର ତଳେ ପକାଇଲେ
ଦନ୍ତମୁଦ୍ରା ନାହିଁ ଏଥି ବୋଲଣ ବୋଇଲେ ।

× × × ×

ଚୂତବନେ ପଶି ତ ସେ ସାଉଁଟଇ ଆମ୍ବ
ଦନ୍ତରେ ଗୁପିଣ ଜାଣେ ଆମ୍ବି ର ସୁଆଦ ।
ମନ୍ଦକୁ ପକାଇ ଦେଇ ସାଇତଇ ଭଲ
ଏମନ୍ତ ଆଣି ସେ କରେ ସମସ୍ତଙ୍କୁ ଠୁଳ ।
ଅଜ୍ଞାନ ଲୋକ ଅଟଇ ସେହି ଶବରୁଣୀ
ପୂଜାଏକ ଖାଇଣ ଯେ ଭଲ ମନ୍ଦ ଜାଣି ।
ସ୍ୱାଦୁ ଫଳମାନ ଯେ ସମସ୍ତ ଠୁଳ କଲ
ସୁନ୍ଦର ଆମ୍ବ ଗୋଟିଏ ଲୁଚାଇ ରଖିଲା ।
ହୃଦପଦ୍ମ ମଧ୍ୟରେ ସେ କରଇ ବସ୍ତର
ଏ ଫଳକୁ ରଘୁନାଥ କରିବେ ଆହାର ।

ଏତେ ବିଚାରଣ ତାଙ୍କୁ ହୃଦରେ ଉଠିଲା
ପରମ ପୁରୁଷ ତାହା ଭାବେ ଭୋଗକଲା ।
ଯେତେଗୋଟି ଆମ୍ବରେ ଥିଲାକ ଦନ୍ତଘାତ
ଭାବେଣ ଭୋଜନ ତାଙ୍କୁ କଲେ ରଘୁନାଥ ।
ଯେତୋଟି ଆମ୍ବରେ ତୋର ଦନ୍ତମୁଦ୍ରା ଥିଲା
ସେ ଆମ୍ବ ମୋତେ ଶବରୀ ଭଲ ଯୋଗାଇଲା ।

[ବଳରାମ ଦାସଙ୍କ ଦାଣ୍ଡି ରାମାୟଣ, ଆରଣ୍ୟକାଣ୍ଡ]

---

# ରାଧାକୃଷ୍ଣଲୀଳା (୪)

## ରାସ ଓ ପ୍ରବାସ

ଆମ୍ଭେମାନେ ଆଗେ କହିଅଛୁଁ, ବ୍ରହ୍ମସ୍ପର୍ଶ ବା ବ୍ରହ୍ମଦର୍ଶନ ଅତ୍ୟନ୍ତ ସୁଖପ୍ରଦ—ଏ ସୁଖର ତୁଳନା ନାହିଁ, ଅକଥ୍ୟ ଓ ଅବର୍ଣ୍ଣ୍ୟ । ଆମ ସାଧାରଣ ଜୀବନ କଥା ବିଚାର କରଯାଉ । ଯାହାର ଯାହା ପାଇଲେ ଆନନ୍ଦ ମିଳେ, ସେ ଯେତେବେଳେ ବହୁ ଯତ୍ନ ପରେ ତାହା ପାଏ, ତାହାର ଆନନ୍ଦ ଉଚ୍ଛୁଳିଉଠେ । ଏହାର ବାହ୍ୟ ପ୍ରକାଶ ସାଧାରଣତଃ କ'ଣ ? କିଏ ତାଳିମାରେ, କିଏ ହସିଉଠେ, କିଏ ହସି ହସି ତାଳିମାରି ନାଚିଉଠେ ଇତ୍ୟାଦି ।

ଇଟାଲୀର ସୁପ୍ରସିଦ୍ଧ କବି ଦାନ୍ତେ (Dante) ବ୍ରହ୍ମଦର୍ଶନ ସମ୍ବନ୍ଧରେ ଲେଖିଛନ୍ତି:—

"Dante initiated into Paradise sees the universe laugh with delight, as it glorifies God, and the awful Countenance of Perfect Love, adorned with smiles. Thus the souls of the great theologians dance to music and laughter with the Heaven of the Son, the loving Seraphs in their ecstatic Joy whirl about the Being of God."

ସେ ଲେଖିଛନ୍ତି—"ସ୍ୱର୍ଗରେ ପ୍ରବେଶକରି ଦେଖିଲି ଯେ ସମସ୍ତ ସୃଷ୍ଟି ଆନନ୍ଦୋଜ୍ଜ୍ୱଳ ହୋଇ ଭଗବାନଙ୍କର ମହିମା କୀର୍ତ୍ତନ କରୁଅଛି । ପୂର୍ଣ୍ଣ ପ୍ରେମାଧାରଙ୍କର ଈଷଦ୍ହାସ୍ୟମୟ ବଦନମଣ୍ଡଳର ଦୀପ୍ତିରେ ଚତୁର୍ଦ୍ଦିଗ ଉଦ୍ଭାସିତ ହୋଇଅଛି । ଧର୍ମାତ୍ମା ଲେଖକମାନଙ୍କର ଆତ୍ମା ଖ୍ରୀଷ୍ଟଙ୍କର ମଧୁର ବାଦ୍ୟ ଓ ହାସ୍ୟମୁଖରେ ସ୍ୱର୍ଗରାଜ୍ୟରେ ଆନନ୍ଦରେ ନାଚୁଅଛନ୍ତି । ପ୍ରେମ ତଳତଳ ସ୍ୱର୍ଗଦୂତମାନେ ଉଲ୍ଲାସବିହ୍ୱଳ ଅବସ୍ଥାରେ ଭଗବାନଙ୍କ ଚତୁଃପାର୍ଶ୍ୱରେ ଘୂରି ଘୂରି ନାଚୁଛନ୍ତି ।"

ଅର୍ଫିଅସ୍ (Orpheus) ନାମକ ଜଣେ ଗ୍ରୀକ୍ ଲୋକ ଥିଲେ । ସେ ଏପରି ସୁନ୍ଦର ବଂଶୀ ବଜାଉଥିଲେ ଯେ ମନୁଷ୍ୟ କଥା ଛାଡ଼ିଦିଅ, ପଶୁପକ୍ଷୀ, କୀଟପତଙ୍ଗ ଆଦି ସେଥିରେ ମୁଗ୍ଧ ହୋଇ ତାକୁ ଶୁଣୁଥିଲେ; ସମୟ ସମୟରେ ନାଚୁଥିଲେ ମଧ୍ୟ ।

ଆମ ଦେଶରେ ଏବେ ମଧ୍ୟ ଏପରି ବାଦକ ଓ ଗାୟକ ଅଛନ୍ତି, ଯାହାଙ୍କର ସଙ୍ଗୀତ ଶୁଣି ଜଙ୍ଗଲର ପଶୁମାନେ ମଧ୍ୟ ସ୍ତବ୍ଧ ହୋଇଯାଆନ୍ତି । ସୁନ୍ଦର ମଧୁର ଗୀତବାଦ୍ୟ ଶୁଣିଲେ ସାଧାରଣ ଲୋକ ମଧ୍ୟ ତାଳ ଧରନ୍ତି ହାତରେ କମ୍ବା ଗୋଡ଼ରେ ।

ବଂଶୀ ବଜାଇବାରେ ଶ୍ରୀକୃଷ୍ଣ ଥିଲେ ଧୁରନ୍ଧର । ସେ ବଂଶୀସ୍ୱନ ଶୁଣିଲେ ପଶୁପକ୍ଷୀ, କୀଟପତଙ୍ଗ ଉଚ୍ଛାଟ ହେଉଥିଲେ; ମନୁଷ୍ୟ କଥା ଛାଡ଼ ।

ଗୋପ ବୃନ୍ଦାବନରେ ଶ୍ରୀକୃଷ୍ଣ ପିଲା ବୟସରେ ଯେତେ ଦିନ ଥିଲେ, ସେ ସ୍ଥାନ ହସ-ଖେଳ-ନାଚ ଓ ଆନନ୍ଦରେ ଉଚ୍ଛୁଳୁଥିଲା । ସର୍ବସାଧାରଣ ଏହା ଭୋଗ କରୁଥିଲେ । ସମସ୍ତ ଆପଦ ବିପଦରୁ ସେ ସେମାନଙ୍କୁ ପରିତ୍ରାଣ ଦେଉଥିଲେ; କନ୍ତୁ ସେମାନଙ୍କ ମଧ୍ୟରେ ଯେଉଁମାନେ ନିର୍ମଳଚିତ୍ତ ଓ ଶୁଦ୍ଧାତ୍ମା ଥିଲେ, ସେମାନେ ଶ୍ରୀକୃଷ୍ଣଙ୍କୁ ମନୁଷ୍ୟ ସ୍ୱରୂପ ନ ଦେଖି ପରମାତ୍ମାଙ୍କ ଅବତାର ରୂପେ ଦେଖୁଥିଲେ । ମାଆ ଯଶୋଦା କ୍ଷଣମାତ୍ର ତାଙ୍କର ବିଶ୍ୱରୂପ ଦେଖି ସୁଦ୍ଧା ମାୟାବଳରେ ଜାଣିପାରିଲେ ନାହିଁ ଯେ ତାଙ୍କ ପୁଅ ଏକ ଅସାଧାରଣ ପିଲା; କନ୍ତୁ ସେମାନଙ୍କ ମଧ୍ୟରେ ଜଣେ ନିର୍ମଳହୃଦୟା ଶୁଦ୍ଧପୂତା ରମଣୀ ଥିଲେ, ଯେ ଶିଶୁ ଶ୍ରୀକୃଷ୍ଣଙ୍କୁ ଦେଖିବାମାତ୍ରକେ ଜାଣିଥିଲେ ଯେ ସେ ଅସାଧାରଣ ।

ଏହା କ'ଣ ହୁଏ ନାହିଁ ? ମହାତ୍ମା ଗାନ୍ଧି କହୁଥିଲେ, "ଭଗବାନ ସବୁଠାରେ ଅଛନ୍ତି, ଆମେ ତାଙ୍କୁ ଦେଖିପାରୁ ନାହୁଁ; କାରଣ ଆମ ଆଖିରେ ଗୋଟାଏ ପାପ-ପରଦା ପଡ଼ିଯାଇଛି । ସେ ପରଦା କାଢ଼ି ହୋଇଗଲେ ଆମେ ତାଙ୍କୁ ଦେଖିପାରିବା ।" ଯାହାଙ୍କ ହୃଦୟରୁ ପାପତାପ ଯେତିକି ଅପସାରିତ ହୋଇଅଛି, ତାହାଙ୍କର ଭଗବାନଙ୍କୁ ପାଇବା ଓ ଦେଖିବା ସେତିକି ନିକଟତର ହୋଇଅଛି ।

ଗୋପ-ଯୁବତୀମାନଙ୍କ ମଧ୍ୟରେ ଶ୍ରୀରାଧା ଠାକୁରାଣୀ ଥିଲେ ସବୁଠାରୁ ନିର୍ମଳଚରିତା ଓ ଭଗବତ୍‌ଭକ୍ତିପରାୟଣା । ଶ୍ରୀକୃଷ୍ଣଙ୍କ ବାପା ନନ୍ଦ ବନସ୍ତରେ ଗାଈ ଚରାଉ ଚରାଉ ହଠାତ୍ ଅନ୍ଧାର ହୋଇଗଲା । ପିଲା ଶ୍ରୀକୃଷ୍ଣ ସାଙ୍ଗରେ ଥିଲେ । ମେଘ ଘୋଟିଆସିଲା, ପିଲାଟିକୁ ଘରକୁ ପଠାଇଦେବା ନିତାନ୍ତ ଆବଶ୍ୟକ । ସେ ପିଲାଟି କିନ୍ତୁ ରଙ୍କରତନ, ଦୁଃଖୀର ଧନ, ଶୋକପାସୋରା ଅପ୍‌ସରା ସୁନ୍ଦର । କାହା ଜିମା ତାକୁ ଘରକୁ ଛାଡ଼ିବେ ? ବାଛିଲେ ଶ୍ରୀମତୀ ରାଧାଙ୍କୁ, କହିଲେ—"ରାଧେ ! ମୁନିମାନଙ୍କଠାରୁ ପୂର୍ବେ ଶୁଣିଛି, ତୁମେ ସର୍ବସୁଲକ୍ଷଣୀ, ଭକ୍ତିମତୀ ଓ ଶୁଦ୍ଧଚରିତା; ତେଣୁ ତୁମଠାରେ ମୋର ବିଶ୍ୱାସ ହେଉଅଛି । ଏ ପିଲାଟିକୁ ସାଙ୍ଗରେ ନିଅ, ତା ମା ପାଖରେ ଛାଡ଼ିଦେବ । ପ୍ରବଳ ମେଘ ମାଡ଼ିଆସିଲାଣି !"

"ମେଘମାନେ ଆଚ୍ଛନ୍ନ ଆକାଶ ସୀମା
ତମାଳମାନେ ଶ୍ୟାମବନ ସୁଷମା
ସନ୍ଧ୍ୟାରେ ଭୀରୁ ଏ ମୋ ଉତ୍ତର ପଥେ
ରାଧେ ଗୋ ଗୃହେ ତାକୁ ନେବଟି ସାଥେ । ୧ ।
ଏମନ୍ତ ବୋଲୁଁ ନନ୍ଦ ଗୋପରାଜନ
ଚଳନ୍ତି ବ୍ରଜେ ରାଧା-ନନ୍ଦନନ୍ଦନ
ପଥେ ଯମୁନା ତୀରେ ଏକାନ୍ତେ ମିଶି
ରଚନ୍ତେ କେଳି ଜୟଦେବ ପ୍ରଶଂସି । ୨ ।"

[ଗୀତଗୋବିନ୍ଦ ଜଗବନ୍ଧୁ-ଅନୁବାଦ ]

ସ୍ୱଚ୍ଛ ନିର୍ମଳ ଦର୍ପଣରେ ଯିମା ସୂର୍ଯ୍ୟକିରଣ ପ୍ରତିଫଳିତ ହୁଏ, ଠିକ୍ ସେହିପରି ପରମବ୍ରହ୍ମ ସଂସର୍ଗ ବା ସ୍ପର୍ଶରେ ରାଧା ବ୍ରହ୍ମାନନ୍ଦ ସୁଖ ଉପଭୋଗ କଲେ । ଆମ ଦେଶର ମୁନିଋଷିମାନେ ଧ୍ୟାନରତ ଅବସ୍ଥାରେ ଉଇହୁଙ୍କାଦ୍ୱାରା ଆବୃତ ହୋଇପଡ଼ିବାର କଥା ଆମ୍ଭେମାନେ ପଢ଼ିଛେଁ । ଏବେ ମଧ୍ୟ ହିମାଳୟରେ ଉଲଗ୍ନ ଦେହରେ ତୁଷାରବୃତ ହୋଇ ଯୋଗୀମାନେ ଅଛନ୍ତି । ଭଗବତ୍‌ଧ୍ୟାନ ଏପରି ଅତ୍ୟନ୍ତ ସୁଖକର ଯେ ସେମାନେ ଏ ଅବସ୍ଥାରେ ବାହ୍ୟଜ୍ଞାନଶୂନ୍ୟ ହୋଇପଡ଼ନ୍ତି ।

ଏହି ମାନସିକ ବା ଆତ୍ମିକ ଭାବ ରତି-ସୁଖ ମା ଠାକୁରାଣୀ ପ୍ରଥମେ ଶ୍ରୀକୃଷ୍ଣ ବା ପରମବ୍ରହ୍ମଙ୍କ ସଂସ୍ପର୍ଶରେ ପାଇଥିଲେ ଓ ତାହା ସଖୀମାନଙ୍କୁ

କରି ସେମାନଙ୍କୁ ଶୁଦ୍ଧପୂତ କରି କୃଷ୍ଣପ୍ରାପ୍ତିର ଉପଯୋଗ୍ୟା କରାଉଥିଲେ; ତେଣୁ ସେମାନେ ମା ଠାକୁରାଣୀଙ୍କୁ ସଉତୁଣୀ ଭାବ ନ ଦେଖି ଶ୍ରୀକୃଷ୍ଣଙ୍କର ବୃନ୍ଦାବନ ପରିତ୍ୟାଗ ପରେ ତାଙ୍କୁ ରାଜା (ନେତୀ) କରାଇ ତାଙ୍କ ଉପଦେଶ ଅନୁସାରେ ଚଳୁଥିଲେ ।

ଆନନ୍ଦବହ୍ବଳ ହେଲେ ସମସ୍ତେ ନାଚିଉଠନ୍ତି । ମାନବୀୟ ଆନନ୍ଦର ଶେଷ ସୀମାରୁ ଆହୁରି ଅଧିକ ଆନନ୍ଦ ଗୋପୀମାନେ କୃଷ୍ଣ ସନ୍ନିଧିରେ ପାଉଥିଲେ । ମୋହନବଂଶୀ ବାଜୁଥିଲା, ବାଳକୃଷ୍ଣ (ପରଂବ୍ରହ୍ମ) ନାଚୁଥିଲେ, ଜଗତ ନାଚୁଥିଲା, ଗୋପୀମାନେ ମଧ୍ୟ । ଭଗବତ୍ ରାଜ୍ୟର ସ୍ୱର୍ଗୀୟ ନୃତ୍ୟଲୀଳା ମର୍ତ୍ତ୍ୟବାସୀମାନେ ଆଦର୍ଶ ସ୍ୱରୂପ ଦେଖି ଉପଭୋଗ କରୁଥିଲେ । ଏହା ହିଁ ହିନ୍ଦୁ ବୈଷ୍ଣବର ରାସକ୍ରୀଡ଼ା ବା ରାସଲୀଳା; ବିଦେଶୀୟ ଦାର୍ଶନିକ ଦ୍ରଷ୍ଟାମାନଙ୍କର ସ୍ୱର୍ଗୀୟ ନୃତ୍ୟ ବା Divine Dance, ବିଜ୍ଞାନ ଜଗତରେ ଆଣବିକ ପ୍ରୋଟନ୍ (Proton) ଚତୁର୍ଦ୍ଦିଗରେ ଇଲେକ୍ଟ୍ରନ୍ (Electron)ର ନର୍ତ୍ତନ ।

ଏହି ରାସ ପରେ ଶ୍ରୀକୃଷ୍ଣଙ୍କର ଆରମ୍ଭ ହେଲା ପ୍ରବାସ । ମିଳନ ପରେ ବିରହ । ବିଦେଶୀୟ ଭାଷାରେ "Soul's Dark Night" ଅର୍ଥାତ୍ ଆତ୍ମାର ଅନ୍ଧକାର ।

ଆତ୍ମାର ପରୀକ୍ଷା, ଉନ୍ନତି ଓ ଦୃଢ଼ୀକରଣ ନିମିତ୍ତ ଏହା ଭଗବାନଙ୍କର ନିୟମ । କେବଳ ଯେ ଆମ ଦେଶରେ ଭକ୍ତମାନେ ଓ ଗୋପୀମାନେ ଏ ଦୁର୍ଦ୍ଦଶା ଭୋଗ କରିଥିଲେ ତାହା ନୁହେଁ, ଅନ୍ୟ ଦେଶର ଭକ୍ତମାନଙ୍କର ଅନୁଭୂତି ଅବିକଳ ଏହିରୂପ ।

ଶ୍ରୀକୃଷ୍ଣ ମଥୁରାରୁ ଆଉ ବୃନ୍ଦାବନ ଫେରିଲେ ନାହିଁ । ଗୋପୀମାନେ କିପରି କଦର୍ଥନାରେ ଜୀବନ ଯାପନ କରିଥିଲେ, ଆମ ଦେଶରେ ପ୍ରାୟ ସମସ୍ତେ ଜାଣନ୍ତି । ସନ୍ନ୍ୟାସିନୀ ଟେରେସା (St. Theresa) ନିଜର ଅନୁଭୂତିରେ ଲେଖିଛନ୍ତି:—

"The pain was so great that it made me moan and so surprising was the sweetness of this excessive pain

that I could not wish to be rid of it. The pain is not bodily, but spiritual though the body had share in it, even a large one."

"କଷ୍ଟରେ ମୁଁ ଗଁ ଗଁ ହେଲି, କିନ୍ତୁ କଷ୍ଟ ଏତେ ତୀବ୍ର ହୋଇ ସୁଦ୍ଧା ଏଥିରେ ଏପରି କିଛି ମଧୁରତା ପାଉଥିଲି, ଯାହା ସକାଶେ ମୋର ଇଚ୍ଛା ହେଉ ନ ଥିଲା, ଏ କଷ୍ଟ ଶୀଘ୍ର ଅପସରି ଯାଉ । ଏ କଷ୍ଟ ଦୈହିକ ନୁହେଁ, ଆଧ୍ୟାତ୍ମିକ, ଯଦିଓ ଏଥିରେ ଦେହର ମଧ୍ୟ ବଡ଼ ଭାଗଟାଏ ରହିଥିଲା ।"

ଆଉଠାଏ ସେ ପୁଣି ଲେଖିଛନ୍ତି, "କଷ୍ଟ ଏତେ ତୀବ୍ର ହେଲା ଯେ ଯେତେ ଯତ୍ନ କଲେ ସୁଦ୍ଧା ମୁଁ ଡାକ ପକାଇଲି । ଭଗବାନ ମତେ ଛାଡ଼ିଗଲେ । ଏହି କଥା ଗଭୀର ଭାବରେ ଧ୍ୟାନକରିବାରୁ ମନ ଓ ଦେହରେ ସାମୟିକ ପୁଲକ ଆସେ ସତ, କିନ୍ତୁ ଏହା ଖୁବ୍ ଅଳ୍ପ ସମୟ ରହେ । ତାପରେ ଆରମ୍ଭ ହୁଏ ଯନ୍ତ୍ରଣା । ଦେହ ଭିତରେ ହାଡ଼ସବୁ ଖଣ୍ଡ ଖଣ୍ଡ ହୋଇଗଲା ପରି ଜଣାପଡ଼େ ।

× × × ×

ତାପରେ ଆସେ ପ୍ରଳାପ । ନ୍ୟାୟ ଅନ୍ୟାୟ, ଭଲ ମନ୍ଦ ମଣିଷ ଜାଣିପାରେ ନାହିଁ । ଭଗବତ୍‌ପ୍ରାପ୍ତି ତୃଷ୍ଣା ଦେହକୁ ଜାଳିଦିଏ । ଯେଉଁ ଜଳଦ୍ୱାରା ଏହା ନିବାରିତ ହୁଅନ୍ତା, ତାହା ପିଇବାକୁ ମିଳେ ନାହିଁ ।

"The pain grows to such a degree of intensity that, inspite of oneself one cries aloud. More over, the intense and painful concentration upon the Divine absence, which takes place in the dark rapture, induces all the psycho-physical marks of ecstasy. Although the ecstasy lasts but short time, the bones of the body seem to be disjointed by it × × × she is no longer the mistress of reason. She burns with a consuming thirst and cannot drink at the well which she desires"

ସନ୍ୟାସିନୀ କାଥରିନ୍ (St. Cathrine) ଲେଖିଛନ୍ତି— "ଆତ୍ମାର ଅଭାବ ପୂରଣ କରିବା ନିମିତ୍ତ ମୁଁ (ଭଗବାନ) ତାହା (ଭକ୍ତ) ଠାରୁ ଅପସରିଆସେ । ମୋର ଇଚ୍ଛା, ସେ ଏହାଦ୍ୱାରା ଲଜ୍ଜିତା ହେଉ ; ତେବେ ଯାଇ ସେ ମତେ ପ୍ରକୃତରେ ପାଇପାରିବେ । ସେ ଜାଣୁଛି ଯେ ମୁଁ ତାକୁ ଛାଡ଼ିଛି । ତେବେ ସୁଦ୍ଧା ତାର ବିଶ୍ୱାସ ତୁଟି ନାହିଁ । ସେ ଭାବୁଛି, ମୁଁ ଫେରିବି । ସେ ମୋର ପ୍ରେମର ଅଗ୍ନି ଜାଣେ ।"

"In order to raise the soul from imperfection, said the voice of God to St. Cathrine, "I withdraw myself from her sentiment, which I do in order to humiliate her and to cause her to seek me in truth. × × × Though she perceives that I have withdrawn myself, she awaits with lovely faith, the coming of Holy spirit that is of Me. Who am the Fire of Love ?"

କୁମାରୀ ଅଣ୍ଡରହିଲ୍ ଏହିପରି ଭକ୍ତି ଓ ଅନୁଭୂତି ବିଚାର କରି ଲେଖିଛନ୍ତି— 'ପରମାତ୍ମାଙ୍କ ସହିତ ଜୀବାତ୍ମାର ଏହି ସାମୟିକ ମିଳନ ପାଇ ଆତ୍ମା ଭାବେ ଯେ ଏହା ଚିରମିଳନ ହୋଇଗଲା । ଅନ୍ଧ ନିର୍ବୋଧ ! ଦିନ ପରେ ରାତି ଆସେ—ତୋର ଆଧ୍ୟାତ୍ମିକ ରାତି ଶୀଘ୍ର ଆସୁଛି ।'

"The soul believes that this temporary union will prove a perdurable consciousness of the Divine. Blind fool ! the night of the soul is yet to come." (Underhill's mysticism. P. 45)

ଏହାର କାରଣ ନିର୍ଦ୍ଦେଶ କରିବାକୁ ଯାଇ ସେ ଲେଖିଛନ୍ତି— "ପୂର୍ଣ୍ଣ ଆତ୍ମବିସ୍ମରଣରେ ଅର୍ଥ ହେଉଛି 'ମୁଁ' ଭାବର ସମ୍ପୂର୍ଣ୍ଣ ବିନାଶସାଧନ । 'ମୁଁ' ଭାବ ଥିବା ପର୍ଯ୍ୟନ୍ତ ଆଧ୍ୟାତ୍ମିକ ବିକାଶ ଅସମ୍ଭବ ।"

ଯାହା ଭଗବାନଙ୍କର ନିୟମ, ପ୍ରକୃତିର ନିୟମ, ତାହା ଜାତି-ଦେଶ ଲିଙ୍ଗ-ନିର୍ବିଶେଷରେ ଚାରିଆଡ଼େ ଘଟେ । ସମସ୍ତେ ତାହା ଅନୁଭବ କରନ୍ତି । ହିନ୍ଦୁ ଏହା କେଉଁ ସ୍ମରଣାତୀତ କାଳରୁ ଜାଣିଥିଲା ଏବଂ ତାହାର ଶାସ୍ତ୍ରରେ ଏସବୁ ଲିପିବଦ୍ଧ କରାଯାଇଛି । ବିଦେଶୀୟମାନେ ଏହା ଏବେ ପାଇଲେ । ସେ ଏବେ ଯାହା କହୁଛନ୍ତି, ହିନ୍ଦୁ ତାହାକେଉଁ କାଳରୁ କହୁଥିଲା । ତେବେ

ହିନ୍ଦୁକୁ ଏତେ ଅଶ୍ଳୀଳ ଚାହୁଁଛନ୍ତି କାହିଁକି ? କୁମାରସ୍ୱାମୀ ଅଣ୍ଡରହିଲ୍‌ଙ୍କ ଭାଷାରେ— "They do but advertise their ignorance of the mechanism of Arts."

ହିନ୍ଦୁ ବୈଷ୍ଣବମାନଙ୍କର ଏହି ବିରହଦଶା-ବର୍ଣ୍ଣନ ଓ ତାହାର ପ୍ରତ୍ୟେକ ସୋପାନର ବିଶ୍ଳେଷଣ ଚମତ୍କାର । ବିଦେଶୀୟ ଲେଖାରେ ଏପରି ସୂକ୍ଷ୍ମ ଆଲୋଚନା ଦେଖାଯାଏ ନାହିଁ । ବିରହରେ ଦଶ ଦଶା ଥାଏ; ଯଥା--ଚିନ୍ତା, ଜାଗରଣ, ଉଦ୍‌ବେଗ ଶୀର୍ଣ୍ଣତା, ମାଳିନ୍ୟ, ପ୍ରଳାପ, ବ୍ୟାଧି, ଉନ୍ମାଦ, ମୂର୍ଚ୍ଛା ଓ ମୃତ୍ୟୁ ।

ମା ରାଧା ଠାକୁରାଣୀଙ୍କୁ ଏ ସମସ୍ତ ଦଶା ଭୋଗ କରିବାକୁ ପଡ଼ିଥିଲା । ପାଠକ-ପାଠିକା ଭାବନ୍ତୁ ନାହିଁ ଯେ ରାଧାକୃଷ୍ଣ କଥା କେବଳ ରୂପକତା; ଏଥିରେ ବାସ୍ତବତା ନାହିଁ । ଲୋକଶିକ୍ଷା ନିମିତ୍ତ ରାଧାକୃଷ୍ଣ କେବଳ କବି-କଳ୍ପନା, ଏହା ନୁହେଁ; କେବେହେଁ ନୁହେଁ । ଏହା ଯେପରି ଖାଣ୍ଟି ବାସ୍ତବତା, ସେହିପରି ମର୍ମସ୍ପର୍ଶିନୀ ରୂପକତା ମଧ୍ୟ । ସ୍ଥାନେ ସ୍ଥାନେ କବିମାନେ ଏହି ରୂପକତାକୁ ଅତିଶୟୋକ୍ତିଦ୍ୱାରା କଳୁଷିତ କରି ପକାଇଛନ୍ତି ।

ଶ୍ରୀଚୈତନ୍ୟ ମହାପ୍ରଭୁ ନିଜକୁ ରାଧା ବୋଲି ଭାବୁଥିଲେ । ରାଧା ଯାହା ଆଚରଣ କରି କୃଷ୍ଣଙ୍କୁ ପାଇଥିଲେ, ଶ୍ରୀଚୈତନ୍ୟ ତାହାସବୁ କରୁଥିଲେ ଓ ମା ରାଧା ଠାକୁରାଣୀଙ୍କର ସମସ୍ତ କଦର୍ଥନା ନିଜେ ଭୋଗିଥିଲେ; ଯଥା:—

"ପ୍ରଭୁ ପଡ଼ ମୂର୍ଚ୍ଛା ଯାଯ଼ ଶ୍ୱାସ ନାହିଁ ଆର
ଆଚମ୍ବିତେ ଉଠେ ପ୍ରଭୁ କରିଯ଼ା ହୁଙ୍କାର ।
ସଘନେ ପୁଲକେ ଯେନ ଶିମୂଲେର ତରୁ
କଭୁ ପ୍ରଫୁଲ୍ଲିତ ଅଙ୍ଗ କଭୁ ହଯ଼ ସରୁ ।
ପ୍ରତି ରୋମେ ହଯ଼ ପ୍ରସ୍ୱେଦରକ୍ତୋଦ୍‌ଗମ
ଜଜ ଗଗ ମମ ପରି ଗଜ ଗଜ ବଚନ ।
ଏକ ଏକ ଦନ୍ତ ସବ ପୃଥକ୍ ପୃଥକ୍ ନଡ଼େ
ଐଛେ ନଡ଼େ ଦନ୍ତ ଯେନ ଭୂମେ ଖସିପଡ଼େ ।
[ଚୈତନ୍ୟ ଚରିତାମୃତ]

———

# ରାଧାକୃଷ୍ଣଲୀଳା ( ୫ )

## ବସ୍ତ୍ରହରଣ ଓ ଶ୍ରୀକୃଷ୍ଣଙ୍କ ନାନା ବେଶ

ବସ୍ତ୍ରହରଣ ଉପାଖ୍ୟାନ ପ୍ରାୟ ଅଳ୍ପ ବହୁତ ସମସ୍ତେ ଜାଣନ୍ତି । ତେବେ ଏହାର ପ୍ରଚ୍ଛନ୍ନ ଅର୍ଥ ବୁଝାଇବା ନିମିତ୍ତ ଏଠାରେ କଥାର ସଂକ୍ଷେପ ଉଲ୍ଲେଖ ଆବଶ୍ୟକ ।

ଶ୍ରୀକୃଷ୍ଣ ଥରେ ଯମୁନାକୂଳରେ ଗଛ ଉପରେ ବସିଥିଲେ । ଗୋପୀମାନେ ଗାଧୋଇଆସି ନିଜର ଲୁଗା ଖଣ୍ଡମାନ କୂଳରେ ଥୋଇ ଉଲଗ୍ନ ଅବସ୍ଥାରେ ପାଣିରେ ପଶି ଗାଧୋଇବା ସମୟରେ ଶ୍ରୀକୃଷ୍ଣ ଲୁଗାତକ ନେଇ ଗଛ ଉପରକୁ ଉଠିଗଲେ । ଗୋପୀମାନେ ଲୁଗାତକ ମାଗିବାରୁ ଶ୍ରୀକୃଷ୍ଣ କହିଲେ, "ଉପରକୁ ଉଲଗ୍ନ ଅବସ୍ଥାରେ ଆସ ଓ ଯେ ଯାହାର ଲୁଗା ବାଛି ନେଇଯାଅ ।" କୌଣସି ପ୍ରକାର କାକୁତି ମିନତି ସେ ଶୁଣିଲେ ନାହିଁ । ବାଧ୍ୟହୋଇ ଗୋପୀମାନେ ଆଖିବୁଜି ଉଲଗ୍ନ ହୋଇ

"ନିଜ କରେ କାମାଗାର ଆଚ୍ଛାଦି, । ନଗଜଙ୍କୁ ବାହାର ନେଇ ମୁଦି, ନତ ବଦନେ ଅପଥ ପଥ କଲେ, । ମୁଖ ମୋଡି ସ୍କନ୍ଧେ ଲଦି ସେ ନୂତନା ।

ଶ୍ରୀକୃଷ୍ଣ କହିଲେ, "ନମସ୍କାର କର ଓ ଆଖି ଖୋଲି ଯେ ଯାହାର ବସ୍ତ୍ର ବାଛିନିଅ ।" ଗୋପୀମାନେ ବାଧ୍ୟହୋଇ ସମସ୍ତ ଲଜ୍ଜା ତ୍ୟାଗକରି ସେପରି କଲେ ଓ ଯେ ଯାହାର ଲୁଗା ବାଛିନେଲେ ।

* ଦୁର୍ଗା ଜୀବର ବେକମୋଡ଼ି ରକ୍ତ ପିଇବା ଉପରକୁ ଯେପରି ବୀଭତ୍ସ, ଏହି ବସ୍ତ୍ରହରଣ ଉପରକୁ ସେହିପରି ବୀଭତ୍ସ । ଆଧ୍ୟାତ୍ମିକ ଭାବରେ ଏହାର

---

*ଦୁର୍ଗାପୂଜାର ସାମାଜିକ ଓ ମାନବିକ ଅର୍ଥ ଲେଖକଙ୍କର "ବନ୍ଦେମାତରମ୍" ପୁସ୍ତକରେ ସ୍ପଷ୍ଟ କରାଯାଇଛି ।

ଅର୍ଥ କେବଳ ଚମତ୍କାର ନୁହେଁ, ବଚକ୍ଷଣ ଭାବରେ ମର୍ମସ୍ପର୍ଶୀ । ବଦେଶୀୟ ଲୋକ ନ କହିଲେ ଆମେ ଆମ କଥା ବୁଝୁ ନାହିଁ । ତେଣୁ ଏଠାରେ ପୁଣି ସେହି ବଦେଶୀୟ ଲେଖାରୁ ଗୋଟିଏ ଯୋଡ଼ିଏ ଉଦାହରଣ ଦିଆଯାଉ ।

"ଆତ୍ମା ଯଦି ତାହାର ସମସ୍ତ ବସ୍ତ୍ର ବା ଖୋଳ କାଢ଼ି ପୋପାନ୍ତି ଦେବ; ତେବେ ଯାଇ ସେ ପରମାତ୍ମାଙ୍କର ପୂର୍ଣ୍ଣ ଦର୍ଶନ ପାଇପାରିବ ଓ ପରମାତ୍ମା ପୂର୍ଣ୍ଣଭାବରେ ତାଙ୍କୁ ବରଣ କରିପାରିବେ । ଯେ ପର୍ଯ୍ୟନ୍ତ ଆତ୍ମା ତାହାର ଓଢ଼ଣାଗୁଡ଼ିକ ଓ ତାହା ଯେତେ ପତଳା ହେଉ ପଛକେ ପୋପାଡ଼ି ଦେଇ ନାହିଁ, ସେପର୍ଯ୍ୟନ୍ତ ସେ ପରମାତ୍ମାଙ୍କର ଦର୍ଶନ ପାଇ ନାହିଁ ।

"If the soul wears stripped of all her sheaths, God would be discovered, all naked to her view and would give Himself to her withholding nothing. As long as the soul, has not thrown off all veils, however thin, she is unable to see God."—Eckhart.

"ଆତ୍ମା ସମସ୍ତ ପ୍ରକାର ପରିଧାନବିବର୍ଜିତ ହୋଇ ଧର୍ମପ୍ରାଣ ଅବସ୍ଥାରେ ପହଞ୍ଚିଲେ ପରମାତ୍ମାଙ୍କର ସାକ୍ଷାତ ସାଙ୍ଗେ ସାଙ୍ଗେ ପାଇଯାଏ ।"

"It is then that, caught up above all things, by the sublime ardours of a stripped and naked spirit, we obtain the immediate contact of the Divine."

*—Ruysbroeck*

"ଜେରୁଜେଲମ ( ଖ୍ରୀଷ୍ଟିୟାନମାନଙ୍କର ତୀର୍ଥସ୍ଥାନ ) ଯାତ୍ରୀ ଯେପରି ତାହାର ଘରେ ସ୍ତ୍ରୀ ପିଲା ସମସ୍ତଙ୍କୁ ଛାଡ଼ି ବାହାରିଆସେ, ପାଖରେ କିଛି ମାତ୍ର ଜିନିଷ ରଖେ ନାହିଁ, କାରଣ ତାହା ତାହାର ଯାତ୍ରାରେ ବାଧାଦେବ, ଠିକ୍ ସେହିପରି ତୁମେ ଯଦି ଆଧ୍ୟାତ୍ମିକ ଉନ୍ନତି କରିବାକୁ ଚାହଁ ତେବେ ତୁମର ଯେତେ ଯାହା ଅଛି, ପୋପାଡ଼ି ଦେଇ ଲଙ୍ଗଳା ହୋଇ ଚାଲ ।"

"Just as true pilgrim going towards Jerusalem leaves behind him his house and land, wife and children, maketh himself poor and bare of all thing he hath : that

he may go lightly without letting, right so, if thou wilt be a spiritual pilgrim, thou shalt strip thyself naked of all that thou hast. (Hilton)."

—*Hilton.*

ଶ୍ରୀକୃଷ୍ଣ ବଳିନ୍ଦ ଛଦ୍ମବେଶରେ ମା ଠାକୁରାଣୀ ରାଧାଙ୍କ ପୁରକୁ ଯାଉଥିଲେ । ଭଗବାନ ନାନା ରୂପରେ ମନୁଷ୍ୟ ପାଖକୁ ଆସନ୍ତି । ମନୁଷ୍ୟ ତାଙ୍କୁ ଚହ୍ନିପାରେ ନାହିଁ । ଏହାହିଁ ରୂପକ ସାହିତ୍ୟରେ ଭୂତକେଳି, ନାବକେଳି ଇତ୍ୟାଦି ।

ସ୍ୱାମୀ ବିବେକାନନ୍ଦ କହିଛନ୍ତି, ତୁମେ "ଭଗବାନଙ୍କୁ ଦେଖିବାକୁ ଇଚ୍ଛା କରୁଛ, ଭଗବାନ ଦରିଦ୍ରନାରାୟଣ ରୂପରେ ତୁମ ଦୁଆରୁ ସର୍ବଦିନେ ଫେରୁଛନ୍ତି, ତାଙ୍କୁ ଚହ୍ନୁ ନାହିଁ ।"

ରାଧା କୃଷ୍ଣଙ୍କୁ ଝୁରୁଥିଲେ; କୃଷ୍ଣ ରାଧାଙ୍କୁ ଆହୁରି ବେଶି ଝୁରି ହେଉଥିଲେ । ଭଗବାନ ମନୁଷ୍ୟର ଆଧ୍ୟାତ୍ମିକ ଉନ୍ନତି ନିମିତ୍ତ ସର୍ବବେଳେ ଝୁରି ହେଉଛନ୍ତି । ସେଥିନିମିତ୍ତ ନାନା ପ୍ରକାର ଉପାୟ ଅବଲମ୍ବନ କରୁଛନ୍ତି । ମନୁଷ୍ୟ ତାହା ଜାଣିପାରୁ ନାହିଁ । ମନୁଷ୍ୟର ଆରାଧନା ଭାବ ଯେପରି କି ମା ଠାକୁରାଣୀଙ୍କଠାରେ ରାଧାମୂର୍ତ୍ତି ଧରିଥିଲା । ମା କହୁଛନ୍ତି—

"ମୋତେ ଲଭିବା ହିତରେ,
ଅନୁସରିଥାନ୍ତି କେତେ ମତରେ ଗୋ,
ବଶ ନୋହିବି କେ ତେମନ୍ତରେ, ସଜନି ଗୋ ।
ମୋ ଗତାଗତ ବାଟରେ,
ଜଗିବସିଥାନ୍ତି ସେ କପଟରେ ଗୋ,
ମାଗି ଦରଶନ ଲମ୍ପଟରେ, ସଜନି ଗୋ । ୨୯ ।"

(ଏଠାରେ ଲମ୍ପଟର ଅର୍ଥ ଜୀବାତ୍ମା ସହିତ ପରମାତ୍ମାର ମିଳନ)

ବି. ଚିନ୍ତାମଣି—ଗ୍ରନ୍ଥ ୪୮ ।

ବିଦଗ୍ଧ-ଚିନ୍ତାମଣିର ଉପରୋକ୍ତ ପଦଗୁଡିକ ଅକ୍ଷରେ ଅକ୍ଷରେ ସତ ବୋଲି ଲେଖକଙ୍କର ଦୃଢ ବିଶ୍ୱାସ ।

ପରମାତ୍ମାଙ୍କୁ ପାଇବାକୁ ହେଲେ ପାର୍ଥିବ ବନ୍ଧନରୁ ଗୋଟିଏ, ଯୋଡ଼ିଏ ବା ଅଧିକାଂଶ ଛୁଣ୍ଡାଇଦେଲ ହେବ ନାହିଁ । ସମସ୍ତ ପ୍ରକାର ବନ୍ଧନ ଛୁଣ୍ଡାଇଲେ ବା ଆତ୍ମାରୁ ସମସ୍ତ ପ୍ରକାର ମଇଳା ପୋଛି ଦେଇପାରିଲେ ଜୀବାତ୍ମା ପୂର୍ଣ୍ଣ ନିର୍ମଳ ପବିତ୍ର ଅବସ୍ଥାରେ ପରମାତ୍ମାଙ୍କ ସଙ୍ଗରେ ମିଶିଯିବ ।

ଆଠ ବରଷ ବୟସରେ ଶ୍ରୀକୃଷ୍ଣ ଗୋପ ବୃନ୍ଦାବନ ଛାଡ଼ି ମଥୁରାକୁ ଯାଇ ସେଠାରୁ ଆଉ ଫେରି ନ ଥିଲେ । ବସ୍ତ୍ରହରଣ ଗୋପୀମାନଙ୍କ ସମ୍ମତ ବହୁ ପୂର୍ବରୁ ହୋଇଥିବ । ତେବେ ସେତେବେଳେ ତାଙ୍କ ବୟସ ୫।୬ ବର୍ଷ ହେବାର ସମ୍ଭବ ।

ଅଭିମନ୍ୟୁ 'ବିଦଗ୍ଧ-ଚିନ୍ତାମଣି'ରେ ଏ ସମ୍ବନ୍ଧରେ ଲେଖିଛନ୍ତି :--

"ନବ ଅନୁରାଗ ଧନ ଅର୍ଜନ
ନେଇ କଲେ ପରସ୍ପର ସଞ୍ଚନ
ନବରଙ୍କୁ ବଡ଼ା ହୋଇଗଲେ ଗୋପୀ କୃଷ୍ଣପାଦେ ରଖି ମନ ସେ
—୨୦ । ୧୮ ଛାନ୍ଦ

ଏହି ୫।୬ ବର୍ଷ ବୟସରେ କ'ଣ ହୋଇଥିବ, ପାଠକ ଅନୁମାନ କରିପାରିବେ ।

"ରାଧା ନୁହ ତୁମେ, ରୂପ ଆରାଧନା
ଧରି ପାଇଥିଲ କେତେ କଦର୍ଥନା ।"

ସାଧୁ T. L. Vaswaniଙ୍କର ନିମ୍ନଲିଖିତ କବିତାଟି ପ୍ରଣିଧାନଯୋଗ୍ୟ :—

'Blessed, thrice blessed
Were Gokul and Brindaban
And the simple guileless Gopees
Whose garments He stole in love,
Steal Thou in Thine mercy
My garments tinted, tainted, soiled

My gaudy garments of power and pride
Steal Thou, O Lord of love.
And never give them back to me
But tear them to the shreds
Or burn them in the sacred flame
Of thy all consuming love
And I shall at thy Lotus feet
Stripped, self emptied, naked sit
To see the naked Truth of Love
The Love that steals and sanctifies."

------

# ଶ୍ରୀକୃଷ୍ଣ କଉଣ ଅବତାର ?

ଶ୍ରୀକୃଷ୍ଣଙ୍କୁ ଅବତାର କହିଲେ କଥାଟା ଠିକ୍ ହେବ ନାହିଁ । ପୁଣ୍ୟଶ୍ଳୋକ ଜୟଦେବ ଗୋସ୍ୱାମୀ ମଧ୍ୟ ତାଙ୍କୁ ଅବତାର ମଧ୍ୟରେ ଗ୍ରହଣ କରି ନାହାନ୍ତି । ଅଷ୍ଟମ ଅବତାର ସ୍ୱରୂପ ସେ ତାଙ୍କ ଭାଇ ବଳରାମଙ୍କୁ ବର୍ଣ୍ଣନା କରିଅଛନ୍ତି । ଶ୍ରୀକୃଷ୍ଣଙ୍କ ସେଥିରେ ସ୍ଥାନ ନାହିଁ । କାହିଁକି ?

ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ । ସେ ଅବତାରୀ ବା ଅବତାରମାନଙ୍କୁ ଜନ୍ମ ଦିଅନ୍ତି । ଅବତାରମାନେ ମହାମାନବ; କେବଳ ସାଧାରଣ ମନୁଷ୍ୟଠାରୁ ବହୁତ ଅଧିକ ଶକ୍ତି ନେଇ ସେମାନେ ଯୁଗ ପରିବର୍ତ୍ତନ କରିବା ନିମିତ୍ତ ଜନ୍ମ ହୋଇଥାନ୍ତି । ଶ୍ରୀକୃଷ୍ଣ ଜନ୍ମ ହେଲାମାତ୍ରକେ ନିଜର ଅସାଧାରଣତ୍ୱ ଦେଖାଇ ବାପାଙ୍କୁ କହିଲେ ତାଙ୍କୁ ଅନ୍ୟତ୍ର ନେଇଯିବା ପାଇଁ । ତାଙ୍କ ଆଦେଶରେ ବଢ଼ିଲା ନଈ ଶୁଖି ଯାଇ ବସୁଦେବଙ୍କୁ ବାଟ ଛାଡ଼ିଦେଲା । ଅନ୍ୟ ଅବତାରମାନଙ୍କରେ ଏହିପରି ଅସାଧାରଣତା କମ୍। ନିଜର ଐଶ୍ୱରିକଶକ୍ତି ବିଷୟ ଅବତାରମାନେ ଜାଣିପାରି ନ ଥିଲେ । ଶ୍ରୀକୃଷ୍ଣ ନିଜ ମା'ଙ୍କୁ ମଧ୍ୟ ବିଶ୍ୱରୂପ ଦେଖାଇଥିଲେ ।

ଦ୍ୱାପର ଯୁଗର ଶେଷ ଓ କଳିଯୁଗର ଆରମ୍ଭରେ ସେ ଜନ୍ମ ହୋଇଥିଲେ । ପୂର୍ବବର୍ତ୍ତୀ ତିନି ଯୁଗ ଅପେକ୍ଷା କଳିଯୁଗରେ ମନୁଷ୍ୟର ଶକ୍ତି ବହୁତ କ୍ଷୀଣ । ଅନ୍ୟ ଯୁଗର ଲୋକମାନଙ୍କର ଧର୍ମପ୍ରାଣ ହେବା ନିମିତ୍ତ ଅଧିକତର ଶକ୍ତି ଥିଲା; ତେଣୁ କଳିର ପୂର୍ବବର୍ତ୍ତୀ ଯୁଗମାନଙ୍କରେ ଅବତାରରୂପୀ ମହାମାନବ ଜନ୍ମ ହେଉଥିଲେ; କିନ୍ତୁ କଳିରେ ପାପର ମାତ୍ରା ଅଧିକ ହେତୁ ସ୍ୱୟଂ ଭଗବାନଙ୍କୁ ଅବତାରଙ୍କ ସହିତ ଜନ୍ମ ହେବାକୁ ପଡ଼ିଲା । 'ଗୀତା'ର ୪ର୍ଥ ଅଧ୍ୟାୟର ୭ମ ଓ ୮ମ ଶ୍ଳୋକ ପ୍ରାୟ ଅଧିକାଂଶ ଜାଣନ୍ତି । ତାହାର ଓଡ଼ିଆ ଅନୁବାଦ ଏହିପରି :—

ଯେକାଳେ ଧର୍ମ ହ୍ରାସ ପାଏ,    ଅଧର୍ମ କ୍ରମେ ବଢୁଥାଏ,
ସେକାଳେ ବହି ଅବତାର    ବିନାଶେ ଅବନୀର ଭାର ।୭।
ସାଧୁଙ୍କୁ କରିବାକୁ ତ୍ରାଣ,    ପାପୀଙ୍କ ନାଶିବାକୁ ପ୍ରାଣ,
ଯୁଗେ ଯୁଗେ ମୁଁ ରୂପ ବହି    ଧର୍ମର ସ୍ଥାପନ କରଇ । ୮ ।

ଉପରୋକ୍ତ ଭାବ ନିମ୍ନଲିଖିତ ଭାବରେ ବିଶ୍ଳେଷିତ ହୋଇଅଛି ।

ଧର୍ମର କରିବା ସାହାଯ୍ୟ    ମୋହର ଅବତାର କାର୍ଯ୍ୟ,
ନୋହିଲେ ବୃଥା ଇଚ୍ଛା ପାଇଁ    ଜନ୍ମଗ୍ରହଣ କରେ ନାହିଁ ।
ଜନ୍ମ ବିଷୟେ ଧନଞ୍ଜୟ !    ନାହିଁ ମୋ କାଳର ନିଶ୍ଚୟ ।
ସଂହାର କରଇ ମୁଁ କାର୍ଯ୍ୟ    ମ୍ଲେଚ୍ଛ ଅନ୍ତ୍ୟଜ ଦେବରାଜ୍ୟ ।
ଧର୍ମର ତାରତମ୍ୟ ଭାବେ    ଜନ୍ମ ଲଭଇ ସର୍ବଠାବେ ।
କାହିଁ ମୋ ଶକ୍ତି କରେ ଦାନ,    କାହିଁ ମୁଁ ହୁଏ ବିଦ୍ୟମାନ ।
ସ୍ୱତଃ ପରତଃ ବେନି ମତେ    ରୂପ ବହଇ ଏ ଜଗତେ ।
ସ୍ୱତଃ ସ୍ୱରୂପ ଅଟେ ମୋର    ପରତଃ ସ୍ୱରୂପ ତୋହର ।

× × × × ×

ରାବଣ କଂସାଦିର ପ୍ରାଣ ବଧି ସାଧୁଙ୍କୁ କଲି ତ୍ରାଣ ।"*

ଯୋଗଯାଗ ପ୍ରଭୃତିର ଆଚରଣଦ୍ୱାରା କଳିଗ୍ରସ୍ତ ମାନବର ମୁକ୍ତି ପାଇବା ଦୁଃସାଧ୍ୟ । ନିଜର କର୍ତ୍ତବ୍ୟ ସମ୍ପୂର୍ଣ୍ଣ ଭାବରେ କରି ଭଗବାନଙ୍କ-ଠାରେ ଭକ୍ତି ରଖିଲେ ମୁକ୍ତି ବା ସିଦ୍ଧି କିପରି ମିଳେ, ଦେଖାଇବା ପାଇଁ ତାଙ୍କୁ ମନୁଷ୍ୟ ଦେହ ଧରିବାକୁ ପଡ଼ିଥିଲା । ଭକ୍ତ ସ୍ୱଦେହରେ ବ୍ରହ୍ମ ବା ଭଗବାନଙ୍କ ସଂସ୍ପର୍ଶରେ କିପରି ଅଲୌକିକ ସୁଖ ଭୋଗ କରେ, ସେ ଗୋପୀମାନଙ୍କଠାରେ ଦେଖାଇ ଦେଇ ଯାଇଛନ୍ତି । ସବୁଠାରୁ ସରଳ ଭକ୍ତିମାର୍ଗ ମନୁଷ୍ୟ ନିମିତ୍ତ କିପରି ଉପଯୋଗୀ, ସେ ପ୍ରଥମେ ଲୋକମାନଙ୍କୁ ବୁଝାଇ ତାହାର ପ୍ରମାଣ ମଧ୍ୟ ଦେଇଛନ୍ତି ।

---

* ମୟୂରଭଞ୍ଜର ସ୍ୱର୍ଗୀୟା ମହାରାଣୀ ଲକ୍ଷ୍ମୀଦେବୀଙ୍କ ଉତ୍କୃଷ୍ଟ 'ଗୀତା'ର ଓଡ଼ିଆ ଅନୁବାଦ ।

ଜୀବ-ସୃଷ୍ଟିର ରାଜା ହେଉଛି ମନୁଷ୍ୟ । ମନୁଷ୍ୟ ଅତ୍ୟାଗ୍ରସ୍ତ ହୋଇ ସୃଷ୍ଟି ନଷ୍ଟ ନ କରିବ ବୋଲି ତାହାର ଇତର ଜୀବ ଓ ବୃକ୍ଷଲତା ଉପରେ ଏକା ନିର୍ଭରଶୀଳତା ଶ୍ରୀକୃଷ୍ଣ ଦେଖାଇ ଦେଇଅଛନ୍ତି । ମନୁଷ୍ୟର ବୃଦ୍ଧି ଓ ସ୍ୱାସ୍ଥ୍ୟ ନିମନ୍ତେ ଗୋପାଳନ କପରି ଅବଶ୍ୟମ୍ଭାବୀ ଓ ଅବିଚ୍ଛେଦ୍ୟ, ଆମ୍ଭେମାନେ ସଂକ୍ଷେପରେ ଲେଖିଅଛୁଁ ।* ମନୁଷ୍ୟ ନିମନ୍ତେ ତୁଳସୀର ଉପକାରିତା ରହିଅଛି । ଶ୍ରୀକୃଷ୍ଣ ପ୍ରଥମେ ଗୋମାହାତ୍ମ୍ୟ ଲୋକଙ୍କୁ ବୁଝାଇଥିଲେ; ତେଣୁ ତାଙ୍କୁ ଇନ୍ଦ୍ର ଗୋବିନ୍ଦ (Cow-expert) ନାମ ଦେଇଥିଲେ । ତୁଳସୀର ପରମ ଉପକାରିତା ତାଙ୍କଦ୍ୱାରା ପ୍ରଚାରିତ ହୋଇଥିଲା । ଜାନ୍ତବ ରାଜ୍ୟର ପ୍ରତୀକ ସ୍ୱରୂପ ଗୋରୁକୁ ଉଦ୍ଭିଦ ରାଜ୍ୟର ତୁଳସୀକୁ ଶ୍ରୀକୃଷ୍ଣ ବାଛିଥିଲେ ମନୁଷ୍ୟ ସହିତ ସେମାନଙ୍କର ଯୋଗସୂତ୍ର (Liaison) ସ୍ଥାପନ କରିବାକୁ ।

କଳିଯୁଗର ଜଟିଳ ପରିସ୍ଥିତିରେ ମନୁଷ୍ୟ ସର୍ବକ୍ଷେତ୍ରରେ କିପରି ଚଳିବ, ତାହାର ଜୀବନ୍ତ ଆଦର୍ଶ ସେ ଦେଖାଇ ଦେଇଯାଇଛନ୍ତି । ମହାଭାରତର ଯେଉଁ ଯେଉଁ ଘଟଣା ସହିତ ଶ୍ରୀକୃଷ୍ଣଙ୍କର ସମ୍ପର୍କ ଅଛି, ସେ ସମସ୍ତ ମନୁଷ୍ୟଜୀବନ ନିମନ୍ତେ ଗୋଟିଏ ଲେଖାଏଁ ଆଦର୍ଶ । ସେ ସମସ୍ତଙ୍କୁ ଶ୍ରୀକୃଷ୍ଣ ଠୁଳ କରିଅଛନ୍ତି ଗୀତାରେ । ବିଶ୍ୱସାହିତ୍ୟରେ ଗୀତା ଯେ ଅତୁଳନୀୟ, ଏ କଥା ବର୍ତ୍ତମାନ ସର୍ବବାଦସମ୍ମତ । ନିରପେକ୍ଷ ସନ୍ନ୍ୟାସୀ ବିବେକାନନ୍ଦ ସ୍ୱାମୀ ଗୀତା ଓ ଶ୍ରୀକୃଷ୍ଣଙ୍କ ସମ୍ବନ୍ଧରେ କହିଅଛନ୍ତି—

"As a character, Buddha was the greatest world has ever seen, next to him, Christ, but the teachings of Krishna, as taught by Geeta, are the grandest the world has ever known, He, who wrote that wonderful poem, was one of those rare souls whose lives send a wave of regeneration through the world. The human race will never again see such a brain as his who wrote the Geeta."

—*Inspired Talks*

---

* ଗୋପାଳନର ଉପକାରିତା ସମ୍ବନ୍ଧରେ ବିସ୍ତୃତ ଆଲୋଚନା ଲେଖକଙ୍କର "ବନ୍ଦେ ମାତରମ୍" ପୁସ୍ତକରେ ଅଛି ।

ଅର୍ଥାତ୍ ପୃଥିବୀରେ ଯେତେ ମହଚ୍ଚରିତ ଲୋକ ଜନ୍ମ ହୋଇଅଛନ୍ତି, ସେମାନଙ୍କ ମଧ୍ୟରେ ବୁଦ୍ଧ ହେଉଅଛନ୍ତି ସର୍ବଶ୍ରେଷ୍ଠ, ଯିଶୁଖ୍ରୀଷ୍ଟଙ୍କ ସ୍ଥାନ ତାଙ୍କ ପରେ; କିନ୍ତୁ ଗୀତା ମାଧ୍ୟମରେ ଶ୍ରୀକୃଷ୍ଣ ଯେଉଁ ଶିକ୍ଷା ପ୍ରଚାର କରିଅଛନ୍ତି, ତାହା ହେଉଛି ସର୍ବୋତ୍କୃଷ୍ଟ ଏବଂ ଅତୁଳନୀୟ । ଗୀତା ରଚୟିତାଙ୍କ ପରି ମହାତ୍ମା ବିରଳ । ଏପରି ମହାତ୍ମା-ମାନଙ୍କର ଆବିର୍ଭାବରେ ବିଶ୍ୱବ୍ୟାପୀ ସଞ୍ଜୀବନୀ-ତରଙ୍ଗ ଉଚ୍ଛୁଳିଉଠେ । ମନୁଷ୍ୟସମାଜ କେବେହେଲେ ସେପରି ପ୍ରଭାବ ଆଉ ପାଇବ ନାହିଁ ।



# ହିନ୍ଦୁର ବିଭିନ୍ନ ଧର୍ମ ସଂପ୍ରଦାୟ ଓ ଈଶ୍ୱର ପ୍ରାପ୍ତିର ବିଭିନ୍ନ ପନ୍ଥା, ବୈଷ୍ଣବ ମତ (୧)

( ଶ୍ରୀ ଚୈତନ୍ୟ ଚରିତାମୃତ ଅବଲମ୍ବନେ )

ଶ୍ରୀ ଚୈତନ୍ୟ ମହାପ୍ରଭୁ ପୁରୀ ଛାଡ଼ି ଦାକ୍ଷିଣାତ୍ୟ-ତୀର୍ଥ ଭ୍ରମଣ ବାଟରେ ଗୋଦାବରୀକୂଳସ୍ଥ ରାଜମହେନ୍ଦ୍ରୀ ନଗରରେ ଦଶ ଦିନ ରହିଥିଲେ । ରାଜମହେନ୍ଦ୍ରୀ ସେତେବେଳେ ଓଡ଼ିଶାର ଥିଲା ଓ ପ୍ରତାପରୁଦ୍ର ଦେବଙ୍କ ମନ୍ତ୍ରୀ ରାମାନନ୍ଦ ପଟ୍ଟନାୟକ ( ରାୟ ରାମାନନ୍ଦ ) କର୍ଣ୍ଣାଟର ଗଭର୍ଣ୍ଣର ବା ଶାସନକର୍ତ୍ତା ଥିଲେ । ଉଭୟଙ୍କର ସେଠାରେ ଭେଟ ହେଲା । ଉଭୟେ ଭକ୍ତ ଓ ପଣ୍ଡିତ; ତେଣୁ ଉଭୟଙ୍କର ସେଠାରେ ଦଶ ରାତ୍ର କଟିଥିଲା କୃଷ୍ଣ କଥା ଆଲୋଚନାରେ । ତାହାର ବିବରଣୀ 'ଶ୍ରୀ ଚୈତନ୍ୟ ଚରିତାମୃତ'ରେ ଅଛି । ଅତି ସଂକ୍ଷେପରେ ତାହା ଉଦ୍ଧାର କରାଗଲା:—

ଶ୍ରୀ ଚୈତନ୍ୟ ମହାପ୍ରଭୁ ରାମାନନ୍ଦଙ୍କୁ ପଚାରିଲେ, "କେଉଁ ବସ୍ତୁ ଲାଭକରିବା ନିମିତ୍ତ ମନୁଷ୍ୟ ଚେଷ୍ଟା କରିବା ଉଚିତ ?" ରାମାନନ୍ଦ ବିଷ୍ଣୁ ପୁରାଣର ଏକ ଶ୍ଳୋକ ଉଦ୍ଧାର କରି ଉତ୍ତର ଦେଲେ, "ବର୍ଣ୍ଣାଶ୍ରମ ଧର୍ମ ପାଳନ କଲେ ଭଗବାନଙ୍କର ଆରାଧନା ହୁଏ, ତାଙ୍କୁ ତୁଷ୍ଟ କରିବାର ଅନ୍ୟ ଉପାୟ ନାହିଁ ।" ଯେଉଁପରି ଆଚରଣ କଲେ ସମାଜର ମଙ୍ଗଳ ହୁଏ ଏବଂ ସମସ୍ତେ ଶାନ୍ତିମୟ ଜୀବନଯାପନ କରି ଈଶ୍ୱରାରାଧନାପୂର୍ବକ ଈଶ୍ୱର ଲାଭ କରିପାରନ୍ତି, ତାହା ହିଁ ବର୍ଣ୍ଣାଶ୍ରମ ଧର୍ମ । )

ଶ୍ରୀ ଚୈତନ୍ୟ ମହାପ୍ରଭୁ ଏହା ଶୁଣି କହିଲେ, "ତୁମ୍ଭେ ଯାହା କହିଲ ତାହା ବାହ୍ୟ ବା ସାଧାରଣ କଥା । ଧର୍ମଜୀବନର ଆଉ କିଛି ଗୂଢ଼ କଥା କହ ।" ରାମାନନ୍ଦ କହିଲେ, "ଜୀବନରେ ଯାହା କିଛି କରାଯାଏ, ସେ ସମସ୍ତ ଭଗବାନଙ୍କୁ ଅର୍ପଣ କରିବା ଉତ୍କୃଷ୍ଟ ଧର୍ମ ।"

ଧର୍ମସାଧନ ସମୟରେ ମନୁଷ୍ୟ ଏପରି ଏକ ଅବସ୍ଥାରେ ପହଞ୍ଚେ ଯେ ସେତେବେଳେ ସେ ସର୍ବଦା ଭଗବାନଙ୍କୁ ଚିନ୍ତାକରେ ଓ ଭଗବାନଙ୍କୁ ନିବେଦନ ନ କରି କିଛି କରିପାରେ ନାହିଁ । ସାଧାରଣ ମନୁଷ୍ୟ ପକ୍ଷରେ ଏହା ଅତି ଉଚ୍ଚ ଅବସ୍ଥା ହେଲେହେଁ ପରମ ଭକ୍ତ ଶ୍ରୀ ଚୈତନ୍ୟଙ୍କୁ ଏହା ସେତେ ଭଲ ଲାଗିଲା ନାହିଁ । ତେଣୁ ସେ କହିଲେ:—

"ଏହୋ ବାହ୍ୟକଥା, ଆଉ କିଛି ଗୂଢ଼ କଥା ବଲ ।"

ରାମାନନ୍ଦ କହିଲେ, "ଯେ ଭକ୍ତିପ୍ରଣୋଦିତ ହୋଇ ନିଜ ବର୍ଣ୍ଣାଶ୍ରମ ଧର୍ମ ଛାଡିଦିଏ ଏବଂ ଭଗବାନଙ୍କୁ ଏକମାତ୍ର ଆଶ୍ରା ବୋଲି ଧରି ଜୀବନ-ଯାପନ କରେ, ସେ ହେଉଛି ଉତ୍କୃଷ୍ଟ ଧାର୍ମିକ ।"

ସନ୍ନ୍ୟାସୀ ସଂସାରରେ ରହନ୍ତି ନାହିଁ, ସଂସାରର କର୍ମକୁ ଅସ୍ଥାୟୀ ବୋଲି ଛାଡ଼ିଦିଅନ୍ତି । ଭଗବାନ କେବଳ ସ୍ଥାୟୀ; ତେଣୁ ତାଙ୍କୁ ଆଶ୍ରାକରି ଜୀବନ ଧାରଣ କରନ୍ତି । ଏହିପରି ତ୍ୟାଗମୟ ଜୀବନ ଧର୍ମସାଧନରେ ଉଚ୍ଚ ଅବସ୍ଥାସୂଚକ ହେଲେହେଁ ଶ୍ରୀ ଚୈତନ୍ୟ ମହାପ୍ରଭୁ ଏଥିରେ ସନ୍ତୁଷ୍ଟ ହୋଇ-ପାରିଲେ ନାହିଁ; କହିଲେ, "ଏହୋ ବାହ୍ୟ, ଆଗେ କହ ଆର ।"

ରାମାନନ୍ଦ ଉତ୍ତର ଦେଲେ, "ଜ୍ଞାନ-ମିଶ୍ରା ଭକ୍ତି ଉତ୍କୃଷ୍ଟ ଧର୍ମ । ଯେଉଁ ଲୋକ ନିଜ ଜ୍ଞାନବଳରେ ସଂସାରର ଅନିତ୍ୟତା ବୁଝି ଇନ୍ଦ୍ରିୟ-ସଂଯମଦ୍ୱାରା ଭଗବାନଙ୍କୁ ସ୍ମରଣ କରେ, ସେ ଧାର୍ମିକ ।" ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କୁ ଏହା ମଧ୍ୟ ଭଲ ଲାଗିଲା ନାହିଁ ।

ଭଗବାନ ତ ମନୁଷ୍ୟର ସସୀମ ଜ୍ଞାନ ଓ ବିଚାରର ଅଗମ୍ୟ । ତାଙ୍କୁ ଏପରି ଭାବରେ ପାଇବା ପାଇଁ ଚେଷ୍ଟାକରିବା ବୃଥା; ତେଣୁ କହିଲେ, "ଏହୋ ବାହ୍ୟ, ଆଗେ କହ ଆର ।"

ରାମାନନ୍ଦ ଉତ୍ତର ଦେଲେ, "ଜ୍ଞାନଶୂନ୍ୟ ଭକ୍ତି ଅତି ଉତ୍କୃଷ୍ଟ ଅବସ୍ଥା ।" ଶ୍ରୀମଦ୍ ଭାଗବତରେ ଅଛି—

"ହେ ଭଗବାନ, ତୁମ୍ଭଙ୍କୁ ପାଇବା କଠିନ, କିନ୍ତୁ ଯେଉଁମାନେ ସାଧୁମାନଙ୍କଠାରୁ ତୁମ କଥା ଶୁଣି କାୟମନୋବାକ୍ୟରେ ତୁମକୁ ପୂଜା କରନ୍ତି, ସର୍ବଦା ତୁମକୁ ପ୍ରଣାମ କରନ୍ତି ଏବଂ ଜ୍ଞାନଦ୍ୱାରା ତୁମକୁ ପାଇବାର ଚେଷ୍ଟାକୁ ଛାଡ଼ନ୍ତି, ସେମାନେ ତୁମକୁ ନିଶ୍ଚୟ ପାଆନ୍ତି ।

ଏହା ଶୁଣି ମହାପ୍ରଭୁ କିଛିଏ ଆଶ୍ୱସ୍ତ ହେଲେ । କର୍ମ, ସନ୍ନ୍ୟାସ ଜ୍ଞାନ ତାଙ୍କୁ ଭଲ ଲାଗୁ ନ ଥିଲା । ଭକ୍ତିଦ୍ୱାରା ଭଗବାନ ମିଳିପାରିବେ ଏହା ସେ ଗ୍ରହଣ କଲେ ସତ, କିନ୍ତୁ ଭକ୍ତି ତ ସାଧାରଣ କଥା; କିନ୍ତୁ ଈଶ୍ୱରପ୍ରାପ୍ତି ନିମିତ୍ତ ପ୍ରଗାଢ଼ ଅନୁରାଗ ଆବଶ୍ୟକ, ଏହା ସ୍ପଷ୍ଟକରି ବୁଝାଇବାକୁ ସେ ରାମାନନ୍ଦଙ୍କୁ ଅନୁରୋଧ କଲେ ଏବଂ କହିଲେ, "ଏହୋ ହୟ, ଆଗେ କହ ଆର ।"

ବର୍ତ୍ତମାନ ସେ ପ୍ରେମମିଶ୍ର ଭକ୍ତିକଥା ଉଠାଇଲେ । ପ୍ରେମ ନ ଥିଲେ ଈଶ୍ୱରପୂଜାର କୌଣସି ଫଳ ନାହିଁ; ପ୍ରେମ ଥିଲେ ପୂଜା ସାର୍ଥକ ହୁଏ, ଈଶ୍ୱର ତାହା ଗ୍ରହଣ କରନ୍ତି । ଏହି ପ୍ରେମ ସେତେବେଳେ ଏତେ ପ୍ରଗାଢ଼ ହୁଏ ଯେ ଈଶ୍ୱରଙ୍କୁ ପାଇବାକୁ ମନ ବ୍ୟାକୁଳ ହୁଏ । ସେତେବେଳେ ମନୁଷ୍ୟ ଭଗବତ୍ ପ୍ରେମ ଆସ୍ୱାଦନ ଆରମ୍ଭ କରେ ।

ଏହି ପ୍ରେମ ବିଷୟରେ ବିସ୍ତାରିତ ବର୍ଣ୍ଣନା ଦେବା ନିମିତ୍ତ ଅନୁରୁଦ୍ଧ ହୋଇ ରାମାନନ୍ଦ ତାହାର ବିଶ୍ଳେଷଣ ଆରମ୍ଭ କଲେ— ପ୍ରେମ ପାଞ୍ଚ ପ୍ରକାର (୧) ଶାନ୍ତ, (୨) ଦାସ୍ୟ, (୩) ସଖ୍ୟ, (୪) ବାତ୍ସଲ୍ୟ ଓ (୫) ମଧୁର ।

(୧) ଶାନ୍ତ ପ୍ରେମ ସାଧାରଣ—ଏକର ଅନ୍ୟ ପ୍ରତି ସାଧାରଣ ଅନୁରାଗ ବା ସ୍ନେହ ସଦୃଶ; (୨) ଦାସ୍ୟ ପ୍ରେମ, ଦାସର ପ୍ରଭୁ ନିମନ୍ତେ ଯେଉଁ ଭକ୍ତି—ହନୁମାନ ଏହାର ଉତ୍କୃଷ୍ଟ ଉଦାହରଣ; (୩) ସଖ୍ୟ ପ୍ରେମ, ସାଙ୍ଗର ସାଙ୍ଗଠାରେ ଯେଉଁ ଅନୁରାଗ—ମଧୁମଙ୍ଗଳ, ସୁବଳ ଓ ସୁଦାମ ପ୍ରଭୃତିଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଏହିପରି ଅନୁରାଗ ଥିଲା; (୪) ବାତ୍ସଲ୍ୟ ପ୍ରେମ, ପିତା-ମାତାଙ୍କର ପୁତ୍ରକନ୍ୟା ପ୍ରତି ଯେଉଁ ଅନୁରାଗ ତାହା—ଉଦାହରଣ ଯଶୋଦା ଓ କୌଶଲ୍ୟା; (୫) ମଧୁର ପ୍ରେମ, ସ୍ତ୍ରୀ ସ୍ୱାମୀଙ୍କୁ ଯେପରି ଭଲ ପାଏ ତାହା—ଉଦାହରଣ ସୀତା, ଲକ୍ଷ୍ମୀ, ରୁକ୍ମିଣୀ ପ୍ରଭୃତି ।

ଏହି ପାଞ୍ଚ ପ୍ରକାର ପ୍ରେମ ମଧ୍ୟରେ ପ୍ରତ୍ୟେକ ପ୍ରେମ ତାହାର ପୂର୍ବୋକ୍ତ ପ୍ରେମଠାରୁ ଗାଢ଼ତର ।

"ଗୁଣାଧିକ୍ୟେ ସ୍ୱାଦାଧିକ୍ୟେ ବାଢ଼େ ପ୍ରତିରସେ ।
ଶାନ୍ତଦାସ୍ୟ ସଖ୍ୟ ବାତ୍ସଲ୍ୟେର ଗୁଣ ମଧୁରତେ ବୈସେ ।"

—ଶ୍ରୀ ଶ୍ରୀ ଚୈତନ୍ୟଚରିତାମୃତ ।

ଭଗବାନଙ୍କୁ ଯେ ଯେମିତି ଭଜନ କରେ, ସେ ସେମିତି ତାଙ୍କୁ ପାଏ—ଯେ ପ୍ରଭୁ ରୂପେ ସେବା କରେ, ସେ ତାଙ୍କୁ ପ୍ରଭୁ ରୂପରେ ଦେଖା-ଦିଅନ୍ତି; ଯେ ସଖା ରୂପରେ ଭଜନ କରେ, ପ୍ରଭୁ ତାହାର ସଖା ହୁଅନ୍ତି; ସ୍ୱାମୀ ରୂପରେ ଭଲ ପାଇଲେ ସେ ତାହାର ସ୍ୱାମୀ ହୁଅନ୍ତି । ପ୍ରଭୁ ଅପେକ୍ଷା ସଖା ରୂପେ ପାଇଲେ ସମ୍ବନ୍ଧ ଅଧିକ ଘନିଷ୍ଠ ହୁଏ । ସନ୍ତାନ ରୂପେ ପାଇଲେ ତାହାଠାରୁ ଅଧିକ ଓ ସ୍ୱାମୀ ରୂପେ ପାଇଲେ ସମ୍ବନ୍ଧ ସବୁଠାରୁ ଅଧିକ ଘନିଷ୍ଠ ହୁଏ ।

"କୃଷ୍ଣ ପ୍ରାପ୍ତିର ଉପାୟ ବହୁବିଧ ହୟ,
କୃଷ୍ଣପ୍ରାପ୍ତିର ତାରତମ୍ୟ ବହୁତ ଅଛୟ ।"

—ଶ୍ରୀ ଶ୍ରୀ ଚୈତନ୍ୟଚରିତାମୃତ ।

କି ଉପାୟରେ ଭଗବାନଙ୍କୁ ସେପରି ଭଜନ କରାଯାଇପାରିବ ପଚାରିବାରୁ ରାମାନନ୍ଦ କହିଲେ, "ନିଜକୁ ନିଜକୁ ଜଣେ ଗୋପୀ ବୋଲି ମନେ କରିନେବେ ଏବଂ ଦିବାନିଶି ରାଧାକୃଷ୍ଣଙ୍କ ବିହାର ଚିନ୍ତା କରିବେ । ଏହା ହେଉଛି ଭଗବାନଙ୍କୁ ପାଇବାର ଶ୍ରେଷ୍ଠ ଉପାୟ ।"

"ଅତଏବ ଗୋପୀଭାବ କରି ଅଙ୍ଗୀକାର
ରାତ୍ରି ଦିନେ ଚିନ୍ତେ ରାଧା କୃଷ୍ଣେର ବିହାର ।
ବ୍ରଜ ଲୋକେର କୋନଭାବ ଲୟେ ଯେଇ ଭଜେ
ଭାବଯୋଗ୍ୟ ଦେହ ପାଞା କୃଷ୍ଣେ ପାୟ ବ୍ରଜେ ।"

— ଶ୍ରୀ ଶ୍ରୀ ଚୈତନ୍ୟଚରିତାମୃତ ।

ଏଠାରେ ମନେରଖିବାକୁ ହେବ ଯେ ଗୋପୀମାନେ ନିଜେ କୃଷ୍ଣଙ୍କ ସହିତ ମିଳିତ ହେବାକୁ ସେତେ ଇଚ୍ଛା କରୁ ନ ଥିଲେ, ରାଧାଙ୍କୁ କୃଷ୍ଣଙ୍କ ସହିତ ମିଳାଇପାରିଲେ ସେମାନେ ସ୍ୱତଃ ପରମାନନ୍ଦ ଭୋଗୁଥିଲେ । ଏଣେ ରାଧା ନାନା ଉପାୟରେ ଗୋପୀମାନଙ୍କୁ କୃଷ୍ଣଙ୍କ ସହିତ ମିଳାଇବାକୁ ଯତ୍ନ-କରି ପୁଲକିତ ହେଉଥିଲେ ।

●

# ହିନ୍ଦୁର ବିଭିନ୍ନ ଧର୍ମ ସମ୍ପ୍ରଦାୟ ଓ ଈଶ୍ୱରପ୍ରାପ୍ତିର ବିଭିନ୍ନ ପନ୍ଥା (୨)

ଆମ୍ଭେମାନେ ସମସ୍ତେ ମନୁଷ୍ୟ, ଏହା ବାହାରେ ସମାନ; କିନ୍ତୁ ଭିତରେ "ମନୁଷ୍ୟ ଗୋଟିକୁ ପ୍ରକୃତି ଗୋଟିଏ ।" ରୁଚି ବିଭିନ୍ନ; ପାରିପାର୍ଶ୍ୱିକ ପରିସ୍ଥିତି ବିଭିନ୍ନ । ଏହି ହେତୁରୁ ସମସ୍ତଙ୍କୁ ଗୋଟାଏ ନିର୍ଦ୍ଦିଷ୍ଟ କଥା କିମ୍ବା ପନ୍ଥା ଭଲ ଲାଗେ ନାହିଁ । ଈଶ୍ୱର ଉପାସନା ନିମିତ୍ତ ହିନ୍ଦୁଧର୍ମ କେବଳ ବିଭିନ୍ନ ରୁଚି ଅନୁସାରେ ବିଭିନ୍ନ ପନ୍ଥା ଦେଖାଇ ଦେଇଅଛି । ଯେ ଭଗବାନଙ୍କୁ ମା ପରି ଡାକିବାକୁ ଭଲ ପାଉଛି, ସେ କାଳୀ କିମ୍ବା ଦୁର୍ଗାଙ୍କୁ ପୂଜୁ । ଯେ ବାପ ବୋଲି ଭାବୁଛି, ସେ ମହାଦେବଙ୍କ ଭକ୍ତ ହେଉଅଛି । ଯେ ରାଜା ବୋଲି ତାଙ୍କୁ ଦେଖୁଛି, ସେ ରାମଚନ୍ଦ୍ରଙ୍କଠାରେ ତାହାର ଆଶା ପୂରଣ କରୁଛି । ଯେ ନିଜର ମନମଧ୍ୟରେ ତାହାଙ୍କୁ ଏକାନ୍ତ ଭାବରେ ପାଇବାକୁ ଇଚ୍ଛା କରୁଛି, ସେ ମନ ସ୍ଥିରକରି ଯୋଗମାର୍ଗ ଧରୁଛି ଏବଂ ଯେ ପରମ ଜ୍ଞାନୀ, ସେ ଭଗବାନଙ୍କର ନିରାକାର ରୂପ ଚିନ୍ତାକରି ସନ୍ତୋଷ ପାଉଛି ।

ଭଗବାନ କିଅଣ, ଏପର୍ଯ୍ୟନ୍ତ କେହି ସଠିକ ଜାଣି ନାହାନ୍ତି । ହିନ୍ଦୁଶାସ୍ତ୍ର ଅନୁସାରେ ବ୍ରହ୍ମା ଶଙ୍କର ତ ଜାଣି ନାହାନ୍ତି, କ୍ଷୁଦ୍ରାଦପି କ୍ଷୁଦ୍ର ମନୁଷ୍ୟ କଥା ଛାଡ଼ । ତେବେ ସବୁ ଧର୍ମର ଲୋକେ ଜାଣନ୍ତି ଯେ ଭଗବାନ ଅଦୃଷ୍ଟ ହୋଇ ଅଛନ୍ତି ଓ କୋଟି କୋଟି ଜଗତ ସୃଷ୍ଟିକରି ତାଙ୍କୁ ପାଳୁଛନ୍ତି । ତାଙ୍କର ଅଗଣିତ ସୃଷ୍ଟି ମଧ୍ୟରେ ଅସଂଖ୍ୟ ଜୀବ ଅଛନ୍ତି ଓ ସେମାନଙ୍କର ଶକ୍ତି, ଧାରଣକ୍ଷମତା ଓ ଜନ୍ମଗତ ରୁଚି ସେ କେବଳ ଜାଣନ୍ତି; କିନ୍ତୁ ହିନ୍ଦୁ ତାଙ୍କୁ କହେ ଭାବଗ୍ରାହୀ ଅର୍ଥାତ୍ ଜୀବ ତାହାର ଶକ୍ତି ଅନୁସାରେ ଯେ ଭାବରେ ତାଙ୍କୁ ଯାହା ସମର୍ପଣ କରେ, ସେ ସେ ଦ୍ରବ୍ୟ ଗ୍ରହଣ ନ କରି କି ଭାବରେ ତାହା ସମର୍ପିତ ହୋଇଅଛି, ତାହା ହିଁ ଗ୍ରହଣ କରନ୍ତି ।

ଜଣଙ୍କର ୨।୩ଟି ବିଭିନ୍ନ ବୟସର ସନ୍ତାନ ଥିଲେ । ବାପ କର୍ମକ୍ଳାନ୍ତ ହୋଇ ଖରାବେଳେ ଘରକୁ ଆସିଲେ । ସବା ବଡ଼ପୁଅ କୂଅରୁ ପାଣି କାଢ଼ିଆଣି ଗୋଡ଼ ଧୋଇଦେବାକୁ ବାହାର ଆସିଲା; ମଝିଆଁ ବ୍ୟସ୍ତ ହୋଇ ରୋଷେଇଘରକୁ ଦଉଡ଼ିଯାଇ ବାପର ଖାଇବା କଥା ବୁଝିଲା । ସବା ସାନଟି ଯାହାର ବୟସ ୨।୩ ବର୍ଷ ମାତ୍ର ଦୂରରେ ଥିଲା, ପାଖଘରୁ ଖଣ୍ଡିଏ ପଙ୍ଖା ଆଣି ବାପଠାରୁ ବହୁ ଦୂରରେ ରହି ପଙ୍ଖା ଖଣ୍ଡିକ ସେଠାରେ ହଲାଇଲା । ତାର ପିଲାକିଆ ବୁଦ୍ଧିରେ ସେ ବିଶ୍ୱାସଥିଲା ଯେ କୌଣସି ସ୍ଥାନରେ ପଙ୍ଖା ହଲାଇଲେ ବାପ ଦେହରେ ପବନ ବାଜିବ । ବାପ ଏହା ଦେଖି ଭାରି ଖୁସି ହୋଇଗଲେ ଓ ଦୌଡ଼ିଯାଇ ତାକୁ କୋଳ କରି ପକାଇଲେ ।

ସାମାନ୍ୟ ମନୁଷ୍ୟ ଯେତେବେଳେ ଭାବ ଦେଖି ମୁଗ୍ଧ ହୋଇଯାଉଛି, ଭଗବାନ, ଯାହାଙ୍କର ଶକ୍ତି, ରୂପ, ଗୁଣ, ଦୟା ଆଦି ଅନନ୍ତ, ସେ କଅଣ ମନୁଷ୍ୟର କ୍ଷୁଦ୍ର ଶକ୍ତି କଥା ବୁଝୁ ନାହାନ୍ତି ! ତେଣୁ ତାଙ୍କୁ ଯେ ଯେପରି ଡାକୁଛି, ସେ ସେପରି ତା'ର କଥା ଶୁଣୁଛନ୍ତି ଓ ତା'ର ଭାବ ଗ୍ରହଣ କରୁଛନ୍ତି । 'ଗୀତା'ରେ ଭଗବାନ ଶ୍ରୀକୃଷ୍ଣ କହିଅଛନ୍ତି:—

"ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂ ସ୍ତଥୈବ ଭଜାମ୍ୟହମ୍
ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ।"

—ଗୀତା ୪।୧୧

ଅର୍ଥାତ୍

"ଯେ ମତେ ଭଜେ ଯେଉଁପରି । ମୁଁ କୃପାକରେ ସେହିପରି ।।
ଜଗତେ ଯେତେ ଆରାଧନା । ସେ ସବୁ ମୋର ଉପାସନା ।।
ତାହାଙ୍କ ଇଚ୍ଛା ଗୁଣେ ଫଳ । ଲଭନ୍ତି ମୋଠାରୁ ସକଳ ।।"

ହିନ୍ଦୁ ତେଣୁ ଅନ୍ୟ ଧର୍ମକୁ ନିନ୍ଦା କରେ ନାହିଁ ଓ ଅନ୍ୟ ଧର୍ମର ଲୋକେ ଯେପରି ତାଙ୍କ ଧର୍ମକୁ ଅନ୍ୟକୁ ଟାଣିବାକୁ ବ୍ୟଗ୍ର, ହିନ୍ଦୁ ସେପରି ନୁହେଁ ।

ଅନ୍ୟ ଧର୍ମର ଲୋକେ କହନ୍ତି, କେବଳ ତାଙ୍କର ଧର୍ମ ଅନୁସରଣ ନ କଲେ ମୁକ୍ତି ମିଳିପାରିବ ନାହିଁ; 'ହିନ୍ଦୁ ଏ କଥାରେ କେବେହେଲେ ବିଶ୍ୱାସ କରେ ନାହିଁ ।

(୧ମ ଭାଗର ୧୬୫ ଓ ୨୦୫ ପୃଷ୍ଠାରେ ବିବେକାନନ୍ଦଙ୍କର ଉକ୍ତି ଦେଖ ।)

ତେବେ ପ୍ରଶ୍ନ ହୋଇପାରେ ସବୁ ଧର୍ମ ସତ୍ୟ କିପରି ? ମୁସଲମାନମାନେ ମୃତ୍ୟୁ ପରେ ଆଲ୍ଲାଙ୍କ ପାଖରେ ସ୍ୱର୍ଗରେ ରହି ନାନା ପ୍ରକାର ସୁଖ ଭୋଗ କରନ୍ତି ଓ ବୈଷ୍ଣବମାନେ ମୃତ୍ୟୁ ପରେ ଗୋଲୋକ-ଧାମରେ ଶ୍ରୀକୃଷ୍ଣଙ୍କର ନିତ୍ୟଲୀଳା ଦର୍ଶନ କରି ଚିଦ୍ୟାନନ୍ଦ ରସପାନରେ ମତ୍ତ ହୁଅନ୍ତି । ଏହିପରି ବିଭିନ୍ନ ବିଶ୍ୱାସର ଉପଭୋଗ କିପରି ସତ୍ୟ ହୋଇପାରେ ?

ଭଗବାନ ଅନ୍ତର୍ଯ୍ୟାମୀ, ସର୍ବଶକ୍ତିମାନ । ଯାହାର ଯେପରି ବିଶ୍ୱାସ, ତାହା ଅନୁସାରେ ତାକୁ ଫଳ କିମ୍ବା ଭୋଗ ଦେବା ତାଙ୍କ ପକ୍ଷରେ ଅସମ୍ଭବ କିମ୍ବା ବିଚିତ୍ର ନୁହେଁ । 'ଗୀତା'ର ଉପରୋକ୍ତ ଶ୍ଲୋକ ତାହା ପ୍ରମାଣ କରୁଅଛି । ଶ୍ରୀ ରାମକୃଷ୍ଣ ପରମହଂସ ଦେବ ବୁଝାଇବାକୁ ଯାଇ କହିଛନ୍ତି, 'ବିଭିନ୍ନ ସନ୍ତାନର ରୁଚି ଓ ଆବଶ୍ୟକତା ଅନୁସାରେ ମା ଯେପରି ସେମାନଙ୍କ ନିମିତ୍ତ ବିଭିନ୍ନ ଖାଦ୍ୟପେୟ ବ୍ୟବସ୍ଥା କରନ୍ତି, ଭଗବାନ ସେପରି କରନ୍ତି । ହିନ୍ଦୁର ଏହା ଅନୁଭବସିଦ୍ଧ ।" ଶ୍ରୀ ରାମକୃଷ୍ଣ ଭଗବାନଙ୍କୁ ମା ପରି, ଶ୍ରୀ ଚୈତନ୍ୟ ତାଙ୍କୁ ସ୍ୱାମୀ ପରି ଆରାଧନାକରି ସିଦ୍ଧି ପାଇଥିଲେ ।

"ତାର୍ଥ୍ୟତାଭକ୍ତି"ରେ ଏହାର ବହୁତ ଉଦାହରଣ ରହିଅଛି । ହିନ୍ଦୁଶାସ୍ତ୍ରରେ ଏହାର ଶତ ଶତ ଦୃଷ୍ଟାନ୍ତ ମିଳେ ।

---

## ପରିଶିଷ୍ଟ

(୧) ନିବୃତ୍ତିରୁ ମହାଫଳ ବୁଝାଇବା ନିମିତ୍ତ ଦେବସମାଜରେ ଗୌରୀଶଙ୍କର ବା ମହାଦେବ କଳ୍ପନା, ମନୁଷ୍ୟସମାଜର ଏହି କଳ୍ପନାର ବାସ୍ତବୀକରଣ ନିମିତ୍ତ ଓ ଜୀବନ୍ତ ଭାବରେ ବୁଝାଇବା ନିମିତ୍ତ ବ୍ରାହ୍ମଣ ଜାତିର ସୃଷ୍ଟି ।

(୪୦ଶ ପୃଷ୍ଠା ଦେଖ ।

(୨) କାଳର ଅନାଦି ଅନନ୍ତତା ବା ଅସୀମତା ଓ ତନ୍ମଧ୍ୟରେ ସୃଷ୍ଟି-ସ୍ଥିତି-ପ୍ରଳୟର ପାରମ୍ପରିକତା; ତେଣୁ ସଂସାରର ଅଳୀକ ନଶ୍ୱରତା ବୁଝାଇବା ନିମିତ୍ତ କାଳୀମୂର୍ତ୍ତିର କଳ୍ପନା ।

(୩) ଗଣ ବା ସାଧାରଣ ଲୋକେ ଯେତେ ନିର୍ବୁଦ୍ଧି ଆ ହୁଅନ୍ତୁ ପଛକେ, ତାଙ୍କୁ ଅବହେଳା କରିବନାହିଁ ତେବେ ଯାଇ ତମର "ସର୍ବବିଘ୍ନବିନାଶନ" ହୋଇପାରିବ; ଏହା ବୁଝାଇବା ନିମିତ୍ତ ଗଣେଶ କଳ୍ପନା ।

(୪) କଳିଯୁଗର କ୍ଷୀଣଶକ୍ତିବିଶିଷ୍ଟ ମନୁଷ୍ୟ ପକ୍ଷରେ ଏକନିଷ୍ଠ ଧ୍ୟାନ ତପସ୍ୟାଦି ଦୁଃସାଧ୍ୟ ହେବାରୁ ସଂସାର-ଜଞ୍ଜାଳରେ ସର୍ବଦା ବ୍ୟସ୍ତରହି ସରଳ ଲୋକ ସ୍ୱହୃଦୟରେ ଭଗବାନଙ୍କଠାରେ ଭକ୍ତି ରଖିଲେ ସେ କିପରି ସନ୍ତୁଷ୍ଟ ହୁଅନ୍ତି, ତାହା ଜୀବନ୍ତ ଭାବରେ ବୁଝାଇବା ପାଇଁ ଶ୍ରୀକୃଷ୍ଣ ମନୁଷ୍ୟ ଦେହ ଗ୍ରହଣ କରି ରାଧା ପ୍ରମୁଖ ଗୋପୀମାନଙ୍କଠାରେ ଶୈଶବରେ ତାହାର ପ୍ରମାଣ ଦେଖାଇଥିଲେ । ଜୀବାତ୍ମାର ବ୍ରହ୍ମସଂସ୍ପର୍ଶ ଏପରି ଆନନ୍ଦଦାୟକ ଯେ ତାହାର ବର୍ଣ୍ଣନା ମନୁଷ୍ୟ ପକ୍ଷରେ ଅସମ୍ଭବ । "ବ୍ରହ୍ମାନନ୍ଦ ସହୋଦର" ମାନବୀୟ ରତି ଯତ୍‌କିଞ୍ଚିତ୍ ଭାବରେ ଏହାର ପ୍ରତୀକ ମାତ୍ର । ବାଲ୍ମୀକି, ଚ୍ୟବନ ପ୍ରଭୃତି ଋଷିମାନେ ଯୋଗମାର୍ଗରେ ଏହା ପାଇ ବାହ୍ୟଜ୍ଞାନଶୂନ୍ୟ ହେଉଥିଲେ, ଗୋପୀମାନେ ଭକ୍ତିର ସରଳମାର୍ଗରେ ବ୍ରହ୍ମସଂସ୍ପର୍ଶ ସ୍ୱଦେହରେ ଭୋଗ କରିଥିଲେ । ଅନ୍ୟାନ୍ୟ ଦେଶର, ଅନ୍ୟାନ୍ୟ ଧର୍ମର ଭକ୍ତମାନଙ୍କର ଅନୁଭୂତି ଅବିକଳ ଏହିପରି ଅଟେ ।

———

# ହୃଦ୍‌ର ବ୍ୟାୟାମ

ଇଂରେଜମାନଙ୍କର ସଂସ୍ପର୍ଶରେ ଆସି ଆମେ ଫୁଟବଲ, କ୍ରିକେଟ୍ ପ୍ରଭୃତି ନାନା ପ୍ରକାର ବିଦେଶୀୟ ଖେଳ ଖେଳୁଅଛୁ । ଏଗୁଡ଼ିକ ବେଶ୍ ଆଖିଦୃଷ୍ଟିଆ ଓ ଆନନ୍ଦଦାୟକ ।

ସ୍କାଉଟ ସଂଘର ପ୍ରତିଷ୍ଠାତା ଲର୍ଡ ବାଡେନ ପାଓଏଲ ଜଣେ ବିଚକ୍ଷଣ ଓ ଦୂରଦର୍ଶୀ ଇଂରେଜ ସେନାପତି ଥିଲେ । ସେ ଥରେ ଏକ ପ୍ରବନ୍ଧରେ ଲେଖିଥିଲେ ଯେ ସେ ଆଫ୍ରିକାରେ ଥିବା ସମୟରେ ତାଙ୍କର ଜଣେ କର୍ମଚାରୀ ତାଙ୍କୁ ଆସି କହିଲେ ଯେ ତାଙ୍କର ଜଣେ ସହକାରୀ କର୍ମଚାରୀ ହଠାତ୍ ଅଳ୍ପ ବୟସରେ ମରିଗଲେ । ସେନାପତି ତାଙ୍କୁ କହିଲେ ଯେ ତାଙ୍କର ଏପରି ମୃତ୍ୟୁ ହେବ ବୋଲି ସେ ଆଶା କରିଥିଲେ; ତେଣୁ ସେ କର୍ମଚାରୀ ବିସ୍ମିତ ହୋଇ ପଚାରିଲେ, "ଯେଉଁ ଲୋକ କୌଣସି ଖେଳରେ ପ୍ରଥମ ଛଡ଼ା କେବେହେଁ ଦ୍ୱିତୀୟ ହୋଇନାହିଁ, ସେ ଏପରି ଟଳିପଡ଼ିବା କ'ଣ ଆଶ୍ଚର୍ଯ୍ୟର କଥା ନୁହେଁ !" ସେନାପତି ଉତ୍ତର ଦେଲେ ଯେ ସେଥିରେ ସେ ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ଦେଖୁ ନ ଥିଲେ, ବରଂ ଅବଶ୍ୟମ୍ଭାବୀ ବୋଲି ଭାବୁଥିଲେ ।

ପ୍ରବନ୍ଧରେ ଏପରି ଆଉ ଗୋଟିଏ ଯୋଡ଼ିଏ ଦୃଷ୍ଟାନ୍ତ ଲେଖି ସେ ଲେଖିଛନ୍ତି ଯେ ଫୁଟବଲ ଓ ହକି ଖେଳରେ ଏବଂ ୨୨୦, ୪୪୦, ୮୮୦ ଗଜ ପ୍ରଭୃତି ଦୌଡ଼ରେ ଖେଳଓ୍ୱାଡ଼ମାନଙ୍କର ହୃଦ୍‌ଯନ୍ତ୍ର (heart) ଅତ୍ୟଧିକ ଭାବରେ ଚାପ ପାଏ । ଅତ୍ୟଧିକ ଓ ହଠାତ୍ ଦୌଡ଼ିବାଦ୍ୱାରା ଆମେ ଯେଉଁ ଧଇଁସଇଁ ହୋଇପଡ଼ୁ, ତାହା ହୃଦ୍‌ଯନ୍ତ୍ରର ଅତ୍ୟଧିକ ଚାଳନା ନିମିତ୍ତ ହୋଇଥାଏ । ଏହି ହୃଦ୍‌ଯନ୍ତ୍ର ଆମେ ଜନ୍ମହେବା ପୂର୍ବରୁ ଚାଲୁଛି ଓ ଏହା ଯେତେବେଳେ ବନ୍ଦ ହୋଇଯିବ, ଆମେ ସେତିକି ବେଳେ ମରିଯିବା । ଆମର ଜୀବନ ଥିବା ପର୍ଯ୍ୟନ୍ତ ଏହାର ବିଶ୍ରାମ ନାହିଁ; ତେଣୁ ଏହାକୁ ଅଯଥା ଚଳେଇବାର ଅର୍ଥ ହେଉଛି ଏହାକୁ ଦୁର୍ବଳ କରିପକାଇବା ।

ଉକ୍ତଲମାନ୍ ବା ମାଲମାନେ କ୍ୱଚିତ୍ ଦୀର୍ଘଜୀବୀ ହୁଅନ୍ତି । ସାରା ପୃଥିବୀରେ ଏହାର ଭୂରି ଭୂରି ଦୃଷ୍ଟାନ୍ତ ରହିଅଛି । ଲର୍ଡ୍ ବାଡ୍ଡେନ୍ ପାଉଏଲ ସ୍କାଉଟ ବ୍ୟାୟାମରେ ଦୌଡ଼ ଆଦୌ ରଖି ନାହାନ୍ତି । ଜରୁରୀ କାମରେ ସ୍କାଉଟଙ୍କୁ ଯିବାକୁ ହେଲେ ସେ ୨୦ ପାହୁଣ୍ଡ ଚାଲନ୍ତି ଓ ୨୦ ପାହୁଣ୍ଡ ଅଳ୍ପ ଅଳ୍ପ ଦୌଡ଼ନ୍ତି । ଏକାବେଳକେ ଜୋରରେ ଦୌଡ଼ିବା ସ୍କାଉଟିଂରେ ନିଷିଦ୍ଧ ।

ସ୍ୱାମୀ ଏକଥା କେଉଁ କାଳୁ ଜାଣିଥିଲେ; ତେଣୁ ସେ ସୂର୍ଯ୍ୟ ନମସ୍କାର, ଯୋଗାସନ ପ୍ରଭୃତି ବ୍ୟାୟାମ ଉଦ୍ଭାବନ କରିଥିଲେ । ଆସନ ଅନ୍ତର୍ଗତ ଶୀର୍ଷାସନ, ସର୍ବାଙ୍ଗାସନ, ପଶ୍ଚିମୋତ୍ତାନାଆସନ ଏପରି ବିଚକ୍ଷଣ ଭାବରେ କଳ୍ପିତ ହୋଇଛି ଯେ କାର୍ଯ୍ୟବ୍ୟସ୍ତ ଲୋକ କେବଳ ଏହି ୩ଟି ଆସନ ଯଦି ସବୁଦିନେ କରିପାରିବେ, ତେବେ ଅନ୍ୟାନ୍ୟ ସ୍ୱାସ୍ଥ୍ୟ ନିୟମ ଅନୁସୃତ ହେଉଥିଲେ ତାଙ୍କର ସ୍ୱାସ୍ଥ୍ୟ ସହଜରେ ଦୁର୍ବଳ ହେବ ନାହିଁ ଓ ସେ ଦୀର୍ଘାୟୁ ହୋଇପାରିବେ ।

ପାଶ୍ଚାତ୍ୟ ଲୋକମାନେ କହନ୍ତି, ମନୁଷ୍ୟ କସରତ ବା ଏକ୍ସରସାଇଜ୍ କରିବା ସମୟରେ ଘନ ଘନ ପ୍ରଶ୍ୱାସ ନେବାରୁ ଦେହ ଭିତରକୁ ବହୁତ ଅମ୍ଳଜାନ ବା ଅକ୍ସିଜେନ ଯାଏ; ତେଣୁ ଏହା ସ୍ୱାସ୍ଥ୍ୟସହାୟକ । କିନ୍ତୁ ଆମ ମୁନିଋଷିମାନଙ୍କ ମତ ଏହାର ବିପରୀତ । ସେମାନେ କହନ୍ତି ଯେ ନିଃଶ୍ୱାସ ଯେତେ ଘନ ଘନ ଚାଲିବ, ପ୍ରାଣ ସେତିକି ସେତିକି ନଷ୍ଟ ହେବ । ଦୀର୍ଘ ପ୍ରଶ୍ୱାସ ନେବା ଓ ଧୀର ନିଶ୍ୱାସ ଛାଡ଼ିବା ଆମ ଋଷିମାନଙ୍କ ମତରେ ପ୍ରାଣସଂରକ୍ଷଣର ପ୍ରକୃଷ୍ଟ ଉପାୟ ।

ସଙ୍ଘବଦ୍ଧ ବ୍ୟାୟାମ ମନରେ ପ୍ରଫୁଲ୍ଲତା ଆଣି କ୍ଳାନ୍ତି ଅପନୋଦନ କରେ ତେଣୁ ତାହା ଛାଡ଼ିବାର କଥା ନୁହେଁ । ବ୍ୟାୟାମ ସମୟରେ ଆମର ମନେରଖିବା ଆବଶ୍ୟକ ଯେପରି ଏହାଦ୍ୱାରା ଆମର ହୃଦ୍‌ଯନ୍ତ୍ର ଅଯଥା କ୍ଷୟ ନ ପାଏ ।

ଆମ୍ଭମାନଙ୍କର ପୂର୍ବୋକ୍ତ ଉକ୍ତିର ସମର୍ଥନ ସ୍ୱରୂପ ଭାରତ ସରକାରଙ୍କ ଅନୁରୋଧରେ ଉତ୍କୃଷ୍ଟ ବ୍ୟାୟାମପ୍ରଣାଳୀ ବାହାର କରିବା ନିମିତ୍ତ ଏବେ ନିଯୁକ୍ତ ହୋଇଥିବା ଜଣେ ଆମେରିକାର ବିଶେଷଜ୍ଞଙ୍କ ମତରୁ ଯତ୍‌କିଞ୍ଚିତ୍ ନିମ୍ନରେ ଉଦ୍ଧାର କରାଗଲା :—

"India's traditional treasures of folk-life and dancing constitute the best form of physical exercise and if revived properly should form the basis of a comprehensive physical culture curriculum.

This opinion was expressed by Dr. Jay, B. Nash, Chairman of the Physical Education Committee of the University of New York, now studying the problem of Physcial Education in the different States of India. He is acting as an adviser to the Government of India on Physical Education Planning.

Dr. Nash regretted that India has been aping the worst part of Western Culture which includes the futile craze for competitive record breaking × × × Speaking of women' games and sports, Dr. Nash said that during the preadolescense period, the same physical activities could be recommended for boys and girls alike, but prolonged research in the U. S. A. convinced him that sports and games with explosive movements are definitely harmful to young women."

(From the Statesman, Friday, 19-2-1954)

ଅର୍ଥାତ୍ ଭାରତର ପରମ୍ପରାଗତ ଗ୍ରାମ୍ୟଜୀବନ ଓ ଦେଶୀ ନୃତ୍ୟରେ ଯେଉଁ ରତ୍ନଗୁଡ଼ିକ ରହିଅଛି, ସେଗୁଡ଼ିକ ଦୈହିକ ବ୍ୟାୟାମର ସର୍ବୋତ୍କୃଷ୍ଟ ପନ୍ଥା ଅଟେ । ସେଗୁଡ଼ିକର ପୁନଃଉତ୍‌ଥାପନକୁ ଭିତ୍ତି କରି ବ୍ୟାୟାମ ନିମିତ୍ତ ଏକ ସର୍ବାଧ୍ୟବୋପଯୋଗୀ ପରିକଳ୍ପନା କରାଯାଇପାରେ । ଡକ୍ଟର ନ୍ୟାଶ ଦୁଃଖିତ ହୋଇ କହିଛନ୍ତି ଯେ ଭାରତ ପାଶ୍ଚାତ୍ୟ ସଭ୍ୟତାର ସବୁଠାରୁ ଖରାପ ଅଂଶଗୁଡ଼ିକୁ ଅନୁକରଣ କରୁଛି । ପ୍ରତିଦ୍ୱନ୍ଦ୍ୱିତା କ୍ଷେତ୍ରରେ ସବୁବେଳେ ଆଗେଇଯିବା ନିମିତ୍ତ ଯେଉଁ ଝୁଙ୍କ ଭାରତରେ ପ୍ରବେଶ କରିଛି, ତାହା ନିରର୍ଥକ । × × ×

ସ୍ତ୍ରୀମାନଙ୍କର ଖେଳ କସରତ ବିଷୟରେ ସେ କହିଛନ୍ତି ଯେ କୈଶୋର ପୂର୍ବରୁ ବାଳକବାଳିକାମାନଙ୍କର ଖେଳ କସରତ୍ ଏକପ୍ରକାର ହୋଇପାରେ; କିନ୍ତୁ ଆମେରିକାରେ ବହୁଦିନ ଗବେଷଣା କରି ଦେଖାଯାଇଛି ଯେ ଯେଉଁ ଖେଳ କସରତରେ ଅଙ୍ଗପ୍ରତ୍ୟଙ୍ଗ ଅତ୍ୟନ୍ତ କ୍ଷିପ୍ରଭାବରେ ଚାଳିତ ହୁଏ, ତାହା କିଶୋରୀମାନଙ୍କ ପ୍ରତି ନିତାନ୍ତ ଖରାପ ।*

---

*ଓଡ଼ିଆଙ୍କ ପୁଚଫେଲ ଏକ ସ୍ୱତନ୍ତ୍ର ଓ ଅସାଧାରଣ ପରିକଳ୍ପନା; ଲେଖକଙ୍କର 'ବନ୍ଦେ ମାତରମ୍' ପୁସ୍ତକର ୧୬ଶ ଅଧ୍ୟାୟରେ ଏହାର ବିସ୍ତୃତ ବିବରଣ ରହିଅଛି ।

# ପୁରାକାଳ ହିନ୍ଦୁର ଛାତ୍ରଜୀବନ

ବର୍ଣ୍ଣାଶ୍ରମ ଧର୍ମ ଅନୁସାରେ ଗଠିତ ହିନ୍ଦୁ ସମାଜର ପ୍ରତ୍ୟେକ ଘର ଗୋଟିଏ ଲେଖାଏଁ ସ୍କୁଲ ଥିଲା । ଯାହାର ଯେଉଁ ବ୍ୟବସାୟ, ସେହି ବ୍ୟବସାୟଗତ କାର୍ଯ୍ୟକୁଶଳତା ସେ ତାହାର ବାପ ମା ଓ ସମାଜଠାରୁ ପିଲାଦିନୁ ଶିଖି ନେଉଥିଲା । କୋଣାର୍କ ମନ୍ଦିରର ମୁଣ୍ଡି ମରା ହୋଇପାରୁ ନ ଥିଲା; ବାର ବରଷର ଯେଉଁ ବଢେଇ ପିଲା ଏହାର ମୁଣ୍ଡି ମାରିଦେଲା, ସେ କେଉଁ ଇଞ୍ଜିନିୟରିଂ ସ୍କୁଲରେ ଏ ଅପୂର୍ବ ବିଚକ୍ଷଣତା ଶିଖିଥିଲା ? ବାପମାଙ୍କର କିମ୍ବା ସମାଜର ଗଳଗ୍ରହ ନ ହୋଇ (ଏବେ ଯେମିତି ହୋଇଛନ୍ତି) ବରଂ ବାପମାଙ୍କୁ ଜୀବିକାର୍ଜନରେ ସାହାଯ୍ୟ କରି ପିଲାମାନେ ବ୍ୟବସାୟ ଶିକ୍ଷା କରୁଥିଲେ ଏବଂ ସେଥିରେ ବିଚକ୍ଷଣତା ମଧ୍ୟ ହାସଲ କରୁଥିଲେ ।

(ପ୍ରଥମ ଭାଗର ୧୨୫ ପୃଷ୍ଠାର ଦେଖନ୍ତୁ )

ବ୍ୟବସାୟ ଛଡ଼ା ଯେଉଁମାନେ ଧର୍ମଚର୍ଚ୍ଚା ଓ ଦର୍ଶନଚର୍ଚ୍ଚା (Religion and Philosophy) ଇଚ୍ଛା କରୁଥିଲେ, ସେମାନଙ୍କ ନିମନ୍ତେ ଠାଏ ଠାଏ ପ୍ରସିଦ୍ଧ ପଣ୍ଡିତମାନେ ଗୁରୁକୁଳ ଖୋଲିଥିଲେ ।

ଛାତ୍ରମାନେ ଅଳ୍ପ ବୟସରେ (ଆଠ) ଘର ଛାଡ଼ି ଗୁରୁଙ୍କ ପାଖରେ ରହୁଥିଲେ ଓ ୨୪ ବର୍ଷ ପର୍ଯ୍ୟନ୍ତ ଘରକୁ ଫେରୁ ନ ଥିଲେ । ନିଶ୍ଚିନ୍ତ ନିର୍ବିକ୍ଷିପ୍ତ ମନୋଯୋଗ ନ ହେଲେ ବିଦ୍ୟାଧ୍ୟୟନ ହୁଏ ନାହିଁ । ସେଥି ନିମନ୍ତେ ସେମାନେ ଘରକୁ ଆସୁ ନ ଥିଲେ ଓ ଘରକଥା କିଛି ଜାଣୁ ନ ଥିଲେ । ଭିକ୍ଷା ମାଗି ନିଜେ ପୋଷି ହେଉଥିଲେ ଓ ଗୁରୁଙ୍କୁ ମଧ୍ୟ ପୋଷୁଥିଲେ । ଏପରି ଭାବରେ ଚଳିବାରୁ ସେମାନଙ୍କୁ ନାନା ଦୁଃଖକଷ୍ଟ ସହିବାକୁ ପଡ଼ୁଥିଲା । କଦଳୀ ଉଧିକୁ ଛେଚିଲେ ସେ ଯେପରି ହୃଷ୍ଟପୁଷ୍ଟ ହୋଇ ବଢ଼େ, ଏମାନେ ସେପରି ବିଳାସହୀନ ଜୀବନରେ ଅଭ୍ୟସ୍ତ ହୋଇ ବଳିଷ୍ଠ ସ୍ୱାସ୍ଥ୍ୟ ଓ ସଂଯତ ଚିତ୍ତ ଅର୍ଜ୍ଜନ କରିପାରୁଥିଲେ ।

ସମାଜଠାରୁ ଭିକ୍ଷାନେଇ ନିଜକୁ ପୋଷୁଥିଲେ ବୋଲି ପାଠସମାପ୍ତି ପରେ ଆଜିକାଲିର ହାକିମଙ୍କ ପରି ଲୋକସାଧାରଣଙ୍କୁ ହୀନଦୃଷ୍ଟି ଚକ୍ଷୁରେ ଦେଖୁ ନ ଥିଲେ ।

ପାଠପଢ଼ା ଶେଷରେ ସେମାନେ ବ୍ରହ୍ମଚର୍ଯ୍ୟ ପ୍ରତିଷ୍ଠିତ ଗୁରୁଙ୍କଠାରୁ କାମଶାସ୍ତ୍ର ଅଧ୍ୟୟନ କରି ଗୃହସ୍ଥ ହେଉଥିଲେ । କାମଶାସ୍ତ୍ର ଅଧ୍ୟୟନ କରି ମନୁଷ୍ୟ-ସୃଷ୍ଟି କିପରି କରାଯାଏ, ପୂର୍ବକାଳର ହିନ୍ଦୁ (ବିଶେଷତଃ ବ୍ରାହ୍ମଣ) ଜାଣିଥିଲେ ଓ ସୁଲକ୍ଷଣଜନ୍ମା ପିଲାଙ୍କର ଜନକଜନନୀ ହୋଇପାରୁଥିଲେ ।

———

# ବାର ମାସରେ ତେର ପର୍ବ କାହିଁକି ?

କେବଳ ବଡ଼ ବଡ଼ ସହରରେ ନୁହେଁ, ମଫସଲର ଗାଁଗଣ୍ଡାରେ ମଧ୍ୟ ଚିତ୍ତବିନୋଦନ ନିମିତ୍ତ ନାନା ପ୍ରକାର ବ୍ୟବସ୍ଥା ରହିଅଛି । ଥିଏଟର, ସିନେମା, ଯାତ୍ରା, ନାଚ, କୀର୍ତ୍ତନ ପ୍ରଭୃତି ସବୁଦେଶରେ ପ୍ରାୟ ରହିଅଛି । ଅନ୍ୟ ପ୍ରାଣୀମାନଙ୍କ ପରି ମନୁଷ୍ୟ କେବଳ ଖାଇ ପିଇ ବଂଶବୃଦ୍ଧି କରି ସନ୍ତୋଷ ଲାଭ କରିପାରେ ନାହିଁ । ତାହାର ମନ ଅଛି, ଆତ୍ମା ଅଛି । ସେଥି ନିମିତ୍ତ ସେ ଦରକାର କରେ ମାନସିକ ଓ ଆଧ୍ୟାତ୍ମିକ ଖାଦ୍ୟ । ତାହା ଯୋଗାଇବା ନିମିତ୍ତ ଛନ୍ଦ, କବିତା, ଗଳ୍ପ, ନାଟକ, କାବ୍ୟ ପୁରାଣ ପ୍ରଭୃତିର ସୃଷ୍ଟି ସବୁ ଦେଶରେ, ସବୁ କାଳରେ ହୋଇଅଛି ।

ପ୍ରତ୍ୟେକ ଦେଶରେ ଓ ପ୍ରତ୍ୟେକ ଧର୍ମରେ ପର୍ବ ରହିଅଛି । ଉକ୍ତ ପର୍ବ ପାଳିବା ନିମିତ୍ତ ଲୋକମାନେ ସମାଜରେ ନାନାବିଧ ମଉଜ ମଜଲିସ କରନ୍ତି । ଈଶ୍ବର-ଉପାସନା ମଧ୍ୟ ଏହା ସଙ୍ଗରେ ଥାଏ । ହିନ୍ଦୁର ପ୍ରାୟ ପ୍ରତ୍ୟେକ ପର୍ବ ଉପବାସମୂଳକ ସଂଯମରେ ଆରବ୍ଧ ହୁଏ, ତା'ପରେ ପୂଜା ଉପାସନା, ନୈବେଦ୍ୟ ଅର୍ପଣ ଓ ସେବନର ବିଧାନ ରହିଥାଏ । ପ୍ରସାଦ ବିତରଣ ଓ ପାରସ୍ପରିକ ଆଦାନପ୍ରଦାନ କେତେଗୁଡ଼ିଏ ପର୍ବର ବିଶିଷ୍ଟ ଅଙ୍ଗ ।

ହିନ୍ଦୁ ସଭ୍ୟତା ଅନ୍ୟାନ୍ୟ ସଭ୍ୟତା ପରି ନଗରରେ ବଢ଼ି ନ ଥିଲା । ଏହାର ଉତ୍ପତ୍ତି ଅରଣ୍ୟରେ ଏବଂ ପ୍ରସାର ମଫସଲର ଗ୍ରାମମାନଙ୍କରେ । ଯନ୍ତ୍ରନିର୍ମାଣ ବା ସ୍ଥାପନ ହିନ୍ଦୁ ସଭ୍ୟତାରେ ନ ଥିଲା; ତେଣୁ ଆଶୁ ଆଦାନ-ପ୍ରଦାନ, ବିଚରଣ ଓ ବିତରଣ ସାମାଜିକ ଜୀବନରେ ପ୍ରାପ୍ୟ ସ୍ଥାନ ପାଇ ନ ଥିଲା । ସାମାଜିକ ଜୀବନର ବିରକ୍ତିକର ଏକଘେୟେଁତା ଦୂରକରିବା ନିମିତ୍ତ ପର୍ବମାନଙ୍କର ସୃଷ୍ଟି । କେବଳ ଏତିକି କହିଲେ ପର୍ବ ସମ୍ବନ୍ଧରେ ଖୁବ୍ କମ୍ କୁହାଗଲା । ପର୍ବପାଳନଦ୍ୱାରା ଦୈହିକ ସ୍ୱାସ୍ଥ୍ୟ, ମନର ପ୍ରଫୁଲ୍ଲତା, ସାମାଜିକ ମିଳାମିଶା, ଧର୍ମାଚରଣ ପ୍ରଭୃତି ଅଲକ୍ଷିତ ଭାବରେ ମନୁଷ୍ୟ ଉପଭୋଗ କରେ । ଉତ୍କଳରେ ପ୍ରଚଳିତ କେତେକ ପର୍ବ

(ଖୁଦୁରୁକୁଣି, ଦ୍ୱିତୀୟାଓଷା, ମାଣବସା ପ୍ରଭୃତି) ସାମାଜିକ ଜୀବନର ସ୍ୱାସ୍ଥ୍ୟ ଓ ସ୍ୱଚ୍ଛଳତା ନିମିତ୍ତ ସୃଷ୍ଟି ହୋଇଅଛି ।*

ଅନ୍ୟ ଧର୍ମ ଓ ସମାଜରେ ପର୍ବର ସଂଖ୍ୟା ହିନ୍ଦୁଧର୍ମ ପରି ଏତେ ଅଧିକ ନୁହେଁ । ସହରମାନଙ୍କରେ ଏବେ ଥିଏଟର ସିନେମାରେ ମନୁଷ୍ୟ ଅଜସ୍ର ଅର୍ଥ ବ୍ୟୟ କରି ଯାହା ନ ପାଉଛି, ହିନ୍ଦୁ ତାହାର ଦୋଳ, ଦଶହରା ପ୍ରଭୃତି ପର୍ବପାଳନରେ ତାହାଠାରୁ ସହସ୍ର ଗୁଣ ଅଧିକ ଫାଇଦା ଉଠାଉଛି । ଥିଏଟର, ସିନେମା ହିନ୍ଦୁ ପର୍ବ ପରି ସାର୍ବଜନୀନ ଆନନ୍ଦ ଦେଇପାରେ ନାହିଁ । ଏଗୁଡିକ ବ୍ୟକ୍ତିଗତ ଓ ଅର୍ଥସାପେକ୍ଷ ଉପଭୋଗ, ସାମାଜିକତାର ସ୍ଥାନ ଏଥିରେ ନାହିଁ କହିଲେ ଚଳେ । କର୍ମକ୍ଳାନ୍ତ ଜୀବନରେ ପ୍ରଫୁଲ୍ଲତା ଓ ବନ୍ଧୁବଧତାର ରସ ଫୁଟାଇବା ପାଇଁ ଅଧିକାଂଶ ହିନ୍ଦୁପର୍ବ ଉଦ୍ଭାବିତ ହୋଇଅଛି ।



ଏ ସମସ୍ତ ଲେଖକଙ୍କର "ଉତ୍କଳୀୟ ପର୍ବର ଭିତରି ଉଦ୍ଦେଶ୍ୟ" ପୁସ୍ତକରେ ବିସ୍ତୃତ ଭାବେ ଆଲୋଚିତ ହୋଇଅଛି ।

# ମା କ'ଣ ପିଏ ରକ୍ତ ?

## (ଦଶହରା ପର୍ବର ଭିତର ଉଦ୍ଦେଶ୍ୟ)

ଏ ପ୍ରଶ୍ନଟା କାନରେ ବଡ଼ ଆଘାତ ଦିଏ । ହିନ୍ଦୁମାନେ ବିଶେଷତଃ ଯେଉଁମାନେ ଦେବୀ-ଉପାସନା କରନ୍ତି, ସେମାନେ ଦେବୀ ଆଗରେ ଛେଳି, ମେଣ୍ଢା, ମଇଁଷି ଓ କୁକୁଡ଼ା ପ୍ରଭୃତି ବଳି ଦିଅନ୍ତି । ଏହି ପଶୁପକ୍ଷୀ ବଧ ଦେଖିଲେ ହିନ୍ଦୁଧର୍ମ ପ୍ରତି କେବଳ ତ ଘୃଣା ଆସେ ନାହିଁ, ଯେଉଁମାନେ ଧର୍ମ ନାମରେ ଏହା କରନ୍ତି, ସେମାନଙ୍କ ପ୍ରତି ହୃଦୟରୁ ଶତ ଧିକ୍କାର ଉଚ୍ଛୁଳିଉଠେ । ମନରେ ଥରେ ଥରେ ପ୍ରଶ୍ନ ଉଠେ, ଯେ ଛେଳି ମେଣ୍ଢା ପ୍ରଭୃତି ନିର୍ଦ୍ଦୋଷ ପ୍ରାଣୀମାନଙ୍କର ରକ୍ତ ପିଏ, ସେ ଦେବୀ ନା ଦାନବୀ ! ବାଘ, ସାପ ପ୍ରଭୃତି ହିଂସ୍ର ପ୍ରାଣୀ ଯଦି ବଳି ପଡୁଥାନ୍ତେ ମନରେ ଏପରି ଠୋକର ବାଜନ୍ତା ନାହିଁ । ମନ ଅନ୍ୟ କିଛି ନ ପାଇ ସାଙ୍ଗେ ସାଙ୍ଗେ ଧରିନିଏ ଯେ ପେଟୁମାନଙ୍କର ଧର୍ମର ଦୋହାଇ ଦେଇ ମାଂସ ଖାଇବାର ଏ ଗୋଟାଏ ମସ୍ତବଡ଼ ଫିକର । ହିନ୍ଦୁସମାଜର ଅନେକ ଲୋକ ଯେତେବେଳେ ଜୀବ ମାରିବା ପାପ ବୋଲି ଧରି ଅହିଂସା ଆଚରଣ କଲେ, ସେତେବେଳେ ପଞ୍ଝାଏ ପେଟୁ ଶକ୍ତି-ଉପାସନା ନାମରେ ଧର୍ମରୁ ଏକ ଶାଖା ବାହାର କରି ମାଛ ମାଂସ ଖାଇବା ଲୋଭରେ ବଳିପ୍ରଥା ଆରମ୍ଭ କଲେ । ଏହା କାଳକ୍ରମେ ଚାଲି ଆସୁଅଛି ।

ଦେବୀ-ଉପାସନା ସହିତ ଏହି ବଳିପ୍ରଥା ରହିଅଛି । ଓଡ଼ିଶାର ବ୍ରାହ୍ମଣ, ବିଶେଷତଃ ପୁରୀ ଅଞ୍ଚଳର ବ୍ରାହ୍ମଣମାନେ ଶାକ୍ତ । ଦଶହରା ସମୟରେ ଏମାନେ (ପ୍ରାୟ ସବୁ ଘରେ ମହାଆଡ଼ମ୍ବରରେ ଦେବୀପୂଜା କରନ୍ତି । ପଶୁବଳି ନ ଦେଲେ ଅନ୍ତତଃ ମାଛ ଭୋଗ ଦେଇ ଖାଆନ୍ତି । କୌଣସି ପ୍ରକାରର ଜୀବବଧ ଏଥିରେ ହୋଇଥାଏ । ବଙ୍ଗ ଦେଶରେ ଏହି ଦେବୀପୂଜା ହିନ୍ଦୁମାନେ ଅତ୍ୟନ୍ତ ଆଡ଼ମ୍ବରରେ କରନ୍ତି । ଆସାମରେ ମଧ୍ୟ

ଏହିପରି । ଆସାମ, ବଙ୍ଗ, ଓଡ଼ିଶାରେ ଏହି ଦେବୀ-ଉପାସନା ଯେତେ ବେଶୀ ଦେଖାଯାଏ, ଭାରତର ଅନ୍ୟ ସ୍ଥାନମାନଙ୍କରେ ସେତେ ନାହିଁ । ସେ ଯାହାହେଉ, ଓଡ଼ିଶାର ବ୍ରାହ୍ମଣମାନେ ବିଶେଷତଃ ପୁରୀ ଅଞ୍ଚଳର ବ୍ରାହ୍ମଣମାନେ ଜଗନ୍ନାଥ ମନ୍ଦିରର ପାଖରେ ରହି କପରି ଜୀବହିଂସା ଛାଡ଼ିପାରିଲେ ନାହିଁ, ଭାବିଲେ ମନ ପିଡ଼ା ହୋଇଯାଏ; ବରଂ ଅନ୍ୟ ଜାତିର ବହୁତ ଲୋକ ଚୈତନ୍ୟପନ୍ଥୀ ହୋଇ ଜୀବହିଂସା ଏକବାର ଛାଡ଼ିଦେଲେ । ଯେଉଁ ବ୍ରାହ୍ମଣ ସାତ୍ତ୍ୱିକ ଖାଦ୍ୟକୁ ଖାଦ୍ୟ ମଧ୍ୟରେ ଶ୍ରେଷ୍ଠ ଆସନ ଦେଇଥିଲା; ସେ ଧର୍ମ ନାମରେ ପଶୁ ବଧ କରି ତୁଣ୍ଡ ସୁଆଦ କଥାକୁ ଛାଡି ପାରିଲା ନାହିଁ ଓ ତାର କୌଳିକ ଆଚାରକୁ ଜଳାଞ୍ଜଳି ଦେଇ ଗୋଟିଏ ପେଟୁ ସାଜିଲା; ଏହା ଗୋଟାଏ ନିତାନ୍ତ ଲଜ୍ଜାର କଥା ବୋଲି ଆମ୍ଭେମାନେ ମନେ କରିଥିଲୁଁ । ପଶ୍ଚିମା ଓ ଦକ୍ଷିଣିଆ ବ୍ରାହ୍ମଣମାନେ ଆମ ଓଡ଼ିଆ ବ୍ରାହ୍ମଣମାନଙ୍କର ଏହି ମାଛମାଂସଖିଆ କଥାଟା ଦେଖି ସେମାନଙ୍କୁ ଘୃଣା ନ କଲେ ମଧ୍ୟ ଆଦୌ ପସନ୍ଦ କରନ୍ତି ନାହିଁ । ଦିନ ଥିଲା ଆମ୍ଭେମାନେ ମଧ୍ୟ ସେହିପରି ଆମ ଓଡ଼ିଆ ବ୍ରାହ୍ମଣମାନଙ୍କର ମାଛମାଂସ ଖାଇବା କଥାଟିକୁ ବଡ଼ ନାପସନ୍ଦ କରୁଥିଲୁଁ ।

**ମାଛମାଂସ କାହିଁକି ଖିଆଯାଏ ?**—ଆମେ ଯାହା ଖାଉଁ—ଭାତ, ଡାଲି, ତରକାରି, ମାଛ, ମାଂସ ଓ ଅଣ୍ଡା ପ୍ରଭୃତି—ସେଥିରେ ଛଅ ପ୍ରକାର ଜିନିଷ ଥାଏ । ଏହି ଛଅ ପ୍ରକାର ଜିନିଷ ମଧ୍ୟରୁ ତିନି ପ୍ରକାର ଜିନିଷ ଦେହରୂପ ଇଞ୍ଜିନକୁ ଚଳାଇବାର ଶକ୍ତି ଦିଏ । ଆଉ ତିନି ପ୍ରକାର ଜିନିଷ ଦେହକୁ ଗଢ଼େ, ବଢ଼ାଏ ଓ ତାହାର କ୍ଷୟ ପୂରଣ କରେ । ଯେଉଁ ଖାଦ୍ୟରେ ଏହି ଶେଷୋକ୍ତ ତିନି ପ୍ରକାର ଜିନିଷ ନାହିଁ, ସେ ଖାଦ୍ୟ ଖାଇଲେ ଲୋକ ଦୁର୍ବଳ ହୋଇପିବ ଓ ତାକୁ ନାନା ପ୍ରକାର ରୋଗ ଆକ୍ରମଣ କରିବ । ଏହି ତିନି ପ୍ରକାର ଗଠନଶୀଳ ଖାଦ୍ୟ ମଧ୍ୟରେ ପୁଷ୍ଟିସାର ଏକ ଅଟେ । ଏହା ଦୁଧ, ମାଛ, ମାଂସ ଅଣ୍ଡା ଓ ଡ଼ାଲିରେ ଭାତ, ରୁଟି ପ୍ରଭୃତି ଅପେକ୍ଷା ବେଶୀ ଥାଏ ।

ଯେଉଁମାନେ ଦୁଧ, ମାଛ, ମାଂସ, ଅଣ୍ଡା ପାଇପାରନ୍ତି ନାହିଁ, ସେମାନେ ମୁଗ, ବିରି ପ୍ରଭୃତି ଡ଼ାଲିରୁ ଏହା ସଂଗ୍ରହ କରନ୍ତି; କିନ୍ତୁ ପରୀକ୍ଷାଦ୍ୱାରା ଦେଖାଯାଇଛି ଯେ ଡ଼ାଲିର ପୁଷ୍ଟିସାର ଦୁଧ, ମାଛ, ମାଂସର

# ମା କ'ଣ ପିଏ ରକ୍ତ ?

## (ଦଶହରା ପର୍ବର ଭିତର ଉଦ୍ଦେଶ୍ୟ)

ଏ ପ୍ରଶ୍ନଟା କାନରେ ବଡ଼ ଆଘାତ ଦିଏ । ହିନ୍ଦୁମାନେ ବିଶେଷତଃ ଯେଉଁମାନେ ଦେବୀ-ଉପାସନା କରନ୍ତି, ସେମାନେ ଦେବୀ ଆଗରେ ଛେଳି, ମେଣ୍ଢା, ମଇଁଷି ଓ କୁକୁଡ଼ା ପ୍ରଭୃତି ବଳି ଦିଅନ୍ତି । ଏହି ପଶୁପକ୍ଷୀ ବଧ ଦେଖିଲେ ହିନ୍ଦୁଧର୍ମ ପ୍ରତି କେବଳ ତ ଘୃଣା ଆସେ ନାହିଁ, ଯେଉଁମାନେ ଧର୍ମ ନାମରେ ଏହା କରନ୍ତି, ସେମାନଙ୍କ ପ୍ରତି ହୃଦୟରୁ ଶତ ଧିକ୍କାର ଉଚ୍ଛୁଳିଉଠେ । ମନରେ ଘୁରିଁ ଘୁରିଁ ପ୍ରଶ୍ନ ଉଠେ, ଯେ ଛେଳି ମେଣ୍ଢା ପ୍ରଭୃତି ନିର୍ଦ୍ଦୋଷ ପ୍ରାଣୀମାନଙ୍କର ରକ୍ତ ପିଏ, ସେ ଦେବୀ ନା ଦାନବୀ ! ବାଘ, ସାପ ପ୍ରଭୃତି ହିଂସ୍ର ପ୍ରାଣୀ ଯଦି ବଳି ପଡୁଥାନ୍ତେ ମନରେ ଏପରି ଚୋଟକର ବାଜନ୍ତା ନାହିଁ । ମନ ଅନ୍ୟ କିଛି ନ ପାଇ ସାଙ୍ଗେ ସାଙ୍ଗେ ଧରିନିଏ ଯେ ପେଟୁମାନଙ୍କର ଧର୍ମର ଦୋହାଇ ଦେଇ ମାଂସ ଖାଇବାର ଏ ଗୋଟାଏ ମସ୍ତବଡ଼ ଫିକର । ହିନ୍ଦୁସମାଜର ଅନେକ ଲୋକ ଯେତେବେଳେ ଜୀବ ମାରିବା ପାପ ବୋଲି ଧରି ଅହିଂସା ଆଚରଣ କଲେ, ସେତେବେଳେ ପଞ୍ଚାଏ ପେଟୁ ଶକ୍ତି-ଉପାସନା ନାମରେ ଧର୍ମରୁ ଏକ ଶାଖା ବାହାରି କରି ମାଛ ମାଂସ ଖାଇବା ଲୋଭରେ ବଳିପ୍ରଥା ଆରମ୍ଭ କଲେ । ଏହା କାଳକ୍ରମେ ଚଳି ଆସୁଅଛି ।

ଦେବୀ-ଉପାସନା ସହିତ ଏହି ବଳିପ୍ରଥା ରହିଅଛି । ଓଡ଼ିଶାର ବ୍ରାହ୍ମଣ, ବିଶେଷତଃ ପୁରୀ ଅଞ୍ଚଳର ବ୍ରାହ୍ମଣମାନେ ଶାକ୍ତ । ଦଶହରା ସମୟରେ ଏମାନେ (ପ୍ରାୟ ସବୁ ଘରେ ମହାଆଡ଼ମ୍ବରରେ ଦେବୀପୂଜା କରନ୍ତି । ପଶୁବଳି ନ ଦେଲେ ଅନ୍ତତଃ ମାଛ ଭୋଗ ଦେଇ ଖାଆନ୍ତି । କୌଣସି ପ୍ରକାରରେ ଜୀବବଧ ଏଥିରେ ହୋଇଥାଏ । ବଙ୍ଗ ଦେଶରେ ଏହି ଦେବୀପୂଜା ହିନ୍ଦୁମାନେ ଆନ୍ତରି ଆଡ଼ମ୍ବରରେ କରନ୍ତି । ଆସାମରେ ମଧ୍ୟ

ଏହିପରି । ଆସାମ, ବଙ୍ଗ, ଓଡ଼ିଶାରେ ଏହି ଦେବୀ-ଉପାସନା ଯେତେ ବେଶୀ ଦେଖାଯାଏ, ଭାରତର ଅନ୍ୟ ସ୍ଥାନମାନଙ୍କରେ ସେତେ ନାହିଁ । ସେ ଯାହାହେଉ, ଓଡ଼ିଶାର ବ୍ରାହ୍ମଣମାନେ ବିଶେଷତଃ ପୁରୀ ଅଞ୍ଚଳର ବ୍ରାହ୍ମଣମାନେ ଜଗନ୍ନାଥ ମନ୍ଦିରର ପାଖରେ ରହି କପରି ଶାବନ୍ଧିଂସା ଛାଡ଼ିପାରିଲେ ନାହିଁ, ଭାବିଲେ ମନ ପିଡ଼ା ହୋଇଯାଏ; ବରଂ ଅନ୍ୟ ଜାତିର ବହୁତ ଲୋକ ଚୈତନ୍ୟପନ୍ଥୀ ହୋଇ ଶାବନ୍ଧିଂସା ଏକବାର ଛାଡ଼ିଦେଲେ । ଯେଉଁ ବ୍ରାହ୍ମଣ ସାତ୍ତ୍ୱିକ ଖାଦ୍ୟକୁ ଖାଦ୍ୟ ମଧ୍ୟରେ ଶ୍ରେଷ୍ଠ ଆସନ ଦେଇଥିଲ; ସେ ଧର୍ମ ନାମରେ ପଶୁ ବଧ କରି ଭୁଣ୍ଡ ସୁଆଦ କଥାକୁ ଛାଡ଼ି ପାରିଲ ନାହିଁ ଓ ତାର କୌଳିକ ଆହାରକୁ ଜଳାଞ୍ଜଳି ଦେଇ ଗୋଟିଏ ପେଟୁ ସାଜିଲ; ଏହା ଗୋଟାଏ ନତାନ୍ତ ଲଜ୍ଜାର କଥା ବୋଲି ଆମ୍ଭେମାନେ ମନେ କରିଥିଲୁଁ । ପଶ୍ଚିମା ଓ ଦକ୍ଷିଣିଆ ବ୍ରାହ୍ମଣମାନେ ଆମ ଓଡ଼ିଆ ବ୍ରାହ୍ମଣମାନଙ୍କର ଏହି ମାଛମାଂସଖିଆ କଥାଟା ଦେଖି ସେମାନଙ୍କୁ ଘୃଣା ନ କଲେ ମଧ୍ୟ ଆଦୌ ପସନ୍ଦ କରନ୍ତି ନାହିଁ । ହନ ଥିଲା ଆମ୍ଭେମାନେ ମଧ୍ୟ ସେହିପରି ଆମ ଓଡ଼ିଆ ବ୍ରାହ୍ମଣମାନଙ୍କର ମାଛମାଂସ ଖାଇବା କଥାଟିକୁ ବଡ଼ ନାପସନ୍ଦ କରୁଥିଲୁଁ ।

**ମାଛମାଂସ କାହିଁକି ଖିଆଯାଏ ?**—ଆମେ ଯାହା ଖାଉଁ—ଭାତ, ଡାଲି, ତରକାରି, ମାଛ, ମାଂସ ଓ ଅଣ୍ଡା ପ୍ରଭୃତି—ସେଥିରେ ଛଅ ପ୍ରକାର ଜନଷ ଥାଏ । ଏହି ଛଅ ପ୍ରକାର ଜନଷ ମଧ୍ୟରୁ ତିନ ପ୍ରକାର ଜନଷ ଦେହରୂପ ଇଞ୍ଜିନକୁ ଚଳାଇବାର ଶକ୍ତି ଦିଏ । ଆଉ ତିନ ପ୍ରକାର ଜନଷ ଦେହକୁ ଗଢ଼େ, ବଢ଼ାଏ ଓ ତାହାର କ୍ଷୟ ପୂରଣ କରେ । ଯେଉଁ ଖାଦ୍ୟରେ ଏହି ଶେଷୋକ୍ତ ତିନ ପ୍ରକାର ଜନଷ ନାହିଁ, ସେ ଖାଦ୍ୟ ଖାଇଲେ ଲୋକ ଦୁର୍ବଳ ହୋଇପିବ ଓ ତାକୁ ନାନା ପ୍ରକାର ରୋଗ ଆକ୍ରମଣ କରିବ । ଏହି ତିନ ପ୍ରକାର ଗଠନଶୀଳ ଖାଦ୍ୟ ମଧ୍ୟରେ ପୁଷ୍ଟିସାର ଏକ ଅଟେ । ଏହା ଦୁଧ, ମାଛ, ମାଂସ ଅଣ୍ଡା ଓ ଡ଼ାଲିରେ ଭାତ, ରୁଟି ପ୍ରଭୃତି ଅପେକ୍ଷା ବେଶୀ ଥାଏ ।

ଯେଉଁମାନେ ଦୁଧ, ମାଛ, ମାଂସ, ଅଣ୍ଡା ପାଇପାରନ୍ତି ନାହିଁ, ସେମାନେ ମୁଗ, ବରି ପ୍ରଭୃତି ଡ଼ାଲିରୁ ଏହା ସଂଗ୍ରହ କରନ୍ତି; କିନ୍ତୁ ପରୀକ୍ଷାଦ୍ୱାରା ଦେଖାଯାଇଛି ଯେ ଡ଼ାଲିର ପୁଷ୍ଟିସାର ଦୁଧ, ମାଛ, ମାଂସର

ପୁଷ୍ଟିସାର ପଚ ଆମ ଦେହ ନିମିତ୍ତ ସେତେ ଉପଯୋଗୀ ନୁହେଁ । ପୁଷ୍ଟିସାର ମଧ୍ୟରେ ଦୁଧ ପୁଷ୍ଟିସାର ସବୁଠାରୁ ବଢିଆ ଅଟେ । ତା ତଳକୁ ଅଣ୍ଡାର, ଅଣ୍ଡା ତଳକୁ ମାଛ ଓ ମାଂସର, ମାଛ ମାଂସ ତଳକୁ ଡ଼ାଲିର ପୁଷ୍ଟିସାର ସ୍ଥାନ ପାଏ ।

ଦୁଧ କମ୍ବା ମାଛ ମାଂସ ଯେଉଁ ଲୋକ କମ୍ବା ଜାତି ଦେହର ଦରକାର ଅନୁସାରେ ଖାଇପାରନ୍ତି, ସେ ଲୋକର କମ୍ବା ଜାତିର ସ୍ୱାସ୍ଥ୍ୟ ଓ ବୃଦ୍ଧି ତାହା ନ ପାଇବା ଲୋକ କମ୍ବା ଜାତିଠାରୁ ସରସ ହୁଏ । ମସ୍ତିଷ୍କ କମ୍ବା ବୁଦ୍ଧି ନିମିତ୍ତ ଦୁଧଠାରୁ ବଳି ସୁନ୍ଦର ଖାଦ୍ୟଟିଏ ଆଉ ନାହିଁ । ଯେ ଆବଶ୍ୟକ ପରିମାଣରେ ଦୁଧ ଦହି ଖାଇପାରିବ, ତାହାର ମାଛ, ମାଂସ, ଅଣ୍ଡା କମ୍ବା ଡାଲି ଦରକାର ନାହିଁ । ଯେ ଦୁଧ ଦହି ଖାଇପାରିବ ନାହିଁ, ଉପଯୁକ୍ତ ପୁଷ୍ଟିସାର ନିମିତ୍ତ ତାହାକୁ ଅଣ୍ଡା, ମାଛ କମ୍ବା ମାଂସର ଆଶ୍ରୟ ନେବାକୁ ପଡ଼ିବ । ଯେଉଁମାନେ ଦୁଧ ଦହି ନ ଖାଇ ମାଛ, ମାଂସ, ଅଣ୍ଡା ପ୍ରଭୃତି ଛାଡ଼ିଦିଅନ୍ତି, ସେମାନେ ସୁସ୍ଥ ରହିପାରନ୍ତି; କିନ୍ତୁ ବଳୁଆ ଓ ବୁଦ୍ଧିଆ ହୋଇପାରିବେ ନାହିଁ । ଏହା ନାନା ପ୍ରକାର ପରୀକ୍ଷାଦ୍ୱାରା ଦେଖାଯାଇଛି ଓ ପୃଥିବୀର ଇତିହାସ ମଧ୍ୟ ଏହାର ପ୍ରମାଣ କରୁଅଛି ।

**ଦୁଧ, ଦହି ଓ ଓଡ଼ିଶାର ଜଳବାୟୁ**—ଦୁଧ, ଦହି ପ୍ରଚୁର ମିଳେ ସେହି ସ୍ଥାନରେ, ଯେଉଁଠାରେ ଭଲ ଦୁଧିଆଳୀ ଗାଈ ରହିପାରନ୍ତି । ଓଡ଼ିଶାର ଜଳବାୟୁରେ ଭଲ ଦୁଧିଆଳୀ ଗାଈ ରହିପାରିବେ ନାହିଁ, ବଙ୍ଗ ଦେଶ ଓ ଆସାମରେ ମଧ୍ୟ । ଯେଉଁ ସ୍ଥାନରେ ଘାସରେ ପ୍ରଚୁର ପରିମାଣରେ ଲୁଣ ମିଶି ରହିଥାଏ, ଭଲ ଗାଈ ସେହି ସ୍ଥାନରେ ମିଳନ୍ତି । ଓଡ଼ିଶା, ବଙ୍ଗ ଓ ଆସାମ ପ୍ରଦେଶରେ ପ୍ରଚୁର ବର୍ଷା ହେଉଥିବାରୁ ଭୂଇଁରେ ଯେଉଁ ଲୁଣ ଅଛି, ତାହା ବର୍ଷାପାଣିରେ ଧୋଇ ହୋଇଯାଏ; ତେଣୁ ଏ ପ୍ରଦେଶମାନଙ୍କରେ ଘାସ ଗାଈମାନଙ୍କ ନିମିତ୍ତ ଅଧିକ ପୁଷ୍ଟିକର ନୁହେଁ ।

ଭାରତବର୍ଷର ଉତ୍ତର-ପଶ୍ଚିମାଞ୍ଚଳରେ ଓଡ଼ିଶା ବଙ୍ଗ, ପ୍ରଭୃତି ତୁଳନାରେ ବହୁତ କମ୍ ବର୍ଷା ହୁଏ; ତେଣୁ ସେ ସ୍ଥାନର ଘାସରେ ବେଶୀ ଲୁଣ ଥାଏ ବୋଲି ସେ ଅଞ୍ଚଳରେ ଆମ ଦେଶର ସବୁଠାରୁ ବେଶୀ ଦୁଧିଆଳୀ ଗାଈ ଦେଖାଯାନ୍ତି । ସେ ଗାଈ ଏଠାକୁ ଆଣିଲେ ସେମାନଙ୍କର

ଦୁଧଦେବା ଶକ୍ତି ଅଳ୍ପେ ଅଳ୍ପେ କମିଯାଏ; ପୁଣି ବୃଷ୍ଟିବହୁଳ ଅଞ୍ଚଳରେ ଗୃଷଜମି ବହୁତ ରହେ ଏବଂ ଗୋଚର ପଡ଼ିଆ ଖୁବ୍ କମ୍ ରହିବାରୁ ଗୋରୁ ଗାଈ ଭଲ ବଢ଼ନ୍ତି ନାହିଁ । ଅଷ୍ଟ୍ରେଲିଆରେ ବେଶୀ ବର୍ଷା ହୁଏ ନାହିଁ । ସେଥି ସକାଶେ ସେଠାର ଗାଈମାନେ ବଡ଼ ଦୁଧିଆଳୀ । ସେଠାକାର ସଲ୍ଟବୁସ (Salt-bush) ବା ଲୁଣିଆ ଘାସବୁଦା ଗୋଟିଏ ବଡ଼ ପୁଷ୍ଟିକର ଗୋ-ଖାଦ୍ୟ । ଆମର ଏଠାରେ ଯେତେବେଳେ ପ୍ରଚୁର ଦୁଧ ଦହି ମିଳିବ ନାହିଁ, ସେତେବେଳେ ଦେହକୁ ସୁସ୍ଥ ଓ ସବଳ ରଖିବା ନିମିତ୍ତ ଆମକୁ **ମାଛ, ମାଂସ ଖାଇବାକୁ ପଡ଼ିବ ହିଁ ପଡ଼ିବ ।** ମାଛ ମାଂସ ନ ଖାଇବା ଲୋକ ସୁସ୍ଥ ରହିପାରନ୍ତି; କିନ୍ତୁ ବଳ ଓ ଜନନଶକ୍ତି ଦେହରେ ଯଥେଷ୍ଟ ରହିପାରିବ ନାହିଁ; ତେଣୁ ଓଡ଼ିଆ ବ୍ରାହ୍ମଣ ମାଛ, ମାଂସ ଖାଇବାକୁ ଘୃଣା କରି ନାହିଁ । ବିଜ୍ଞାନ ଏବେ ଯାହା ବାହାର କଲା, ଆମର ପୂର୍ବପୁରୁଷମାନେ ବହୁକାଳୁ ସେଗୁଡ଼ିକ ଖାଲି ଜାଣି ନ ଥିଲେ, ଜାଣି ତାହାକୁ ଅଙ୍ଗରେ ଲଗେଇ ତାହା ଅନୁସାରେ ବ୍ୟବସ୍ଥା କରିଦେଇ ଯାଇଛନ୍ତି ।

**ମାଛ, ମାଂସ ଓ ଦେବୀପୂଜା**—ତେବେ ପ୍ରଶ୍ନ ହୋଇପାରେ, ଭଲ ଦୁଧ ଦହି ମିଳିଲା ନାହିଁ ବୋଲି ବ୍ରାହ୍ମଣ ମାଛ ମାଂସ ଖାଇଲା; ଖାଲି ଖାଇଥିଲେ କ'ଣ ହୋଇ ନ ଥାନ୍ତା ? ତାକୁ ଏପରି ବଳି ଦେଇ ଖାଇବାର ଅର୍ଥ କ'ଣ ? ବ୍ରାହ୍ମଣ ହିନ୍ଦୁ; ସେ କେତେ ହଜାର ଦେବତାଙ୍କୁ ପୂଜା କରେ । ଦେବତା ଆଗରେ ବଳି ନ ଦେଇ ଦେବୀ ଆଗରେ ବଳି ଦେବାର ଅର୍ଥ କ'ଣ ? ପୁରୁଷ କଠୋର ଏବଂ କର୍କଶ ହୋଇପାରେ, ପୁରୁଷ ରାଗରେ ରକ୍ତ ପିଇ ଦେଇପାରେ । ଭୀମ ଦୁଃଶାସନର ରକ୍ତ ପିଇଥିଲେ; କିନ୍ତୁ ଦ୍ରୌପଦୀ ଦୁଃଶାସନଠାରୁ ବହୁତ ଗଞ୍ଜଣା ଓ ଅପମାନ ସହିଥିଲେ ସୁଦ୍ଧା ତାର ରକ୍ତ ପିଇ ନ ଥିଲେ, ରକ୍ତରେ ଦୁଃଶାସନଦ୍ୱାରା ମୁକୁଳା ହୋଇଥିବା ବେଣୀକୁ ବାନ୍ଧିଥିଲେ କେବଳ । ତେବେ କେଉଁ ଉପାୟରେ ବ୍ରାହ୍ମଣ ଦେବୀ ଆଗରେ ଜୀବର ତଣ୍ଟି କାଟି ରକ୍ତ ଦେବୀଙ୍କୁ ପିଇବାକୁ ଦେଲା ? ଏ କଥାଟା ବଡ଼ ବୀଭତ୍ସ । ଯେଉଁ ଦେବୀ ରକ୍ତ ପିଏ, ସେ ଦେବୀ ନୁହେଁ—ପୂତନା କିମ୍ବା ତାଡ଼କା । କଥାଟା ବିଭତ୍ସ ଭାବିବାକୁ, ଶୁଣିବାକୁ ଏବଂ ଦେଖିବାକୁ ମଧ୍ୟ; କିନ୍ତୁ ଟିକିଏ ବୁଝିକରି ଭାବିଲେ ଜଣାପଡ଼ିବ ଯେ ଏଥିରେ ଏକ ମସ୍ତବଡ଼ ସୂଚନା ଲୁଚିକରି ରହିଅଛି ।

ଆମକୁ ଯେଉଁ ମଶା କାମୁଡ଼ନ୍ତି, ସେମାନେ ମାଈ; ଅଣ୍ଡିରା ନୁହନ୍ତି । ଅଣ୍ଡିରା ମଶା ଫଳରସ ଖାଇ ବଞ୍ଚେ । ମାଈ ମଶାର ଦରକାର ହୁଏ ରକ୍ତ । ରକ୍ତ ନ ପିଇଲେ ସେ ଗର୍ଭ ଧରିପାରିବ ନାହିଁ । ଜଙ୍ଗଲରେ ବାଘୁଣୀ ବାଘ ଅପେକ୍ଷା ବେଶୀ ଉପଦ୍ରବ କରେ । ବାଘ ଅପେକ୍ଷା ବାଘୁଣୀର ଅଧିକ ଖାଦ୍ୟ ଲୋଡ଼ା । ଆମ୍ଭେମାନେ ଆଗେ କହିଅଛୁଁ, ପ୍ରତ୍ୟେକ ଖାଦ୍ୟରେ ଛଅ ପ୍ରକାର ଜିନିଷ ଥାଏ । ଏହି ଛଅ ପ୍ରକାର ମଧ୍ୟରେ ଯେଉଁ ତିନୋଟି ଦେହ ଗଢ଼ିବାରେ ଓ କ୍ଷୟ ପୂରଣ କରିବାରେ ଲାଗେ—ପୁଷ୍ଟିସାର, ଜୀବନିକା ଓ ଧାତୁସାର, ସେହି ତିନି ପ୍ରକାର ଖାଦ୍ୟ ଯେଉଁଥିରେ ଅଧିକ ଅଛି, ତାହା ସ୍ତ୍ରୀର ଯେତେ ଲୋଡ଼ା, ପୁରୁଷର ସେତେ ନୁହେଁ; କାରଣ ସ୍ତ୍ରୀ ଦେହ ଭିତରୁ, ସ୍ତ୍ରୀର ରକ୍ତ, ମାଂସ, ହାଡ଼ରୁ ଆଉ ଗୋଟିଏ ଲେଖାଏଁ ପ୍ରାଣୀ ବାହାରିବେ ଓ ସେ ପ୍ରାଣୀଟିମାନେ ପ୍ରାୟ ବର୍ଷେପର୍ଯ୍ୟନ୍ତ ସ୍ତ୍ରୀରକ୍ତରୁ ବାହାରୁଥିବା ଦୁଧ ଖାଇ ବଞ୍ଚିବେ । ପୁଷ୍ଟିସାର, ଧାତୁସାର ଜୀବନିକାବହୁଳ ଖାଦ୍ୟ ଅଟେ ଦୁଧ, ଦହି, ମାଛ, ମାଂସ, ଅଣ୍ଡା, ଗଜାମୁଗ ପ୍ରଭୃତି । ଦୁଧ, ଦହି ଯେଉଁ ସ୍ଥାନରେ ପ୍ରଚୁର ନ ମିଳେ, ସେ ସ୍ଥାନରେ ମାଛ, ମାଂସ ନ ଖାଇଲେ ମା କୋଳ ନ ପୂରୁଣୁ ବୁଢ଼ୀ ହୋଇ ବସିବ ଓ ଆମ ଓଡ଼ିଶାର ହଜାର ହଜାର ଯୁବତୀ ମା ଏପରି ବୁଢ଼ୀ ହୋଇ ଯାଉଅଛନ୍ତି । ଦେହର ସାର ରକ୍ତ, ମାଂସ, ହାଡ଼ କ୍ଷୟକରି ସେ ଜନ୍ମକରୁଛି ପିଲା, ଯେ ଭବିଷ୍ୟତର ସମାଜ ଗଢ଼ିବେ, କିନ୍ତୁ ସେହି ରକ୍ତ, ମାଂସ, ହାଡର କ୍ଷୟପୂରଣ ଲାଗି ସେ ପାଉ ନାହିଁ ଯଥେଷ୍ଟ ପୁଷ୍ଟିକର ଖାଦ୍ୟ । ତାହାର ଲୋଡ଼ା ବହୁତ ଲୋଡ଼ା, ଅପରିହାର୍ଯ୍ୟ ଭାବରେ ଲୋଡ଼ା, ସ୍ୱାଭାବିକ ଭାବରେ ଲୋଡ଼ା—ଦୁଧ' ଦହି, ମାଛ, ମାଂସ ପ୍ରଭୃତି । ତେଣୁ ବଳି ଦିଆଯାଏ ଦେବୀ ପାଖରେ—ଦେବ ପାଖରେ ନୁହେଁ । ଏହି ପ୍ରଥା ସେହି ଅଞ୍ଚଳମାନଙ୍କରେ ଅଧିକ ପ୍ରଚଳିତ, ଯେଉଁ ଅଞ୍ଚଳରେ ଅଧିକ ବର୍ଷା ନିମିତ୍ତ ଭଲ ଗାଈ ରହିପାରନ୍ତି ନାହିଁ—ଯଥା-ଓଡ଼ିଶା, ବଙ୍ଗ ଓ ଆସାମ । "ଯାହା ଦେବେ ତାହା ଦେହେ"—ଆମର ଏହି ଓଡ଼ିଆ କଥାଟିର ଅର୍ଥ ଆମ୍ଭେମାନେ ବର୍ତ୍ତମାନ ବେଶ୍ ବୁଝିପାରୁଅଛୁଁ । ଯାହା ମନୁଷ୍ୟର ଦେହ ନିମିତ୍ତ ହିତ, ପ୍ରକୃତରେ ହିତ, ତାହା ସେ ଦେବ କନ୍ୟା ଦେବୀ ପାଖରେ ଅର୍ପଣ କରେ ।

**ଦଶହରା**—ଶରତ୍ ଋତୁର ଶେଷ ଅର୍ଥାତ୍ ଶୀତଦିନର ଆରମ୍ଭରେ ପୂଜାଟିଏ ପଡ଼ିଥାଏ । ଏପରି ଗୋଟିଏ ସମସ୍ତ ବଳି ନିମିତ୍ତ

କାହିଁକି ବସ୍ତଗଲ, ଦେଖାଯାଉ । ଥଣ୍ଡା ପଡ଼ିଲେ ଦେହର ଭଙ୍ଗାଗଢ଼ା କାମ (Metabolism) ବଢ଼ିଯାଏ । ଗାଧୋଇସାରିଲେ ସେଥି ନିମିତ୍ତ ଭୋକ ହୁଏ । ଶୀତଦିନେ ଏହି ଭଙ୍ଗାଗଢ଼ା କାମ ବଢ଼ୁଥିବାରୁ ଦେହ ପୁଷ୍ଟିକର ଖାଦ୍ୟ ଦରକାର କରେ । * ଶୀତ ଆରମ୍ଭରେ ସ୍ତ୍ରୀଲୋକମାନଙ୍କର ପୁଷ୍ଟି ସାରବହୁଳ (Protein) ଖାଦ୍ୟ ନିତାନ୍ତ ଆବଶ୍ୟକ, ଏକଥା ଏହି ପୂଜା ସମାଜକୁ ସୁଚାଇ ଦେଉଅଛି । ସ୍ତ୍ରୀ ଯଦି ସୁସ୍ଥ ସବଳ ନ ହୁଏ, ତାର ଦେହର ରକ୍ତ ଯଦି ସତେଜ ନ ହୁଏ, ସେ କିପରି ଭଲ ପିଲା ଜନ୍ମ କରିବ ? ହାଣୁଆ ପିଲା ଜନ୍ମ ନ ହେଲେ ସମାଜ ବା ଦେଶ କିପରି ହାଣୁଆ ହେବ ? ଭୂଇଁରେ ଆମେ ସାର ଦେଇ ହାଣୁଆ ଗଛ ଉଠାଉଚୁଁ । କିନ୍ତୁ ଆମ ମଣିଷ-ଗଛର ଯେଉଁ ଭୂଇଁରୁ ବାହାରିବ, ସେଥିପ୍ରତି ଧ୍ୟାନ ଦେଉ ନାହୁଁ । ଆମର ପୂର୍ବପୁରୁଷମାନେ ଏକଥା ଭଲରୂପେ ବୁଝି ଏଗୁଡ଼ିକ ପ୍ରଚାର ଓ ଭାବ-ଆଦାନପ୍ରଦାନ-ଅଭାବ-ଯୁଗରେ କିପରି ସ୍ଥାୟୀ ହୋଇ ରହିବ ଓ ସମସ୍ତେ କରିପାରିବେ, ତାହା ଭାବି ଭାବି ଧର୍ମ ଦେହରେ ଭର୍ତ୍ତି କରିଦେଇ ଗଲେ । ସେ ଯୁଗରେ କୌଣସି ଭଲ କଥାକୁ ସ୍ଥାୟୀଭାବରେ ପ୍ରଚାର କରିବା ନିମିତ୍ତ ଧର୍ମର ସେବାପୂଜା ଏ ଯୁଗର ଖବରକାଗଜ, ବେତାରବାର୍ତ୍ତା ପରି କାମ କରୁଥିଲା । ଦଶହରା 'ଦଶାହରଣ' ଶବ୍ଦରୁ ହୋଇଅଛି । ଦଶାହରଣ ବା ଖରାପ ଅବସ୍ଥାକୁ ଦେଶରୁ ପୋଛିଦେବା ଦେବୀପୂଜା ଉପରେ ନିର୍ଭର କରେ । ଏ ଦେବୀ ମୃଣ୍ମୟୀ ମୂର୍ତ୍ତି ନୁହନ୍ତି—ଆମ ଘରେ ଘରେ ବିରାଜୁଥିବା ରକ୍ତମାଂସମୟୀ ମୂର୍ତ୍ତି—ଆମର ଝିଅ, ଆମର ବୋହୂ, ଆମର ଭଉଣୀ, ଆମର ମା, ଆମର ଖୁଡ଼ୀ, ବଡ଼ ମା । ଏମାନେ ପୂଜା ନ ପାଇଲେ ସମାଜ ଧ୍ୱଂସ ହେବ ଓ ଦେଶ ଧ୍ୱଂସ ହେବ । ଦେବକଳ୍ପ ମନୁ କେବେହେଁ ଅତିରଞ୍ଜିତ କଥା କହି ନାହାନ୍ତି, "ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ ।" ପ୍ରକୃତରେ ଯେଉଁଠାରେ ନାରୀମାନେ ପୂଜା ପାଆନ୍ତି ବା ସନ୍ତୁଷ୍ଟ ହୁଅନ୍ତି, ଦେବତା ଭଳିଆ ପିଲା ସେଠାରେ ଜନ୍ମ ହୋଇଥାନ୍ତି । ସେମାନେ ଯେଉଁଠାରେ ଉପଯୁକ୍ତ ପୂଜା ଓ ବ୍ୟବହାର ପାଆନ୍ତି ନାହିଁ, ସେଠାରେ

---

ହିନ୍ଦୀ ପ୍ରବଚନରେ ଅଛି— 'ପୁଷ ମାଘ ମେ ଯୋ ନୈ ଖାତା ଓ ନୈ ଖାତା ।" ପୁଷ ମାସରେ କେବଳ ଜଗନ୍ନାଥ ମନ୍ଦିରରେ ପହିଲ ଭୋଗ ଟେରେଇ ହୁଆଯାଏ ।

ସମସ୍ତ କାର୍ଯ୍ୟ ନିଷ୍ଫଳ ହୁଏ । ଅକର୍ମା ଜନ୍ମହେଲେ କେଉଁ କାର୍ଯ୍ୟ ସଫଳ ହେବ ?

ଦେବୀ ଦଶଭୁଜା କାହିଁକି ? ଦଶଦିଗ ବା ସମସ୍ତ ସମାଜର ସାମୁହିକ ଉଦ୍ୟମରେ ସମସ୍ତ ଦେବୀ ଶକ୍ତିଶାଳିନୀ ହେବେ, ତେବେଯାଇ ଦେଶର ଦଶା ହରଣ ହେବ । ଦେବତାମାନଙ୍କ ଦ୍ୱାରା ଭିନ ଭିନ ହୋଇ ଦତ୍ତ ସମ୍ମିଳିତ ଶକ୍ତିରୁ ମା ଦୁର୍ଗା ଜନ୍ମ ହୋଇଥିଲେ ଓ ଶକ୍ତି ପାଇଥିଲେ । ସେହିପରି ସମାଜର ପ୍ରତ୍ୟେକ ଘରେ ଦୁର୍ଗା ପରି ଦେବୀ ହବାଜିବା ନିମିତ୍ତ ଓ କାର୍ତ୍ତିକକୁମାରଙ୍କ ପରି ପୁଅ ଖେଳିବା ନିମିତ୍ତ ସମାଜର ବା ସମସ୍ତଙ୍କର ଦଳଗତ ଉଦ୍ୟମ ଆବଶ୍ୟକ । ଏହି ଦଳଗତ ଉଦ୍ୟମର କ୍ଷୀଣ ଆଭାସ ସ୍ୱରୂପ ମନସାଧଦିଆ ସମାଜରେ ଏବେ ସୁଦ୍ଧା ରହିଅଛି । ସାଇପଡ଼ିଶାରେ କେହି ଗର୍ଭ ହେବାର ଜଣାପଡ଼ିଲେ ଗର୍ଭିଣୀକୁ ସମସ୍ତେ ମନସାଧ ଦେଇଥାନ୍ତି । ଉପଯୁକ୍ତ ଭାବରେ ଖାଇପିଇ ଆମ ଘରର ରକ୍ତମାଂସମୟୀ ଦେବୀମାନେ ଟାଣୁଆ ହୋଇପାରିଲେ ଯମର ବାହନ ମହିଷ (ମହିଷାସୁର) ଅର୍ଥାତ୍ ଯମ ବା ଅକାଳମୃତ୍ୟୁ ଆକ୍ରମଣରୁ ସମାଜ ରକ୍ଷା ପାଇବ । ※

※ ଏ ପ୍ରବନ୍ଧଟି ଲେଖକଙ୍କର "ବେଦର ଆଲୋକ" ନାମକ ପୁସ୍ତକରୁ ନିଆଯାଇଛି ।

# ଦୋଳପୂର୍ଣ୍ଣିମା

ଫଗୁଣମାସ ବେଳକୁ ବର୍ଷକେ ଥରେ ଆସନ୍ତି ଋତୁରାଜ ବସନ୍ତ । ଆମ୍ବଗଛର ଗହଳ ଡାଳରେ ଲୁଚିବସି କୋଇଲି ତାର ଲଳିତ ମଧୁର କୁହୁତାନରେ ଋତୁରାଜଙ୍କର ଆବାହନ-ଗୀତିକା ଶୁଣାଏ । ବୃକ୍ଷମାନେ ନୂତନ ପଲ୍ଲବରେ ମଣ୍ଡିତ ହୋଇ ଅପୂର୍ବ ଶ୍ରୀ ଧାରଣ କରନ୍ତି । ଆମ୍ବଗଛରେ ବଉଳ ହୁଏ । ମନମତାଣିଆ ସୁଲୁସୁଲିଆ ପବନ ବାଆ ଏହି ସମୟରୁ ବହେ ଦକ୍ଷିଣ ଦିଗରୁ । ପୁଷ୍ପପଲ୍ଲୀ ଫୁଟିଯାଏ ମଲ୍ଲୀର ମହକରେ । ଧୀର ସମୀରର ସନସନ ସ୍ୱନ ସଙ୍ଗେ ତାଳ ଦେଇ ନାଚେ ପଦ୍ମ । ପୁଷ୍ପଶ୍ରେଣୀ ହସିଉଠେ । କୋକିଳର କୂଜନ ଓ ଭ୍ରମରର ମଧୁର ଗୁଞ୍ଜନ ଭରିଦିଏ ସମସ୍ତଙ୍କ ପ୍ରାଣରେ ଅପୂର୍ବ ଉନ୍ମାଦନା । ଏତିକିବେଳେ—

"ବଣଇ ଯେ ଆହା ଶ୍ୟାମଳ ଚମ୍ପକ
ପାଦପେ ହେମ କଳିକା
ଋତୁରାଜଙ୍କର ଆରାଧନା ପାଇଁ
ସେ କିନା ପ୍ରଦୀପ ଶିଖା ।
ମଲ୍ଲିକା-କୋରକ— ଶଙ୍ଖ ବଜାଉଛି
ଷଟ୍‌ପଦ ପୁଷ୍ପଲମ୍ପଟ,
ହେମଗୋଷ୍ପ ସୂର୍ଯ୍ୟ- ମୂର୍ତ୍ତି ଧରିଅଛି
ଛାମୁରେ ସ୍ୱର୍ଣ୍ଣ ଆଳଟ ।"

—ରାଧାନାଥ

ଚହୁଁ ଦଳବଳ ସାଜ ବେଶଭୂଷା ଖଞ୍ଜି ବିଜେ କରନ୍ତି ଋତୁସମ୍ରାଟ ବସନ୍ତ । ଏତିକିବେଳେ ପଡ଼େ ଦୋଳଯାତ୍ରା

ହିନ୍ଦୁର ତ ବାର ମାସରେ ତେର ପର୍ବ । ତେର ପର୍ବ କାହିଁକି, ଆହୁରି ବେଶୀ । କଥାଟା ଏହି ଯେ ସବୁବେଳେ କାମଧନ୍ଦାରେ

ଲଗିରହିଲେ ତ ହେବ ନାହିଁ, ଜୀବନ ନୀରସ ହୋଇଉଠିବ । ଟିକିଏ ଆମୋଦପ୍ରମୋଦ, ଟିକିଏ ହସଖୁସି ମଣିଷର ଲୋଡ଼ା । ସେଥିପାଇଁ ସେ ଅତି ବିଚକ୍ଷଣ ଭାବରେ ସୃଷ୍ଟି କରିଛି କେତେ ନୂଆ ପର୍ବ । ଦୋଳଯାତ୍ରା ସେଥିମଧ୍ୟରୁ ଗୋଟିଏ । ବସନ୍ତ-ଉତ୍ସବ ସାଙ୍ଗକୁ ଲୋକଙ୍କର ମଧ୍ୟ ଏହି ଦୋଳଯାତ୍ରା ପ୍ରସଙ୍ଗରେ ଆନନ୍ଦ ଉତ୍ସବ ଲଗିଯାଏ ।

"ଏ ସମୟେ ପୁଣି ଦୋଳ ଚର୍ଚ୍ଚରୀର
ଲାଗଇ ଭାରି ଗହଳ
ଫଗୁ ବର୍ଣ୍ଣୋଦକେ ସର୍ବାଙ୍ଗ ରଞ୍ଜିତ
ବିହରନ୍ତି ଯୁବାଦଳ ।"

—ରାଧାନାଥ

ବିମାନରେ ବସି ରାଧାକୃଷ୍ଣ ପ୍ରତିମା ବାହାରନ୍ତି । ଫଗୁଆ ହୁଏ । ଜାଗାକୁ ଜାଗା ମିଳନ ହୁଏ । ମେଳନ ଖାଲି ଯେ ଠାକୁରଙ୍କର ହୁଏ ତାହା ନୁହେଁ, ଲୋକମାନଙ୍କର ବି ମେଳନ ହୁଏ । ବନ୍ଧୁ-ଦର୍ଶନ ହୁଏ । ନାନା ପ୍ରକାର ପଦାର୍ଥର କିଣା-ବିକା ମଧ୍ୟ ହୁଏ । ଏକ ଗାଁର ଲୋକେ ଅନ୍ୟ ଗାଁର ଲୋକଙ୍କ ସହିତ ଭାବ ଆଦାନ-ପ୍ରଦାନ କରନ୍ତି । ପରସ୍ପର ମଧ୍ୟରେ ସ୍ନେହ-ସୌହାର୍ଦ୍ଦ୍ୟ ବଢ଼େ । ଏହାଦ୍ୱାରା ଛନ୍ଦୁର ଏହି ପର୍ବପର୍ବାଣି ସୃଷ୍ଟି ପରୋକ୍ଷ ଭାବରେ ଏକ ସାମାଜିକ ଉପକାର ମଧ୍ୟ କରୁଛି । ଭଲରେ ମନ୍ଦିରେ ଲୋକେ ସବୁକାଳେ ଯା'ନ୍ତି ମନ୍ଦିରକୁ ଦିଅଁ ଦର୍ଶନ କରିବାକୁ; କିନ୍ତୁ କେବଳ ଏହି ଦୋଳଯାତ୍ରା ବେଳେ ଦିଅଁ ବିମାନରେ ବସି ଲୋକଙ୍କ ଦୁଆରକୁ ଆସନ୍ତି । ଗ୍ରାମବାସୀମାନେ ଜଣ ଜଣ କରି ଭୋଗ ଦିଅନ୍ତି, ଖୁସି ହୁଅନ୍ତି । ନୈବେଦ୍ୟ ମଧ୍ୟରେ ଥାଏ ଚଣା । ଏହାର ଅବଶ୍ୟ ହେତୁ ଅଛି । ଏହି ସମୟରେ ଠାକୁରଙ୍କୁ ଏହା ଭୋଗ ଦିଆଯାଏ । ଆଜି ମଧ୍ୟ ଖୁସିରେ ଲୋକମାନେ ଅବିର ବୋଳାବୋଳି ହୁଅନ୍ତି ।

ଏହି ଋତୁରେ ବସନ୍ତରୋଗର ପ୍ରାଦୁର୍ଭାବ ସ୍ଥାନେ ସ୍ଥାନେ ଦେଖାଯାଇଥାଏ । ଦୋଳ ଉତ୍ସବରେ ଲୋକମାନେ ଯେଉଁ ଅବିର ବୋଳାବୋଳି ହୁଅନ୍ତି, ସେଥିରେ ଥାଏ ବସନ୍ତ-ପ୍ରତିଷେଧକ ଗୁଣ । ନାଲି ରଙ୍ଗରେ ମଧ୍ୟ ଉକ୍ତ ଗୁଣ ଥାଏ । ତେବେ ଏଥିରେ ବସନ୍ତପ୍ରତିଷେଧକ

ଗୁଣ ଅଛି ବୋଲି ଲୋକମାନେ କେବେହେଲେ ନିଜେ ନିଜେ ଅବଶ୍ୟ ଅବିର ବୋଲି ବୁଝନ୍ତି ନାହିଁ କିମ୍ବା ନିଜ ନାଳିପାଣି ଦେହରେ ପକାନ୍ତି ନାହିଁ । ସେଥିପାଇଁ ଏଭଳି ଏକ ସୁନ୍ଦର ବ୍ୟବସ୍ଥାକୁ ଆମର ସାମାଜିକ ବିଧି-ବିଧାନ ମଧ୍ୟରେ ଏପରି ବିଚକ୍ଷଣ କୌଶଳ ସହକାରେ ରଖି ଦିଆହୋଇଛି ଯେ ଲୋକେ ଆପଣା ମନଖୁସିରେ ବାଧ୍ୟତାମୂଳକଭାବେ ଏହା କରୁଛନ୍ତି । ଏହି ସାମାଜିକ ବ୍ୟବସ୍ଥାରେ ଏକାବେଳକେ ଦେବଭକ୍ତି, ରଙ୍ଗରସ ଓ ସ୍ୱାସ୍ଥ୍ୟ ରକ୍ଷା ସବୁ ସାଧିତ ହେଉଛି । ଏକ ସଙ୍ଗରେ ନାଚଦେଖା, କୋଳିଖିଆ··· ସବୁ । ବାସ୍ତବିକ ଏହା କି ଚମତ୍କାର ପରିକଳ୍ପନା !

ବସନ୍ତ ଋତୁ ଯେତେବେଳେ ତାର ସମସ୍ତ ସୌନ୍ଦର୍ଯ୍ୟ ଓ ବିଭବ ଭେନ ପୃଥିବୀରେ ବିରାଜ କରେ, ସେତେବେଳେ ଲୋକମାନଙ୍କ ମନରେ କାମ-ବିକାର ଜନ୍ମେ । କାମଶକ୍ତି ପ୍ରବଳ ହୋଇଉଠେ । ଏତିକିବେଳେ ମଣିଷର ଦରକାର ସଂଯମ । ତାହା କିପରି ହେବ ? ଏଥିପାଇଁ ଏହି ସମୟରେ ଚଣା ଖାଇବାର ସୁନ୍ଦର ପ୍ରଥା ରଖିଯାଇଅଛନ୍ତି ଆମର ପୂର୍ବାଚାର୍ଯ୍ୟମାନେ । ଚଣା ଖାଇବାଦ୍ୱାରା ମଣିଷ ଏହି ଦୁର୍ବାର କାମଶକ୍ତିର ପ୍ରଖରତାକୁ ରୋକିପାରେ । ଆୟୁର୍ବେଦରେ ଲେଖାଅଛି—"କଫ-ଶୋଣିତ-ପିତ୍ତଘ୍ନାଶ୍ଚଣକାଃ ପୁଂସ୍ତ୍ୱନାଶନାଃ ।" ଅର୍ଥାତ୍ ଚଣା କଫ, ପିତ୍ତ ଇତ୍ୟାଦିକୁ ନାଶ କରେ ଓ ମଣିଷର ଉଗ୍ର କାମପ୍ରବୃତ୍ତିକୁ ମଧ୍ୟ ଦମନ କରେ । ଏହା ଦିଅଁଙ୍କ ଭୋଗରୂପେ ଖଞ୍ଜାଯାଇଛି କେବଳ ମଣିଷକୁ ଏହି ସମୟରେ ସଂଯମ ଶିକ୍ଷାଦେବା ପାଇଁ । ଦିଅଁ ଲୋକଙ୍କ ଦୁଆର ମୁହଁରେ ଆସି ଯେପରି କହିଦେଇଯାନ୍ତି 'ଚଣା ଖାଅ' ।

ପୁରାଣରେ ଲେଖାଅଛି ଯେ ଯମୁନାକୂଳ ବୃନ୍ଦାବନରେ ଭକ୍ତିମତୀ ଗୋପୀମାନେ ଭଗବାନ ଶ୍ରୀକୃଷ୍ଣଙ୍କୁ ଲତା-ଦୋଳିରେ ବସାଇ ଝୁଲଉଥିଲେ ଏବଂ ତାଙ୍କ ସହିତ ଗୋପୀମାନେ ଭକ୍ତିରେ, ପ୍ରେମରେ ଚର୍ଚ୍ଚରୀ (ଲୁଚେଇ) ଖେଳିଥିଲେ । ଆକାଶରେ ପୂର୍ଣ୍ଣଚନ୍ଦ୍ରଙ୍କୁ ଦେଖିଲେ ସମୁଦ୍ରରେ ଯେପରି ଉତ୍ତାଳ ତରଙ୍ଗ ଉଠେ, ଠିକ୍ ସେହିପରି ଫଗୁଣ ପୂର୍ଣ୍ଣିମାର ଶୁଭ୍ର ରଜନୀରେ ବୃନ୍ଦାବନଚନ୍ଦ୍ର ଶ୍ରୀକୃଷ୍ଣଙ୍କ ସହିତ ଗୋପୀମାନଙ୍କର ରସ-ରଙ୍ଗର ତରଙ୍ଗ ଉଚ୍ଛୁଳି ଉଠୁଥିଲା । ଏହାକୁ କହନ୍ତି ବସନ୍ତ-ରାସ । ଏହି ରାସ କ୍ରୀଡ଼ା ପୂର୍ବରୁ

ଶ୍ରୀକୃଷ୍ଣ ବୃନ୍ଦାବନରେ ମେଢ଼ାସୁର ନାମକ ଏକ ରାକ୍ଷସକୁ ମାରି ତାର ବାସସ୍ଥାନ ପୋଡି ପକାଇଥିଲେ । ଏଥିପାଇଁ ଉକ୍ତ ପୌରାଣିକ ଘଟଣାର ସ୍ମୃତିରୂପେ ଦୋଳପୂର୍ଣ୍ଣିମା ଦିନ ଲୋକମାନେ 'ମେଣ୍ଢା-କୁଡ଼ିଆ' (ମେଢ଼ାକୁଡ଼ିଆ) ପୋଡ଼ନ୍ତି ଓ ରାତିରେ ରାଧାକୃଷ୍ଣଙ୍କୁ ବିମାନରେ ବସାଇ ବୁଲାନ୍ତି । ବିମାନ ଆଗରେ କଳସ ବସେ । ପାଞ୍ଜି ବୁଢ଼ା ଅବଧାନ କରି ଆଗାମୀ ବର୍ଷର ଶୁଭାଶୁଭ ପାଞ୍ଜି ପଢି ଶୁଣାନ୍ତି । ଗ୍ରାମବାସୀମାନେ ତାହା ଶୁଣନ୍ତି, ପ୍ରସାଦ ସେବନ କରନ୍ତି, ଖୁସି ହୁଅନ୍ତି ।

ହିନ୍ଦୁର ପ୍ରତ୍ୟେକ ପର୍ବ-ପର୍ବାଣି ଓ ଅନ୍ୟାନ୍ୟ ସାମାଜିକ ବିଧିବିଧାନ ନାନାପ୍ରକାର ରୂପକ (Allegory)ରେ ପୂର୍ଣ୍ଣ । ପ୍ରତ୍ୟେକରେ କିଛି ନା କିଛି ଭିତରେ ସାରକଥା ଥାଏ । ଲୋକ-ଶିକ୍ଷା ନିମିତ୍ତ ଏଗୁଡ଼ିକ ହୋଇଥାଏ । ଏହି ଦୋଳପୂର୍ଣ୍ଣିମା ପାଳନରେ ମଧ୍ୟ ଏହିପରି ଲୋକଶିକ୍ଷା ରହିଛି ।

ବସନ୍ତ ସମୟରେ ଶ୍ରୀକୃଷ୍ଣ ମାରିଥିଲେ 'ମେଢ୍ର' ନାମକ ଅସୁରକୁ । 'ମେଢ୍ର' ଶବ୍ଦର ଅର୍ଥ ପୁରୁଷର ଲିଙ୍ଗ । ବସନ୍ତ ଋତୁରେ ମନୁଷ୍ୟ ମନକୁ ଉଚ୍ଚାଟ କଳାଭଳି ସମସ୍ତ ଉପାଦାନ ପରିପୂର୍ଣ୍ଣ ଥିବା ହେତୁ ମନୁଷ୍ୟର 'ମେଢ୍ର' ବା ଲିଙ୍ଗର ଅଯଥା ବ୍ୟବହାର ଯେପରି ନ ହେବ, ଅର୍ଥାତ୍ ଏ ସମୟରେ କାମପ୍ରବୃତ୍ତିକୁ ଯେପରି ଅଯଥା ଚରିତାର୍ଥ କରା ନ ଯିବ, ଲୋକମାନଙ୍କୁ ଏହି ଶିକ୍ଷାଦେଇ ସଂଯମୀ ହେବାକୁ ସତର୍କ କରାଇଦେବା ନିମନ୍ତେ ଏପରି ରୂପକର ପରିକଳ୍ପନା ହୋଇଛି । ସ୍ତ୍ରୀଲୋକମାନଙ୍କୁ ଏହି ସମୟରେ ବ୍ରହ୍ମଚର୍ଯ୍ୟ-ବ୍ରତ ପାଳନ କରିବାକୁ ଶିକ୍ଷାଦେବା ପାଇଁ ଯେପରି 'ଶିବରାତି' କରାହୋଇଛି, ସେହିପରି ଦୋଳପୂର୍ଣ୍ଣିମା ଓ 'ମେଣ୍ଢାକୁଡ଼ିଆ-ପୋଡ଼ା' ପାଳନ କରାଯାଉଛି କେବଳ ପୁରୁଷମାନଙ୍କୁ ସଂଯମ ଶିକ୍ଷଦେବା ପାଇଁ । *

* ଏ ପ୍ରବନ୍ଧ "ଗାଁଭୂଇଁ" ନାମକ ମାସିକ ପତ୍ରିକାର ପ୍ରଥମ ସଂଖ୍ୟା (ଦୋଳପୂର୍ଣ୍ଣିମା, ୧୯୫୮)ରେ ବାହାରିଥିଲା ।

# ହିନ୍ଦୁର ସୂର୍ଯ୍ୟ-ଚନ୍ଦ୍ର ପୂଜା

ସୂର୍ଯ୍ୟ, ଚନ୍ଦ୍ର, ତାରା, ଗ୍ରହ ପ୍ରଭୃତି ସମସ୍ତେ ପୃଥିବୀ ପରି ଜଡ଼ ପଦାର୍ଥ । ମନୁଷ୍ୟର ଚେତନା ଅଛି, ସେମାନଙ୍କଠାରେ ନାହିଁ । ହିନ୍ଦୁ ଯେପରି ଜଡ଼ ପିତୁଳାକୁ ପୂଜାକରେ, ସେହିପରି ଜଡ଼ପିଣ୍ଡ ସୂର୍ଯ୍ୟ ଓ ଚନ୍ଦ୍ରଙ୍କୁ ପୂଜାକରେ । ପାଶ୍ଚାତ୍ୟ ଲୋକଙ୍କର ଏହି ବିଦ୍ରୂପାତ୍ମକ ସମାଲୋଚନା ଆମେ ନତମସ୍ତକ ହୋଇ ଗ୍ରହଣ କରୁ ।

ସୂର୍ଯ୍ୟ ଓ ଚନ୍ଦ୍ର ଜଡ଼ ପଦାର୍ଥ ହୋଇପାରନ୍ତି; କିନ୍ତୁ ସୂର୍ଯ୍ୟ ଓ ଚନ୍ଦ୍ରଙ୍କଠାରୁ ଆମେ ଯେଉଁ ଉପକାର ପାଉଁ, ତାହାର ପୂର୍ଣ୍ଣ ବର୍ଣ୍ଣନା ଆମ୍ଭମାନଙ୍କର ଶକ୍ତିର ଅତୀତ । ସୂର୍ଯ୍ୟ, ଚନ୍ଦ୍ର ନ ଥିଲେ ଆମର ଜୀବନଧାରଣ ସମ୍ଭବ ହୁଅନ୍ତା ନାହିଁ । ହିନ୍ଦୁ ସୂର୍ଯ୍ୟଙ୍କୁ କହେ ସବିତା ଅର୍ଥାତ୍ ପୃଥିବୀସ୍ଥ ସମସ୍ତ ପଦାର୍ଥର ଜନ୍ମଦାତା (ସୂ+ତୃ) ଓ ଚନ୍ଦ୍ରଙ୍କୁ କହେ ଔଷଧୀଶ ଅର୍ଥାତ୍ ସମସ୍ତ ପ୍ରକାର ଔଷଧର ଗୁଣ ଆସେ ଚନ୍ଦ୍ରଙ୍କଠାରୁ ।

ଏକଥା ପୃଥିବୀରେ ଆଉ କିଏ ଜାଣିଥିଲା ? ହିନ୍ଦୁର ବିଜ୍ଞାନ ଜ୍ଞାନୋଦ୍ଭବ ପୂଜା ବା କୃତଜ୍ଞତାର୍ପଣକୁ ସେମାନେ ଯଦି ଜଡ଼ ପଦାର୍ଥର ପୂଜା କହନ୍ତି, ଆମ୍ଭେମାନେ ନାଚାର ।

ଏ କାଳର ବିଜ୍ଞାନ ଏବେ ଆସ୍ତେ ଆସ୍ତେ ଜାଣୁଛି ଯେ ସୂର୍ଯ୍ୟକିରଣରୁ ପୃଥିବୀ ତାହାର ସମସ୍ତ ଶକ୍ତି ପାଏ । ହିନ୍ଦୁମାନେ ଖାଲି ଏତିକି ଜାଣି ନ ଥିଲେ, ସେମାନେ ସୂର୍ଯ୍ୟକିରଣରୁ ସବୁ ବାହାର କରିପାରୁଥିଲେ । ଏଣିକି ଶ୍ରୀମଦ୍ ବିଶୁଦ୍ଧାନନ୍ଦ ସ୍ୱାମୀ ଏହି ବିଦ୍ୟା ହାସଲ କରି ହୀରା, ନୀଳା, ମଣି, ସୁନା, ସୁଗନ୍ଧ ପ୍ରଭୃତି ଏଥିରୁ ବାହାର କରିପାରୁଥିଲେ । ଏହା କଳ୍ପନା ନୁହେଁ । କଟକ ସହରରେ ତାଙ୍କର କେତେକ ବିଶିଷ୍ଟ ଶିଷ୍ୟଙ୍କ ପାଖରେ ଗୁରୁପ୍ରଦତ୍ତ ସୂର୍ଯ୍ୟୋଦ୍ଭବ ସ୍ଫଟିକ ରହିଅଛି । ସୂର୍ଯ୍ୟକିରଣ ଅସାଧ୍ୟ ରୋଗ ଭଲ କରିପାରେ । ଯାମନଗରଠାରେ ଏକ ସୂର୍ଯ୍ୟମନ୍ଦିର (Solarium) ପ୍ରତିଷ୍ଠିତ ହୋଇ ଏହାର ପ୍ରମାଣ ଦେଉଅଛି ।

ଏ କାଳର ବିଜ୍ଞାନ ଏବେ ବାହାରକଲା—ସୂର୍ଯ୍ୟକିରଣ ସାତଟି ବିଭିନ୍ନ ରଙ୍ଗର ସମଷ୍ଟି; ମାତ୍ର ହିନ୍ଦୁ ସୂର୍ଯ୍ୟଙ୍କୁ ବିଶେଷଣ ଦେଇଅଛି— "ସପ୍ତାଶ୍ୱବାହନ", ଚନ୍ଦ୍ରଙ୍କୁ କହିଛି "ଦଶାଶ୍ୱ ବାହନ" । ଚନ୍ଦ୍ରକିରଣରେ ଆଉ କେତୋଟି କ'ଣ ଅଧିକାରଙ୍ଗ ଅଛି, ବିଜ୍ଞାନ ଏପର୍ଯ୍ୟନ୍ତ ବାହାର କରିନାହିଁ ।

ସ୍ତ୍ରୀ ଜୀବନର ସର୍ବପ୍ରଧାନ ଦୈହିକ କ୍ରିୟା ମାସିକ ଋତୁ ଚନ୍ଦ୍ର ସହିତ ଅଚ୍ଛେଦ୍ୟ ଭାବରେ ସଂଯୁକ୍ତ । ପାଶ୍ଚାତ୍ୟ ବୈଜ୍ଞାନିକମାନେ ଏହା ଏବେ କହିଲେଣି । ଶରତ୍‌କାଳର ନିର୍ମଳ ଚନ୍ଦ୍ରକିରଣ ଉଜାଗର ହୋଇ ଦେହରେ ପକାଇବା ନିମିତ୍ତ କୁମାରପୂର୍ଣ୍ଣିମାର ବିଧିବିଧାନ କେଉଁ କାଳେ ଗଢ଼ାଯାଇଥିଲା । ✻

---

✻ ସବିଶେଷ ଆଲୋଚନା ଲେଖକଙ୍କର "ଉତ୍କଳୀୟ ପର୍ବର ଭିତର ଉଦ୍ଦେଶ୍ୟ" ପୁସ୍ତକରେ ରହିଅଛି ।

## "ବର୍ଣ୍ଣାନାଂ ବ୍ରାହ୍ମଣୋ ଗୁରୁଃ"

### ଜାତିମାନଙ୍କ ମଧ୍ୟରେ ବ୍ରାହ୍ମଣ ଶ୍ରେଷ୍ଠ କାହିଁକି ?

(ଲେଖକଙ୍କର "ଓଡ଼ିଆର ଖାଦ୍ୟ ଓ ସ୍ୱାସ୍ଥ୍ୟ" ପୁସ୍ତକର "ବ୍ରାହ୍ମଣ ଭୋଜନ ନା ବାଳ ଭୋଜନ" ନାମକ ଅଧ୍ୟାୟ ଅବଲମ୍ବନରେ ଲିଖିତ । )

ବିଲାତର ବିଖ୍ୟାତ ପଣ୍ଡିତ କାର୍ଲାଇଲ ସାହେବ ତାଙ୍କର ଅନନୁକରଣୀୟ ଭାଷାରେ ଲେଖିଛନ୍ତି -"Two men I honour no third" ଅର୍ଥାତ୍ ମୁଁ ଦୁଇ ଜଣଙ୍କୁ କେବଳ ସମ୍ମାନ କରେ ତୃତୀୟକୁ ନୁହେଁ- ମୁଁ ପ୍ରଥମେ ଖାତିର କରେ ଚଷା ଭାଇଙ୍କୁ; କାରଣ ସେ ଦିନ ନାହିଁ, ରାତି ନାହିଁ, ଖରା ନାହିଁ, ବର୍ଷା ନାହିଁ, ଲାଗିଥାଏ ବିଲରେ । ସେ ବିଲରେ ଲାଗି ନ ଥିଲେ ଆମେ ଗଣ୍ଡିଏ ଖାଇବାକୁ ପାଆନ୍ତେ ନାହିଁ । ଆମକୁ ଖୁଆଇବା ନିମିତ୍ତ ସେ ରୂପକୁ ବେରୂପ କରିସାରିଲାଣି, ତାହାର ହାତ ଗୋଡ଼ର ଆଙ୍ଗୁଠି ବଙ୍କା ହୋଇଗଲାଣି, ଖରାରେ କାମକରି ତାର ଚମ କଳା ପଡ଼ିଗଲାଣି । ସେ ଏମିତି ଦୁଃଖ ସହି ନ ଥିଲେ ସମାଜ ଖାଇବାକୁ ପାଆନ୍ତା ନାହିଁ; ତେଣୁ ତାଙ୍କୁ ମୁଁ ନମସ୍କାର କରେ । ସେ ଯିନା ଦେହକୁ ପୋଷୁଛି, କିନ୍ତୁ ମନ ଓ ଆତ୍ମାକୁ ପୋଷୁଅଛି ଆଉରି ଜଣେ । ସେ ହେଉଅଛି ଦାର୍ଶନିକ ପଣ୍ଡିତ । ଲୋକମାନଙ୍କୁ ଭଲ ବାଟରେ ନେବା ପାଇଁ ସେ ରାତିରେ ନିଦରେ ଶୋଇ ନାହିଁ । ସତ କ'ଣ, ଭଲ କ'ଣ, କ'ଣ କଲେ ଲୋକ ଭଲରେ ରହିବେ, ତାହା ଭାବି ଭାବି ସେ ଭୋକ ଶୋଷ ଭୁଲିଗଲାଣି, ତାର ଘରେ ହାର କ'ଣ ହେଉଅଛି ସେ ଜାଣେ ନାହିଁ; ସେ ଜାଣେ କେବଳ ଚିନ୍ତା ଓ ସାଧନା । ସେ ଏହା କରୁଅଛି ତାର ନିଜ ପାଇଁ ନୁହେଁ, ତା' ସମାଜର ଭାଇମାନେ କିପରି ସୁଖରେ ରହିବେ; ସେଥିପାଇଁ ସେ ସବୁବେଳେ ଭାବୁଅଛି । ଚଷାଭାଇ ଦେଉଅଛି ଦେହର ଖାଦ୍ୟ; ଭାବୁକ ଦେଉଅଛି ଆତ୍ମାର ଖାଦ୍ୟ । ମନୁଷ୍ୟର ଦେହଠାରୁ ଆତ୍ମା ବଡ଼; ତେଣୁ ଚଷାଭାଇଠାରୁ ମୁଁ ତାକୁ ଅଧିକ ଖାତିର କରେ ଇତ୍ୟାଦି ।

ପ୍ରକୃତରେ ପୃଥିବୀକୁ ଯେଉଁମାନେ ନୂଆ ନୂଆ କଥା ଦେଇ ଯାଇଅଛନ୍ତି; ସେମାନେ ଜୀବନଗତ ଅସାଧ୍ୟ ସାଧନା କରିପାରିଅଛନ୍ତି । ଜଣେ ଦାର୍ଶନିକଙ୍କ ଜୀବନୀରେ ଆମ୍ଭେମାନେ ପଢ଼ିଅଛୁ, ସେ ଦର୍ଶନ ବହିସବୁ ଲେଖିଲା ବେଳେ ଘରେ କାହାକୁ ପ୍ରାୟ ନ ଥିଲେ । ସେଠାରେ କୌଣସି ପ୍ରକାର ଗୋଳମାଳ ହେଉ ନ ଥିଲା, କେହି ତାଙ୍କୁ ଡାକୁ ନ ଥିଲେ । ଦିନେ ଦିନେ କାହିଁକି, ଅଧିକାଂଶ ସମୟରେ ଘରର ଗୋଟିଏ ପାଖରେ ସକାଳ, ଦିପ୍ରହର ଖାଇବା ଜିନିଷ ଯାଇ ଟେବୁଲ ଉପରେ ଥୁଆହେବା ସେ ଜାଣୁ ନ ଥିଲେ । ଘଣ୍ଟା ବେଳେ ଗୁ ଗଲା; ତାହା ଟେବୁଲ ଉପରେ ସେହିପରି ରହିଥାଏ । ରାତିରେ ପୁଣି ଖାଇବା ଜିନିଷ ଯାଇ ଟେବୁଲ ଉପରେ ଥୁଆହେଲା, ସେ ମଧ୍ୟ ସେହିପରି ରହିଲା । ସ୍ତ୍ରୀ ବହୁ ଆତଙ୍କରେ ପଛରେ ରହି ଭୁମା ହୋଇ ସବୁ ଦେଖିଲେ; କିନ୍ତୁ ପାଟିକରୁଣ୍ଡ କରୁ ନ ଥିଲେ । ତାଙ୍କର ଧ୍ୟାନ ଏହିପରି ଦିନେ ଦୁଇ ଦିନ ପରେ ସମସ୍ତ ସମୟରେ ଭାଙ୍ଗୁଥିଲା । ସେତିକି ବେଳେ ସେ ଟୋକିରୁ ଉଠି ଖିଆପିଆ କରୁଥିଲେ । ଦର୍ଶନ କହ, ବିଜ୍ଞାନ କହ, ପ୍ରକୃତ ବଡ଼ ବଡ଼ କଥା ବାହାର କରିବାକୁ ଏପରି ଧ୍ୟାନ ଦରକାର । ଅନ୍ନ ଚିନ୍ତା ଯଦି ସବୁବେଳେ ଲାଗିରହେ, ମନୁଷ୍ୟ ଭାବିବାକୁ ସୁବିଧା ପାଏ ନାହିଁ । ପୃଥିବୀର ସଭ୍ୟତା ସାଧାରଣତଃ ବଢ଼ିଅଛି ସେହି ସ୍ଥାନରେ, ଯେଉଁ ସ୍ଥାନରେ ଜୀବନକୁ ପୋଷିବା ନିମିତ୍ତ ମନୁଷ୍ୟ ବେଶୀ ଉଦ୍‌ବେଗ ପାଇଁ ନାହିଁ । ସେହି ସ୍ଥାନରେ ତାଙ୍କୁ ଅବକାଶ ମିଳିଅଛି, ସେ ଭାବିପାରିଅଛି, ନୂଆ ନୂଆ କଥା ବାହାର କରିଅଛି ଓ ତାହା ଲୋକର ହିତ ନିମିତ୍ତ ଜଗତକୁ ଦେଇଯାଇଅଛି ।

ଅନ୍ୟ ଦେଶମାନଙ୍କରେ ଜଣେ ଜଣେ ଭାବୁକ ସ୍ଥାନେ ସ୍ଥାନେ ବାହାରିପଡ଼ୁଥିଲେ; କିନ୍ତୁ ଆମର ସାମାଜିକ ବିଧାନ ଏପରି ସୁନ୍ଦର ଥିଲା ଯେ ତାହା ଭାବୁକ ବା ଦାର୍ଶନିକ, ପଣ୍ଡିତ ପ୍ରତ୍ୟେକ ଗାଁଗଣ୍ଡାରେ ଖେଳେଇ ଦେଇଯାଇଥିଲା । ସେଥି ନିମିତ୍ତ ଧକ୍କା ପରେ ଧକ୍କା, ଶତ ଲକ୍ଷ ଧକ୍କା ଖାଇ ମଧ୍ୟ ହିନ୍ଦୁ ସମାଜ ଓ ହିନ୍ଦୁଧର୍ମ ଆଜିପର୍ଯ୍ୟନ୍ତ ତିଷ୍ଠି ରହିଅଛି । ପ୍ରାଚୀନ ସଭ୍ୟତା କେତେ କାଳସ୍ରୋତରେ ଭାସି ଯାଇଅଛି; ମାତ୍ର ହିନ୍ଦୁର ସଭ୍ୟତା ଭାସି ଯାଇ ନାହିଁ—କେବଳ ସ୍ଥାନେ ସ୍ଥାନେ ଭାଙ୍ଗି ଯାଇଅଛି । କିନ୍ତୁ ସେ ବଞ୍ଚି ରହିଅଛି; ସମ୍ଭବତଃ ଆବହମାନ କାଳ ରହିବ । ଏପରି

ଶକ୍ତି ତାଙ୍କୁ ଦେଲା କିଏ ? ସେ ଶକ୍ତି ଦେଇଛି "ବ୍ରାହ୍ମଣ" । ପୁରର ହିତସାଧନା କରିବା ନିମିତ୍ତ ସେ ପିଲାଦିନୁ ନେଇଥିଲା ଦାରିଦ୍ର୍ୟ ଓ ତ୍ୟାଗର ବ୍ରତ । ସଂସାର ମଉଜମଜଲିସରେ ସେ ନ ଥିଲା । ମଣିଷଜନ୍ମ, ରକ୍ତ-ମାଂସ ଶରୀରପ୍ରଲୋଭନ ପ୍ରତିମୁହୂର୍ତ୍ତରେ ତାଙ୍କୁ ଟାଣୁଛି, ଟାଣୁଥିଲା । ସେ ଯେଉଁ ତ୍ୟାଗର ବ୍ରତ ନେଇଥିଲା, ତାହା ସବୁବେଳେ ମନେ ପକାଇବା ନିମିତ୍ତ ସେ ପିନ୍ଧୁଥିଲା ଉପବୀତ ଅର୍ଥାତ୍ ପଇତା । ସେ ଦେବତା, ଅଗ୍ନି ଓ ଦ୍ୱିଜମାନଙ୍କୁ ସାକ୍ଷୀ କରି ପିଲାଦିନେ ଯେଉଁଟି ବ୍ରତ ପାଳିବ ବୋଲି ପ୍ରତିଜ୍ଞା କରିଥିଲା, ତାର ପଇତାରେ ସେତିକିଟି ଗିଅ ଥିଲା । ସେ ପଇତା ତାଙ୍କୁ ସବୁବେଳେ ସେ ପ୍ରତିଜ୍ଞା କଥା ମନେ ପକାଇ ଦେଉଥିଲା ।

ସେ ପ୍ରତିଜ୍ଞା କରିଥିଲା ମଉଜମଜଲିସ୍ ଛୁଇଁବ ନାହିଁ, ସଂସାରଲୋଭରୁ ଦୂରରେ ରହିବ । ସତ କ'ଣ, ଶିବ କ'ଣ, ସୁନ୍ଦର କ'ଣ, ପାଇବାକୁ ଜୀବନ ଉତ୍ସର୍ଗ କରି ଦେଇଥିଲା । ଅଥଚ ସେ ଗୋଟିଏ ମଣିଷ— ଖାଇବ, ପିନ୍ଧିବ, ଶୋଇବ ଓ ସଂସାରରେ ପଶିବ ନାହିଁ; ଏହାସବୁ ପାଇବ କୁଆଡୁ ? ହିନ୍ଦୁସମାଜ ସେ କିପରି ତାର ଦେହର ଖାଦ୍ୟ ଆଭରଣ ଥୁଏଁ ଥୁଏଁ ପାଇବ ଓ ତାହା ବଦଳରେ ସମସ୍ତ ସମାଜକୁ ମନ ଓ ଆତ୍ମାର ଖାଦ୍ୟ ଯୋଗାଇବ, ତା'ର ସୁନ୍ଦର ବନ୍ଦୋବସ୍ତ କରିଦେଇଥିଲା । ଜ୍ଞାନଚର୍ଚ୍ଚା ନିମିତ୍ତ, ନୂଆ ନୂଆ କଥା ବାହାର କରିବା ନିମିତ୍ତ, ବ୍ରାହ୍ମଣ ଜାତିକୁ ଅଲଗା କରି ରଖାଯାଇଥିଲା । ସଂସାରଚିନ୍ତା ତାଙ୍କୁ ଯେପରି ବ୍ୟସ୍ତ କରି ନ ପକାଇବ, ତାର ଭାର ନେଇଥିଲା ସମାଜ । ସେଥିପାଇଁ ସମାଜ ବନ୍ଦୋବସ୍ତ କରିଥିଲା ପ୍ରତ୍ୟେକ ଧର୍ମକାର୍ଯ୍ୟରେ ବ୍ରାହ୍ମଣଭୋଜନ ଓ ବ୍ରାହ୍ମଣଙ୍କୁ ଦାନ । ଯେଉଁ ଜାତି ଲେଖିଥିଲା, "ଭିକ୍ଷା ନୈବଚ ନୈବଚ", ଅର୍ଥାତ୍ ଭିକ୍ଷା କେତେବେଳେ ସୁଦ୍ଧା ନୁହେଁ, ସେ ବରଣ କରିଥିଲା ଭିକ୍ଷା !! ରାଜସିଂହାସନ ଯାହାଙ୍କୁ ଛୁଟୁ ନ ଥିଲା, ସେ ପୁଣି ଅନ୍ୟ ଦ୍ୱାରରୁ ନିଅନ୍ତା ଦାନ ଭୋଜନ ! ଆମେ ଘୃଣାରେ କହୁ ଭିକାରି ବ୍ରାହ୍ମଣ । ଏହା ବଡ଼ ବିସ୍ମୟର କଥା । ନାଁ, ତା ନୁହେଁ । ସେ ଭିକ ମାଗୁ ନ ଥିଲା; ତାର ଦେହ ରଖିବା ନିମିତ୍ତ ଯେତିକି ଦରକାର, ସେତିକି ପାଇଁ ସେ ସମୟ ସମୟରେ ଦୁଆର ଦୁଆର ବୁଲି ଆସୁଥିଲା; ସମସ୍ତେ ତାଙ୍କୁ ଚଣ୍ଡାଏ ଲେଖାଏଁ ପକାଇ ଦେଉଥିଲେ । ଦେଉଥିଲେ ଧୂଳି ମୁଠାଏ, ବଦଳରେ ନେଉଥିଲେ ସୁନା ମୁଠାଏ, ଅର୍ଥାତ୍ ଜ୍ଞାନ, ସୁନାରେ

ମଧ୍ୟ ଏହାର ମୂଲ୍ୟ କରାଯାଇ ପାରେ ନାହିଁ । ଅନ୍ୟ ଅର୍ଥ ଯାହାହେଉ, ଆମ୍ଭେମାନେ ମନେକରୁ ବ୍ରାହ୍ମଣମାନେ ପୂରାପୂରି ସ୍ୱାର୍ଥ ତ୍ୟାଗ କରୁଥିଲେ ବୋଲି ସେମାନଙ୍କୁ କହୁଥିଲେ ପୁରୋହିତ । ସେମାନେ ଅବିଚଳିତ ଭାବରେ ଚିନ୍ତା କରିପାରିବେ, ସମାଜକୁ ଠିକ୍ ମାର୍ଗରେ ନେବେ ବୋଲି ସେମାନଙ୍କୁ ଅନ୍ୟ କୌଣସି କାମ ଦିଆଯାଇ ନ ଥିଲା । ଆମ ଓଡ଼ିଶାର ରାଜାମାନେ ତେଣୁ ବ୍ରାହ୍ମଣଶାସନ ବସାଉଥିଲେ । ସେମାନଙ୍କର ଭରଣପୋଷଣ ନିମିତ୍ତ ନିଷ୍କର ବାଡ଼ହେଲା ଜମି ଖଞ୍ଜି ଦେଉଥିଲେ ।

ସମାଜର ଶାସନ ଅଧିକାଂଶ ଭାବରେ ସମାଜ ନିଜେ ନିଜେ କରେ । ଧର୍ମଭାବ ସମାଜର ଭିତର ଶାସକ, ବାହାର ଶାସକ ହେଉଅଛି ରାଜତନ୍ତ୍ର । ସମାଜରେ ସବୁବେଳେ ଧର୍ମଭାବ ଜାଗ୍ରତ ରଖିବା ନିମିତ୍ତ ପୁରୋହିତ ବା ବ୍ରାହ୍ମଣ ଗ୍ରାମରେ ରହୁଥିଲେ ଓ ଆମ ରାଜାମାନେ ତେଣୁ ସମ୍ଭବତଃ ବ୍ରାହ୍ମଣ ଗାଁକୁ ବ୍ରାହ୍ମଣଶାସନ କହୁଥିଲେ । ସେହି ବ୍ରାହ୍ମଣମାନଙ୍କର ଜ୍ଞାନଚର୍ଚ୍ଚା, ଶାସ୍ତ୍ରଚର୍ଚ୍ଚା, ବ୍ରହ୍ମଚର୍ଯ୍ୟଦ୍ୱାରା ଦେଶ ଭିତରେ ଶାସନ ଚାଲୁଥିଲା । ସେହି ବ୍ରାହ୍ମଣମାନେ ଅବିଚଳିତ ଭାବରେ ଜ୍ଞାନଚର୍ଚ୍ଚା କରୁଥିଲେ ବୋଲି ଭାରତର ଆଧ୍ୟାତ୍ମିକ ଗବେଷଣା (ଉପନିଷଦ ଓ ଗୀତା ପ୍ରଭୃତି) ସାରା ଜଗତକୁ ଚମକାଇ ଦେଇଅଛି । ବ୍ରାହ୍ମଣ ଯଦି ଆବାଳ୍ୟ ଉଦାସୀ ହୋଇ ନ ଥାନ୍ତା, ଭାରତୀୟ ସଭ୍ୟତା କେଉଁ କାଳୁ ଲୁପ୍ତ ହୋଇ ଯାଆନ୍ତାଣି; ବ୍ରାହ୍ମଣ ଯଦି ସଂସାରୀ ହୋଇଥାନ୍ତା, ହିନ୍ଦୁସଂସାର କେଉଁ କାଳୁ ଅହିନ୍ଦୁ ସଂସାର ହୋଇ ସାରନ୍ତାଣି । ଚୀନ, ପାରସ୍ୟ, ବାବିଲନ୍, ଆସିରିଆ ଓ ମିଶର ପ୍ରଭୃତି ଦେଶରେ ଏହା ଘଟିଅଛି—

"ସ୍ୱସ୍ତି ପ୍ରଜାଭ୍ୟଃ ପରିପାଳୟନ୍ତୁ
ନ୍ୟାଯ୍ୟେନ ମାର୍ଗେଣ ମହୀଂ ମହୀଶାଃ ।

ଗୋ ବ୍ରାହ୍ମଣେଭ୍ୟଃ ଶୁଭମସ୍ତୁ ନିତ୍ୟମ୍
ଲୋକାଃ ସମସ୍ତାଃ ସୁଖିନୋ ଭବନ୍ତୁ ।"

ଅର୍ଥାତ୍ ରାଜାମାନେ ନ୍ୟାଯ୍ୟମାର୍ଗରେ ପ୍ରଜାମାନଙ୍କୁ ପାଳନ କରନ୍ତୁ, ଗୋରୁ ଓ ବ୍ରାହ୍ମଣମାନଙ୍କର ସର୍ବଦା ଶୁଭ ହେଉ । ସବୁ ଲୋକ ସୁଖରେ ରହନ୍ତୁ ।

ହିନ୍ଦୁର ପ୍ରାୟ ପ୍ରତ୍ୟେକ ଶୁଭକାର୍ଯ୍ୟର ପ୍ରାରମ୍ଭରେ ଏହି ମଙ୍ଗଳାଚରଣ ଶ୍ଳୋକଟି ବୋଲାଯାଏ । ଏଥିରେ ଜଗତର ହିତ ଓ ଗୋରୁ ବ୍ରାହ୍ମଣର ହିତ ହେଉ ବୋଲି ପ୍ରାର୍ଥନା କରାଯାଏ । ଗୋରୁ କୃଷିସହାୟକ ହୋଇ ଦୁଧ ଦହି ଦେଇ ଦେହକୁ ସୁସ୍ଥ ରଖେ । ବ୍ରାହ୍ମଣ ଜ୍ଞାନଚର୍ଚ୍ଚା କରି ସମାଜକୁ ମାନସିକ ଓ ଆଧ୍ୟାତ୍ମିକ ଖାଦ୍ୟ ଯୋଗାଏ । ଏ ଦୁହେଁ ଭଲ ରହିଲେ ସମାଜ ଭଲ ରହିବ, ଜଗତ୍ ଭଲ ରହିବ ବୋଲି ହିନ୍ଦୁ ବହୁ କାଳରୁ ଜାଣିଥିଲା; ତେଣୁ ଗୋରୁକୁ ମା' ପରି ପୂଜା କରୁଥିଲା ଓ ଆଜନ୍ମ-ତ୍ୟାଗୀ ବ୍ରାହ୍ମଣକୁ ସମାଜର ଶ୍ରେଷ୍ଠତମ ଆସନ ଦେଇଥିଲା ଏବଂ ଦୁହିଁଙ୍କର ମଙ୍ଗଳ ହେବ ବୋଲି ସର୍ବଦା ପ୍ରାର୍ଥନା କରୁଥିଲା ।

ନିବୃତ୍ତିର ମହାଫଳ ଶିଖାଇବା ନିମିତ୍ତ ଯେପରି ଦେବବର୍ଗରେ ଶିବ-ପାର୍ବତୀର କଳ୍ପନା (ମହାଦେବ), ସେପରି ସେହି ଆଦର୍ଶର ବାସ୍ତବିକରଣ ନିମିତ୍ତ ଋଷିମାନଙ୍କର ହିନ୍ଦୁ ସମାଜରେ ବ୍ରାହ୍ମଣଜାତିର ସୃଷ୍ଟି । ଅନ୍ୟ ପ୍ରଦେଶରେ ବ୍ରାହ୍ମଣମାନେ କେଉଁ ପନ୍ଥାବଲମ୍ବୀ, ଆମ୍ଭେମାନେ ଜାଣି ନାହୁଁ; କିନ୍ତୁ ଓଡ଼ିଆ ବ୍ରାହ୍ମଣମାନେ ଶକ୍ତି-ଉପାସକ ବା ଶାକ୍ତ । ନିବୃତ୍ତିଦ୍ୱାରା କିପରି ମହାଶକ୍ତି ସଂଚୟ କରାଯାଏ, ତାହା ସମାଜରେ ସମସ୍ତଙ୍କୁ ଦେଖାଇବା ନିମିତ୍ତ ପୁରୋହିତ ବା ସମାଜର ହିତକାରୀ ବ୍ରାହ୍ମଣକୁ ପ୍ରତ୍ୟେକ ପଲ୍ଲୀଗ୍ରାମରେ ରଖାଯାଇଥିଲା । ଶିବମନ୍ଦିର ପ୍ରାୟ ପ୍ରତ୍ୟେକ ଗ୍ରାମରେ ଥିଲା ଏବଂ ଅଛି । ସବୁବେଳେ ମନେ ପକାଇଦେବା ନିମିତ୍ତ ବ୍ରାହ୍ମଣ ଯେଉଁ ପାଣି ବ୍ୟବହାର କରେ ଏବଂ କରୁଥିଲା, ତାହା ମଧ୍ୟ ମହାଦେବ ମନ୍ଦିରସ୍ଥ ଲିଙ୍ଗ ଓ ଶକ୍ତି ସ୍ୱରୂପେ ଗଠିତ । ଇଂରେଜ ରାଜନୀତିଜ୍ଞ ଓ ଦାର୍ଶନିକ ବର୍କ (Burke) ସାହେବ କହିଥିଲେ—"ମନୁଷ୍ୟ ଉଦାହରଣସ୍ୱରୂପୀ ସ୍କୁଲ ଛଡ଼ା ଆଉ କେଉଁଠାରୁ କିଛି ଶିଖିପାରେ ନାହିଁ ।

ଋଷିମାନେ ଏହା ଜାଣିଥିଲେ ଓ ସମାଜର ଦେଶରେ ସ୍ଥାୟୀ ହିତ ନିମିତ୍ତ ଜୀବନ୍ତ ଆଦର୍ଶ ଚତୁର୍ଦ୍ଦିଗରେ ବିଛେଇ ଦେଇଥିଲେ ।

ତ୍ୟାଗ ଓ ସଚ୍ଚରିତ୍ରପୂର୍ବିକା ଆଧ୍ୟାତ୍ମିକଶକ୍ତି ସମକ୍ଷରେ ବିଳାସ କାମଦୃଷ୍ଟ ପାର୍ଥିବଶକ୍ତିର ଅକର୍ମଣ୍ୟତା ବୁଝାଇବା ନିମିତ୍ତ ସେମାନେ କାନ୍ଦାହାର (ଗାନ୍ଧାର)ଠାରୁ କାମାକ୍ଷା ଓ ହିମାଳୟଠାରୁ କନ୍ୟାକୁମାରୀପର୍ଯ୍ୟନ୍ତ ଦେବୀପୀଠ ସ୍ଥାପନ କରି ଦକ୍ଷ ପ୍ରଜାପତି କଳ୍ପନା କରିଥିଲେ

ଦକ୍ଷ ପ୍ରଜାପତିର ଆକ୍ଷରିକ ଅର୍ଥ ହେଉଅଛି ବିଚକ୍ଷଣ ଶାସକ Able Administrator)। ଶାସକ ଯେତେ ବିଚକ୍ଷଣ ହୁଅନ୍ତୁ ପଛକେ, ସେ ଯଦି ବିଶ୍ୱବନ୍ଧୁ ଓ ପ୍ରୀତିଭାବର ଆଦର ନ କରନ୍ତି, ତାଙ୍କର ସମସ୍ତ ସାଧନା ବ୍ୟର୍ଥ ହେବ ହିଁ ହେବ। ଦକ୍ଷ (ବିଚକ୍ଷଣ ଶାସକ) ଯଜ୍ଞରେ ଇନ୍ଦ୍ର, ଚନ୍ଦ୍ର, କୁବେରଙ୍କ ପରି ଐଶ୍ୱର୍ଯ୍ୟଶାଳୀ ଦେବତା ସ୍ଥାନ ପାଇଲେ; କିନ୍ତୁ ଯୋଗି ଶିବ ଜାମାତା ହୋଇ ସୁଦ୍ଧା ସ୍ଥାନ ପାଇ ନ ଥିଲେ। ଏହି ଅପମାନ ସହି ନ ପା'ରି ମହାଦେବଙ୍କ ସ୍ତ୍ରୀ ସତୀ (ଆଧ୍ୟାତ୍ମିକଶକ୍ତି) ଅଗ୍ନିରେ ଝାସଦେଲେ । ମହାଦେବ ସତୀଙ୍କର ଶବ କାନ୍ଧରେ ପକାଇ ପାଗଳ ସ୍ୱରୂପ ବୁଲିବାରୁ ବିଷ୍ଣୁ ଶବକୁ ଖଣ୍ଡ ଖଣ୍ଡ କରି ଭାରତର ଚାରିଆଡ଼େ ବିଛେଇଦେଲେ। ସେହି ଶବରୁ ଖଣ୍ଡେ ଖଣ୍ଡେ ଯେଉଁଠାରେ ପଡ଼ିଥିଲା, ସେଠାରେ ଗୋଟିଏ ଲେଖାଏଁ ଦେବୀପୀଠ ରହି (ଉତ୍କଳରେ କଟକସ୍ଥ କଟକଚଣ୍ଡୀ-କାତ୍ୟାୟନୀ, ପୁରୀ ବିମଳାଦେଉଳସ୍ଥ ବିମଳା) ମହାତୀର୍ଥରୂପେ ପରିଗଣିତ ହୋଇ ଆସୁଅଛି। ସାରା ଭାରତରେ ଏହି ମହାତୀର୍ଥମାନ ପ୍ରତ୍ୟେକ ଭାରତୀୟକୁ ସୂଚାଉ ଦେଉଅଛି ଯେ ସତ୍ୟଶିବ ଓ ତ୍ୟାଗପୂଜା ନ ପାଇଲେ ଦେଶ ଓ ସମାଜ ନାରଖାର ହୋଇଯାଏ ଓ ଯିବ ।

ତ୍ୟାଗ ଓ ସତ୍ୟଶିବର ପ୍ରତୀକ ବ୍ରାହ୍ମଣ ହିତ ନିମିତ୍ତ ସର୍ବଦା ଯତ୍ନ କରିବାକୁ ଶ୍ଳୋକ ରଚିତ ହୋଇଥିଲା—"ଗୋ ବ୍ରାହ୍ମଣେଭ୍ୟଃ ଶୁଭମସ୍ତୁ ନିତ୍ୟମ୍"; ତେବେ ଯାଇ "ଲୋକାଃ ସମସ୍ତାଃ" ଅର୍ଥାତ୍ ସମସ୍ତ ଲୋକ ସୁ-ଆଦର୍ଶ ଦେଖି ସୁଖରେ ରହିପାରିବେ ।



# ଶ୍ରାଦ୍ଧ, ଉପବାସ ଓ ହିନ୍ଦୁର କିତଥାଗ୍ରେର

**ଶ୍ରାଦ୍ଧ**—ମା' ବାପଙ୍କୁ ଅବହେଳା କରି ଭଗବାନଙ୍କୁ ଶତ ପୂଜା ଉପାସନା ଦେଲେ ସେ ଗ୍ରହଣ କରନ୍ତି ନାହିଁ । ମନୁଷ୍ୟର ଚଳନ୍ତି ଭଗବାନ ହେଉଛନ୍ତି ମା' ଓ ବାପ । ଏ ଦୁହିଙ୍କଠାରୁ ଆଉ ଅଧିକ ଉପକାର ମନୁଷ୍ୟର କିଏ କରେ ? ନିକାନଙ୍କ ମନୁ ସେଥିନିମିତ୍ତ ଲେଖି ଯାଇଅଛନ୍ତି :—

"ତଯ୍ୟୋର୍ନିତ୍ୟଂ ପ୍ରିୟଂ କୁର୍ଯ୍ୟାଦାଗୁର୍ଯସ୍ୟ ଚ ସର୍ବଦା
ତେଷ୍ୱେବ ତ୍ରିଷୁ ତୁଷ୍ଟେଷୁ ତପଃ ସର୍ବଂ ସମାପ୍ୟତେ । ୨।୨।୨୮
ଯାବତ୍ପ୍ରସ୍ତେ ଜୀବେୟୁସ୍ତାବନ୍ନାନ୍ୟଂ ସମାଚରେତ୍
ତେଷ୍ୱେବ ନିତ୍ୟଂ ଶୁଶ୍ରୂଷାଂ କୁର୍ଯ୍ୟାତ୍ ପ୍ରିୟହିତେ ରତଃ" । ୨।୨।୩୭

ଅର୍ଥାତ୍ ମା, ବାପ ଓ ଗୁରୁଙ୍କର (ଧର୍ମଗୁରୁ, ଯାହାଙ୍କ ଶକ୍ତି ଓ କୃପାବଳରେ ମନୁଷ୍ୟ ଦିବ୍ୟଜ୍ଞାନ ଓ ଆଚରଣ ପାଇପାରେ) ସର୍ବଦା ପ୍ରିୟ କାର୍ଯ୍ୟ କରିବ । ଏ ତିନହେଁ ସନ୍ତୁଷ୍ଟ ହେଲେ ସମସ୍ତ ତପସ୍ୟା ସଫଳ ହୁଏ, ଅର୍ଥାତ୍ ଏହାଦ୍ୱାରା ହିଁ କେବଳ ସମସ୍ତ ଧର୍ମ ଅର୍ଜନ କରିଯାଇପାରେ। ଏମାନେ ଯେତେ ଦିନ ବଞ୍ଚି ରହିଅଛନ୍ତି, ଅନ୍ୟ ଧର୍ମ କରିବା ଅନାବଶ୍ୟକ । ସେମାନଙ୍କର ପ୍ରିୟ ଓ ମଙ୍ଗଳ କାର୍ଯ୍ୟ କରି ତାଙ୍କର ପ୍ରତିଦିନ ସେବା କରିବା ଉଚିତ ।

କୃତଜ୍ଞତା ଅର୍ପଣ ହିନ୍ଦୁଧର୍ମର ଏକ ବିଶିଷ୍ଟ ବିଧାନ । ସେ ପଥରଟିଏ, ଫୁଲଟିଏ ଆଣିଲେ ମନ୍ତ୍ର ବୋଲି କୃତଜ୍ଞତା ପ୍ରକାଶ କରେ । ପ୍ରକୃତି-ରାଜ୍ୟରେ ଯେଉଁଠାରୁ ସେ କିଛି ଉପକାର ପାଏ, ସେଠାରେ ସେ ନିଜର କୃତଜ୍ଞତା ଜଣାଏ । ମା ଓ ବାପଙ୍କଠାରୁ ଆଉ ଅଧିକ ଉପକାରୀ କିଏ ? ମରିଗଲେ ସୁଦ୍ଧା ତାଙ୍କର ସ୍ମୃତିକୁ ପାସୋରିବା ଉଚିତ ନୁହେଁ । ବର୍ଷକେ ଥରେ ତାଙ୍କର ମୃତ୍ୟୁଦିବସରେ ତାଙ୍କୁ ଶ୍ରଦ୍ଧାରେ ମନେ ପକାଇବା, ନମସ୍କାର କରିବ ଓ ତାଙ୍କର ଆତ୍ମାର ହିତାର୍ଥେ ଦାନଧ୍ୟାନ କରିବା ଶ୍ରେୟସ୍କର । ହିନ୍ଦୁ ପୁନର୍ଜନ୍ମ

ଓ ଆତ୍ମାର ଅବିନାଶିତାରେ ବିଶ୍ୱାସ କରେ; ତେଣୁ ଶ୍ରାଦ୍ଧଦିବସର ପିଣ୍ଡଦାନ ଆପୌତ୍ତିକ ନୁହେଁ । ଶରୀରହୀନ ଆତ୍ମା ଶରୀର ଖାଦ୍ୟ ଗ୍ରହଣ କରିପାରେ ନାହିଁ; ପିଣ୍ଡର ଅଦୃଷ୍ଟ ସୂକ୍ଷ୍ମାଂଶକୁ ଗ୍ରହଣ କରେ ।

ଶ୍ରାଦ୍ଧଦିବସମାନଙ୍କରେ ହିନ୍ଦୁ ଯେ କେବଳ ନିଜର ପିତାମାତାଙ୍କୁ ଶ୍ରାଦ୍ଧ ଅର୍ପଣ କରେ ତାହା ନୁହେଁ, ସେ ତାହାର ପରିପାର୍ଶ୍ୱସ୍ଥିତ ମୃତଲୋକମାନଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଦେଇଥାଏ ।

**ଉପବାସ**—ହିନ୍ଦୁପର୍ବଗୁଡ଼ିକ ପ୍ରାୟ ଉପବାସରେ ଆରବ୍ଧ ହୁଏ, ଏହା ଆମ୍ଭେମାନେ ଆଗେ କହିଅଛୁଁ । ଏହା ବାଦ ଅନ୍ୟାନ୍ୟ ତିଥି ଓ ବାର ଅଛି, ଯେଉଁ ଦିନ କେତେକ ଲୋକ ଉପବାସ କରନ୍ତି । ଚନ୍ଦ୍ରଙ୍କ ଆକର୍ଷଣ ଫଳରେ କେବଳ ଯେ ସମୁଦ୍ରରେ ଜୁଆର ଉଠେ ତାହା ନୁହେଁ, ପୃଥିବୀସ୍ଥ ଜୀବରାଜ୍ୟରେ ମଧ୍ୟ ଏହାର ପ୍ରଭାବ ପଡ଼େ । ଓଡ଼ିଶାର ଉପକୂଳ ଅଞ୍ଚଳରେ ଯେଉଁମାନେ ବାତଜ୍ୱରଗ୍ରସ୍ତ (Filarial fever), ସେମାନେ ପ୍ରାୟ ଏକାଦଶୀ, ଅମାବାସ୍ୟା କିମ୍ବା ପୂର୍ଣ୍ଣିମା ସମୟରେ ଏହାଦ୍ୱାରା ଆକ୍ରାନ୍ତ ହୋଇଥାନ୍ତି; ତେଣୁ ଏହାକୁ କେତେକ ଲୋକ Moon fever ବୋଲି କହନ୍ତି ।

ମନୁଷ୍ୟ ଦେହରେ ଏକାଦଶୀ ଦିନଠାରୁ ରସପ୍ରାବଲ୍ୟ ଜାତହୋଇ ପୂର୍ଣ୍ଣିମା କିମ୍ବା ଅମାବସ୍ୟା ଶେଷପର୍ଯ୍ୟନ୍ତ ରହେ । ସେହି ଅବାଞ୍ଛିନୀୟ ରସକୁ କମେଇବା ନିମିତ୍ତ ଏକାଦଶୀ ଓ ପୂର୍ଣ୍ଣିମା ପ୍ରଭୃତିରେ ଉପବାସ ପାଳନ କରାଯାଏ ।

ଶୋଇବା ସମୟରେ ଆମର ଅନ୍ୟାନ୍ୟ ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ବିଶ୍ରାମ ନେଲେ ହେଁ ପେଟ ମଧ୍ୟରେ ଜୀର୍ଣ୍ଣକାରୀ ଅନ୍ତ୍ର କାମ କରୁଥାଏ । ମନ୍ଦବୁଦ୍ଧି କରିବା ନିମିତ୍ତ ଏହାକୁ ବିଶ୍ରାମ ଦେବା ବିଧେୟ ।

ଶରୀର ମଧ୍ୟରେ ଯଦି କୌଣସି ଅବାଞ୍ଛିତ ରସ ଥାଏ, ତାହା ଉପବାସ ସମୟରେ ଦେହ ମଧ୍ୟରୁ ଶୁଖିଯାଏ । ଦୀର୍ଘ ଉପବାସ ପରେ ବଡ଼ ବଡ଼ ରୋଗ ଭଲ ହୋଇଯିବାର ଦେଖାଯାଇଛି ।

ଏସବୁ କଥା ବିଚାର କରି ଓ ଏହାର ସୁଫଳ ଦେଖି ଆମେରିକାର କେତେକ ବୈଜ୍ଞାନିକ ଏବେ ମତ ଦେଉଛନ୍ତି ଯେ ପୁନଃଯୌବନ ପାଇବାକୁ ଇଚ୍ଛାକଲେ ମାସକେ ଅନ୍ତତଃ ୩।୪ ଥର ଉପବାସ କର ।

ହିନ୍ଦୁ ଯେ କେବଳ ଏଥିନିମିତ୍ତ ଉପବାସ କରେ ତାହା ନୁହେଁ, ଆତ୍ମସଂଯମ ଶିଖିବା ଉପବାସର ସର୍ବପ୍ରଧାନ ଲକ୍ଷ୍ୟ ବୋଲି ଶାସ୍ତ୍ରନିର୍ଦ୍ଦିଷ୍ଟ ହୋଇଅଛି । ଏପରି କି ବିବାହ ଦିନ ବରକନ୍ୟା ଉପବାସ କରିଥାନ୍ତି । ହିନ୍ଦୁର ଅଧିକାଂଶ ଧର୍ମାନୁଷ୍ଠାନ ମୂଳରେ ଉପବାସ ରହିଅଛି । ମହାତ୍ମା ଗାନ୍ଧି ରୁଷ୍ ଦେଶରେ ଯେଉଁ ମହାମନୀଷୀ ଟଲଷ୍ଟୟଙ୍କୁ ଗୁରୁ ବୋଲି ମନେ କରୁଥିଲେ, ସେ ତାଙ୍କର "Essays and Letters"ର ୭୮ ପୃଷ୍ଠାରେ ଲେଖିଛନ୍ତି ।

"Just the first condition of a good life is self control, so the first condition of a life of self control is fasting"

ଅର୍ଥାତ୍ ସାଧୁଜୀବନ ନିମିତ୍ତ ଆତ୍ମସଂଯମ ଯେପରି ଆବଶ୍ୟକ, ଆତ୍ମସଂଯମ ନିମିତ୍ତ ଉପବାସ ସେପରି ପ୍ରୟୋଜନୀୟ ।

**ହିନ୍ଦୁର ନିତ୍ୟାଗ୍ରହ**—ହିନ୍ଦୁ କିପରି ବସିବ, କିପରି ଖାଇବ, କିପରି ଶୋଇବ ଇତ୍ୟାଦିର ବ୍ୟବସ୍ଥା ଶାସ୍ତ୍ରମାନଙ୍କରେ ରହିଅଛି । ବ୍ୟବସ୍ଥା ମନମୁଖୀ ନୁହେଁ, ଗଭୀର ବିଜ୍ଞାନାନୁମୋଦିତ ପନ୍ଥା ଏଥିରେ ଅନୁସୃତ ହୋଇଅଛି । ସେଥିମଧ୍ୟରୁ କେତେକର କାରଣ ଏ ବହିର ପ୍ରଥମ ଭାଗରେ ଦିଆଯାଇଅଛି । ଏପରି ବ୍ୟବସ୍ଥା ଅନ୍ୟ କେଉଁ ଧର୍ମରେ ନାହିଁ । ପ୍ରତିଦିନ ହିନ୍ଦୁର ପାଞ୍ଚ ପ୍ରକାର ଯଜ୍ଞ କରିବାର ବ୍ୟବସ୍ଥା ଅଛି । ସେଗୁଡ଼ିକର ଉଦ୍ଦେଶ୍ୟ ଋଣ ପରିଶୋଧ ଓ କୃତଜ୍ଞତାଜ୍ଞାପନ ।

**(୧) ଅଧ୍ୟାପନ**—ପ୍ରଥମ ହେଉଛି ଅଧ୍ୟାପନ ବା ଯେଉଁ ଜ୍ଞାନ ତୁମେ ପାଇଅଛ, ସମାଜର କଲ୍ୟାଣ ନିମିତ୍ତ ତାହାର ବିତରଣ । ଏ ଯୁଗରେ ଆମେ ଯେଉଁ ଲୋକହିତକାରୀ ଜ୍ଞାନ ପାଇଛେଁ, ସେଥିରୁ ଅଧିକାଂଶ ଆମର ପୂର୍ବବର୍ତ୍ତୀ ଲୋକଙ୍କଦ୍ୱାରା ଉଦ୍ଭାବିତ ହୋଇଥିଲା । ଆମେ ତଦ୍ଦ୍ୱାରା ଉପକୃତ ହେଉଅଛୁଁ । ଭବିଷ୍ୟତ ବଂଶଧରମାନଙ୍କର ହିତ ନିମିତ୍ତ ସେଗୁଡ଼ିକ ସତ୍ପାତ୍ରରେ ଅର୍ପିତ ହେବା ବାଞ୍ଛନୀୟ ।

**(୨) ପିତୃଯଜ୍ଞ**—ମାତାପିତା ପ୍ରଭୃତି ସ୍ୱର୍ଗତ ପୂର୍ବପୁରୁଷମାନଙ୍କୁ ସ୍ମରଣ କରି ତାଙ୍କ ଉଦ୍ଦେଶ୍ୟରେ ଭଗବାନଙ୍କଠାରେ ପ୍ରତିଦିନ ମୁହୂର୍ତ୍ତେ ମାତ୍ର

ପ୍ରାର୍ଥନା କରିବାର ଅର୍ଥ ହେଉଛି ସେମାନଙ୍କଠାରୁ ଆମେ ଯେଉଁ ଉପକାର ପାଇଅଛେ, ସେହି ଋଣର ପରିଶୋଧ ।

(୩) **ଦୈବଯଜ୍ଞ**—ଜଳବାୟୁ, ଆଲୋକ ପ୍ରଭୃତି ପ୍ରାକୃତିକ ଶକ୍ତିରୁ ଆମ୍ଭେମାନେ ନାନା ସୁବିଧା ପାଉଅଛୁଁ ଓ ଆମର ଜୀବନଧାରଣ ନିମିତ୍ତ ଏଗୁଡ଼ିକ ନ ହେଲେ ନ ଚଳେ । ଯେଉଁ ଦେବତାମାନେ ଭଗବାନଙ୍କ ଆଦେଶରେ ଏ ସମସ୍ତ ନିୟନ୍ତ୍ରଣ କରନ୍ତି, ସେମାନଙ୍କ ଉଦ୍ଦେଶ୍ୟରେ ହୋମ କରିବା ହିନ୍ଦୁର ଅବଶ୍ୟ କର୍ତ୍ତବ୍ୟ ଧର୍ମ ବୋଲି ବିଧାନ ରହିଛି । ଗୁଆଘିଅର ହୋମ କପର ସ୍ୱାସ୍ଥ୍ୟପୁଷ୍ଟିବର୍ଦ୍ଧକ ଓ ଦୁଃଖଶୋକନାଶକ, ଏ ପୁସ୍ତକର ୧ମ ଭାଗର ୨ୟ ବଗ୍ଭରରେ ସଂକ୍ଷେପରେ ସେସବୁ ଆଲୋଚିତ ହୋଇଅଛି ।

(୪) **ଭୂତଯଜ୍ଞ ବା ବଳି**—ଇତର ପ୍ରାଣୀମାନଙ୍କଠାରେ ଭଗବାନ ବିଦ୍ୟମାନ । ସେମାନଙ୍କୁ ସସ୍ନେହ ଦୃଷ୍ଟିରେ ଦେଖି ପ୍ରତିଦିନ କିଛି ଖାଇବାକୁ ଦେବା ହିନ୍ଦୁର କର୍ତ୍ତବ୍ୟ । ମୂରୁଜ ପକାଇ ହିନ୍ଦୁ ସ୍ତ୍ରୀମାନେ ପର୍ବମାନଙ୍କରେ ଘର ସଜାନ୍ତି । ବିଶେଷ ଚାଉଳମୂରୁଜରେ ଘର ସଜାଯାଏ ଓ ପିମ୍ପୁଡ଼ି ଆଦି ପ୍ରାଣୀମାନେ ଏମାନଙ୍କୁ ବୋହିନେଇ ଖାଆନ୍ତି । ଏହିପରି ନାନା ପ୍ରକାରରେ ହିନ୍ଦୁ ଭୂତଯଜ୍ଞ ସମ୍ପାଦନ କରିଥାଏ ।

ପୂର୍ବକାଳର ବ୍ରାହ୍ମଣମାନଙ୍କର ଜୀବନର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଧର୍ମପ୍ରଚାର ଓ ଧର୍ମସଂରକ୍ଷଣ । "ଅହିଂସା ପରମଧର୍ମ" । କୃଷିଦ୍ୱାରା ଅନେକ କୀଟ ନଷ୍ଟ ହୋଇଯାନ୍ତି । ସେଥି ନିମିତ୍ତ ସେମାନେ କୃଷି କରୁ ନ ଥିଲେ । ସେମାନଙ୍କର ଜୀବିକାର ନାମ ଥିଲା "ଉଞ୍ଛଶିଳ" ଅର୍ଥାତ୍ ବାଟ ଘାଟରେ ପଡ଼ିଥିବା ଶସ୍ୟ ଆଦି ସଂଗ୍ରହକରି ତଦ୍ଦ୍ୱାରା ଜୀବନଧାରଣ କରିବା କିମ୍ବା ନିବାର ବୀଜ ବା ବାଜୁଙ୍ଗା ଧାନରୁ (ବିନା ଚାଷରେ ଜାତ) ସୁଖାଦ୍ୟ ସଂଗ୍ରହ କରିବା ।

ମନୁ ସେମାନଙ୍କ ନିମିତ୍ତ ଲେଖିଛନ୍ତି—

"ଅଦ୍ରୋହେଣୈବ ଭୂତାନାମଲ୍ପଦ୍ରୋହେଣ ବା ପୁନଃ
ଯା ବୃତ୍ତିସ୍ତାଂ ସମାସ୍ଥାୟ ବିପ୍ରୋ ଜୀବେଦନାପଦି

ଯେଉଁ ବୃତ୍ତିଦ୍ୱାରା ପ୍ରାଣୀପୀଡ଼ା ହୁଏ ନାହିଁ ବା ଖୁବ୍ କମ୍ ହୁଏ, ବ୍ରାହ୍ମଣ ସେହି ବୃତ୍ତି ଅବଲମ୍ବନ କରିବେ । ବିପଦକାଳରେ ଏ ନିୟମ ରକ୍ଷା କରାଯାଇ ନ ପାରେ ।

ଏଥିରୁ ଅନୁମାନ କରାଯାଇପାରିବ ଯେ ମନୁଷ୍ୟ କଥା ଛାଡ଼, ଇତର ପ୍ରାଣୀ କୀଟପତଙ୍ଗମାନଙ୍କୁ ସୁଦ୍ଧା ହିନ୍ଦୁ କି ଚକ୍ଷୁରେ ଦେଖୁଥିଲା ।

(୫) **ନୃଯଜ୍ଞ**—ଅତିଥିପୂଜନ । ଯେ ଇତର ପ୍ରାଣୀମାନଙ୍କ ନିମିତ୍ତ ଏପରି ବନ୍ଦୋବସ୍ତ କରିଥିଲା, ସେ ନିଜ ସମାଜପ୍ରତି କିପରି ସଜାଗ ଓ ସଦୟ ଥିଲା, ସହଜରେ ବୁଝାଯାଇପାରେ । ସେହି ଅତିଥିକୁ ଭଗବାନ୍ ପରି ପୂଜା କରୁଥିଲା ।

---

# ଅନ୍ୟ ଦୃଷ୍ଟିରେ ଭାରତ (ହିନ୍ଦୁ)

ପୃଥିବୀପ୍ରସିଦ୍ଧ ଇଂରେଜ ଲେଖକ ଜର୍ଜ ବର୍ଣ୍ଣାର୍ଡ୍ ଶ (George Bernard Shaw) କହନ୍ତି—

"Indians have faces and we have masks. The thumb mark of the creator can be seen only in the delicate depths and lines of an indian face."

ଅର୍ଥାତ୍ କେବଳ ଭାରତୀୟ ଲୋକମାନଙ୍କର ମୁହଁ ଅଛି ଓ ଆମର ମୁହଁ ଗୋଟିଏ ଲେଖାଏଁ ମୁଖା (ଅର୍ଥାତ୍ ଆମେ ଭିତରେ ପ୍ରକାରେ, ବାହାରେ ଅନ୍ୟ ପ୍ରକାର)। ଭାରତୀୟମାନଙ୍କର ଶାନ୍ତ ସରଳ, ମୁଖରେ କେବଳ ଭଗବାନଙ୍କର ହାତକାମ ଦେଖିବାକୁ ମିଳେ ।

ଜାପାନର ସୁପ୍ରସିଦ୍ଧ ଲେଖକ ପ୍ରଫେସର ନାଗୁଚି (Nagouchi) ଲେଖିଛନ୍ତି—"If india is given a house cleaning by the so-called modern civilisation, it means to us one more triumph of the Devil and sorrow for the angels"

ଅର୍ଥାତ୍ ଏ କାଳର ତଥାକଥିତ ସଭ୍ୟତାଦ୍ୱାରା ଭାରତୀୟ ସଭ୍ୟତା ଯଦି ଲୁପ୍ତ ହୁଏ, ତେବେ ଆମେମାନେ ବୁଝିବୁ ପାପ ଜିଣିଲା ଓ ପୁଣ୍ୟ କ୍ଷୟ ପାଇଲା ।

ଫ୍ରେଡ୍ରିକ ପିନକଟ୍ (Fredrick pincott) ନାମକ ଅନ୍ୟ ଜଣେ ଭାବୁକ ଲେଖକ ଲେଖିଛନ୍ତି—

"Everything tending to peace and well being of society has been, long since, reduced by the Hindus to well-ordered rules. We have very little to teach them in matter of social philosophy. Any introduction among

them of our crude ideas can only result in mischief and tend to bring the Hindus to the same chaotic scramble of antagonistic interests which is the characteristic of our own disgraceful muddle × × . All parties are united in the opinion that the Hindu married life is on exceptionally happy state and that is the clear proof of the excellence of the system and the severest condemnation of those who seek to destroy it."

ଅର୍ଥାତ୍ ସମାଜରେ ଶାନ୍ତିଶୃଙ୍ଖଳା ଆଣିବା ନିମିତ୍ତ ଯାହା ଦରକାର, ହିନ୍ଦୁମାନଙ୍କଦ୍ୱାରା ତାହା କେଉଁ କାଳରୁ ସୁଚିନ୍ତିତ ନିୟମରେ ବିଧିବଦ୍ଧ ହୋଇଯାଇଛି । ସମାଜ ଶାସନ ବା ଗଠନରେ ଆମ୍ଭମାନଙ୍କର ତାଙ୍କୁ ଶିଖାଇବାକୁ କିଛି ନାହିଁ । ଆମ୍ଭମାନଙ୍କର ଅପରିଣତ ବୁଦ୍ଧିଗୁଡ଼ିକ ତାଙ୍କ ସମାଜରେ ପ୍ରବେଶକଲେ ଗୋଳମାଳ ଛଡ଼ା ମଙ୍ଗଳ ମିଳିବ ନାହିଁ । ଆମ ସାମାଜିକ ଚଳନ ଓ ଗଠନରେ ନିତାନ୍ତ ଆଶୋଭନୀୟ ବିଶୃଙ୍ଖଳା ପଶିଛି । ପରସ୍ପରବିରୋଧୀ ସେହି ପରିସ୍ଥିତିକୁ ତାହାଦ୍ୱାରା ତାଙ୍କୁ ଆମ୍ଭେମାନେ ଟାଣିଆଣିବୁ । ସମସ୍ତେ ଏବେ ସ୍ୱୀକାର କଲେଣି ଯେ ହିନ୍ଦୁର ଦାମ୍ପତ୍ୟଜୀବନ ଯେପରି ସୁଖମୟ, ସେପରି ଆଉ ଅନ୍ୟ କେଉଁଠାରେ ଦେଖାଯାଏ ନାହିଁ । ଏହା ହିଁ ପ୍ରମାଣ କରୁଛି—ହିନ୍ଦୁର ବିବାହପଦ୍ଧତି କିପରି ସୁଚିନ୍ତିତ । ଯେଉଁମାନେ ଏହାକୁ ଭାଙ୍ଗିଦେବାକୁ ଚାହୁଁଛନ୍ତି, ସେମାନଙ୍କର ନିନ୍ଦନୀୟ ଅବିଚାର ଏଥିରୁ ଜଣାପଡୁଛି ।

Professor H. J. Fleure, B. Sc, F. R. S. of Manchester University ୮-୧-୩୮ ତାରିଖରେ କଲିକତାଠାରେ ଏକ ବେତାର ଭାଷଣ ଦେଇ କହିଥିଲେ :—

"The modern world needs india's help. Her sages have shown in which men can solve controveries by transcending them. May india learn from our mistakes and avoid some of the worst dangers that face us in the west."

ଅର୍ଥାତ୍ ଏ ଯୁଗର ପୃଥିବୀ ଭାରତର ସାହାଯ୍ୟ ଦରକାର କରୁଛି । ପରସ୍ପରବିରୋଧୀ ଭାବଗୁଡ଼ିକୁ ଆଧ୍ୟାତ୍ମିକତାରେ ପରିଣତ କରି ମନୁଷ୍ୟ କିପରି ଶାନ୍ତିସୁଖରେ ଚଳିପାରେ, ତାହା ଭାରତର ଋଷିମାନେ ଦେଖାଇ ଦେଇ ଯାଇଛନ୍ତି । ଭଗବାନ କରନ୍ତୁ, ଭାରତ ଆମ ଭୁଲଗୁଡ଼ିକ ଦେଖୁ ଏବଂ ସେଥିରୁ ଶିଖୁ । ପାଶ୍ଚାତ୍ୟ ଭୂଖଣ୍ଡରେ ଆମେ ଯେଉଁ ବିପଦର ସମ୍ମୁଖୀନ, ଭାରତ ସେଗୁଡ଼ିକୁ ଏଡ଼ାଇଦେଉ ।

ସୁପ୍ରସିଦ୍ଧା ଆନି ବେଶାନ୍ତ (Annie Besant)ଲେଖିଛନ୍ତି :—

"It is not well to destroy the stately edifice built by the Rishis which has weathered many a storm and given safe shelter to a myriad of generations. Chaldea Persia, Egypt, Greece and Rome have perished, mighty as once they were, far reaching in Empire, splendid in achievement, India which was their contemporary has outlived them all. All this marvellous endurance while primarily due to her profound spirituality is partly due also to the stability given to her by her caste system."

ଅର୍ଥାତ୍ ଋଷିମାନେ ଯେଉଁ ବିଶାଳ ସୌଧ ନିର୍ମାଣ କରି ଯାଇଛନ୍ତି, ତାକୁ ଭାଙ୍ଗିଦେବା ଠିକ୍ ହେବ ନାହିଁ । ଏହା ବହୁତ ଝଡ଼ଝଞ୍ଜା ସହି ଠିଆହୋଇ ରହିଛି ଓ କେତେ ଲକ୍ଷ ପୁରୁଷ ବିତିଗଲଣି, ଏହା କୋଟି କୋଟି ଲୋକଙ୍କୁ ଆଶ୍ରୟ ଦେଇଛି । କାଲଡିଆ, ପାରସ୍ୟ, ମିଶର, ଗ୍ରୀସ୍ ଓ ରୋମର ସଭ୍ୟତା କେଉଁଆଡେ଼ ଉଭେଇ ଗଲାଣି; ଏମାନଙ୍କର କେତେ ବଡ଼ ସାମ୍ରାଜ୍ୟ ଥିଲା ଏବଂ ଏମାନେ କେତେ ବଡ଼ ବଡ଼ କଥା ଆବିଷ୍କାର କରି ନ ଥିଲେ ! ଭାରତ-ସଭ୍ୟତା ଏମାନଙ୍କର ସମସାମୟିକ । ଏକା ଭାରତ ରହିଛି, ସେମାନେ ଗଲେଣି । ଏହି ବିସ୍ମୟକର ସଂଜୀବନୀ ଶକ୍ତି ସେ କେଉଁଠୁ ପାଇଲା ? ଏହାର ଅଧିକାଂଶ ଭାଗ ସୁଦୃଢ଼ ଧର୍ମଭିତ୍ତିରୁ ଉତ୍ପନ୍ନ ଓ ଜାତିବିଭାଗ ମଧ୍ୟ ଏହାର ଆସନକୁ ଦୃଢ଼ତର କରି ଦେଇଥିଲା ।

ଦୁଇ ଜଣ ଖ୍ୟାତନାମା ଇଂରେଜ ଶାସକଙ୍କର ମତ ତଳେ ଉଦ୍ଧାର କରିବାଲି । ହେନେରି କଟନ୍ (Sir Henry Cotton) ଲେଖିଛନ୍ତି—

"The system of caste, far from being the source of all trouble, which can be traced in Hindus Society, has rendered most important service in the past and still continuses to sustain order and solidarity."

ଅର୍ଥାତ୍ ଭାରତର ଜାତିବିଭାଗ ହିନ୍ଦୁ ସମାଜର ସବୁ ଗୋଳମାଳର ମୂଳ ବୋଲି କହିବା ଭୁଲ। ଏହା ଅତୀତର ସମାଜକୁ ଦୃଢ଼ କରିବାରେ ବହୁତ ସାହାଯ୍ୟ କରିଛି; ଏବେ ମଧ୍ୟ ଶୃଙ୍ଖଳା ଓ ଦୃଢ଼ତା ରକ୍ଷା କରୁଛି।

ସାର୍ ଜର୍ଜ କାମ୍ପବେଲ୍ (Sir George Campbel) ଲେଖିଛନ୍ତି-

"In India, I have had the experience of how communities of people varying in culture rank and racial qualifications have lived for centuries amicably together side by side and this has been possible in India only through th organisation of caste."

ଅର୍ଥାତ୍ ଭାରତରେ ମୁଁ ଏହି ଅଭିଜ୍ଞତା ପାଇଲି ଯେ ଜାତିବିଭାଗ ନିମିତ୍ତ ବିଭିନ୍ନ ଗୋଷ୍ଠୀର ଲୋକମାନେ ବିଭିନ୍ନ ସଂସ୍କୃତି, ବିଭିନ୍ନ ସାମାଜିକ ସ୍ତର ଓ ବିଭିନ୍ନ ଗୁଣର ଅଧିକାରୀ ହୋଇ ମଧ୍ୟ ଶତ ଶତ ବର୍ଷ ବନ୍ଧୁଭାବରେ ଏକାଠି ରହିପାରିଛନ୍ତି।

ହିନ୍ଦୁଧର୍ମର ଜଣେ ତୀବ୍ର ସମାଲୋଚକ ଥିଲେ ଫରାସୀ ଲେଖକ Abbe Dubois। ତାଙ୍କର ମତ ଏଠାରେ ଉଲ୍ଲେଖ କଲେ ଅବାଞ୍ଛନୀୟ ହେବନାହିଁ।

"I consider the institutions of caste amongst the Hindu nations as the happiest effort of their legislations and I am well convinced that if the people of India never sank into a state of barbarism, if India kept her head preserved and extended the sciences, the arts and the civilisation, it is wholly to the distinction of castes that she is indebted for that high celebrity."

ଅର୍ଥାତ୍ ହିନ୍ଦୁମାନେ ଯେତେ ବିଧି ବାନ୍ଧିଦେଇ ଯାଇଛନ୍ତି, ତାହା ମଧ୍ୟରେ ଜାତିବିଭାଗଟି ହେଉଛି ସବୁଠାରୁ ଉତ୍ତମ । ହିନ୍ଦୁମାନେ ଯେ ହଠାତ୍ ଅସଭ୍ୟ ହୋଇଯାଇ ନାହାନ୍ତି, ମୁଣ୍ଡ ଠିକ୍ ରଖି କଳା, ବିଜ୍ଞାନ ଓ ସଭ୍ୟତାକୁ ବଢ଼ାଇ ପାରିଛନ୍ତି—ଏହାର ମୂଳରେ ରହିଛି ସେମାନଙ୍କର ଜାତିବିଭାଗ । ଏହି ଜାତି ବିଭାଗ ନିମିତ୍ତ ସେମାନେ ସଭ୍ୟତାର ଉଚ୍ଚ ଶିଖରକୁ ଉଠି ପାରିଥିଲେ—ଏହା ମୋର ବଦ୍ଧମୂଳ ଧାରଣା ।

"India's calm and ample metaphyrsics, her conception of the universe, her social organisation, the solution she has given to the problem of women, the family, love and marriage and the magnificient revelation of her art, are indeed grand.

—*Romain Rolland*

ପୃଥିବୀପ୍ରସିଦ୍ଧ ଫରାସୀଲେଖକ ରୋମା ରୋଲାଁ କହିଛନ୍ତି—ଭାରତର ଶାନ୍ତ ଉଦାର ଧର୍ମତତ୍ତ୍ୱ, ବିଶ୍ୱ ବ୍ରହ୍ମାଣ୍ଡ ସମ୍ବନ୍ଧୀୟ ଜ୍ଞାନ, ସାମାଜିକ ସୁସଙ୍ଗଠନ, ସ୍ତ୍ରୀ, ଗୃହ, ପ୍ରେମ, ବିବାହ ସମ୍ବନ୍ଧୀୟ ମୀମାଂସିତ ବିଧି-ବିଧାନ ଓ ସୁବିଶାଳ କଳାବିକାଶ ପ୍ରକୃତରେ ଅତୀବ ଚମତ୍କାର ।

"Although there is hardly any department of learning which has not received new light and new life from the ancient literature of India, yet no where is the light that comes to us from India, so important novel and so rich as in the study of religion and mytholgy."

—*Maxmuller.*

ଭାରତ ବିଷୟରେ ବିଶେଷଜ୍ଞ ଜର୍ମାନୀ ପଣ୍ଡିତ ଓ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟର ଭୂତପୂର୍ବ ସଂସ୍କୃତ ଅଧ୍ୟାପକ ମାକ୍ସମୁଲର କହନ୍ତି—"ଆମ ଜ୍ଞାନ-ବିଜ୍ଞାନର ଏପରି କୌଣସି ବିଭାଗ ନାହିଁ, ଯାହା ଭାରତୀୟ ସାହିତ୍ୟରୁ ନୂଆ ଆଲୋକ ଓ ନୂଆ ଜ୍ଞାନ ପାଇନାହିଁ । ଧର୍ମ ଓ ପୁରାଣ ସମ୍ବନ୍ଧରେ ଭାରତ ଯେଉଁ ଆଲୋକପାତ କରିଅଛି, ତାହା ଯେପରି ମହତ୍, ସେପରି ନୂତନ ଓ ବିଶାଳ ।"

